# ଭିନ୍ନସ୍ୱର
(ଫିଚର ସଂକଳନ)

ଲେଖିକା
କାନନ ମିଶ୍ର

ପ୍ରଥମ ପ୍ରକାଶ
୨୦୦୪

ପ୍ରକାଶକ
ଶ୍ରୀମତୀ ମନୋଜମଂଜରୀ ରାଜ
ଓଁକାର ପବ୍ଲିସର୍ସ
ପ୍ଲଟ୍ ନଂ - ୩୫, ଶକ୍ତି ନଗର
ଲିଙ୍କ୍ ରୋଡ୍, କଟକ - ୧୨

ମୁଦ୍ରଣ :
ଜଗନ୍ନାଥ ପ୍ରୋସେସ୍ ପ୍ରା.ଲି.
ଡଗରପଡ଼ା, କଟକ -୨

ଅକ୍ଷରସଜ୍ଜା
ଶ୍ରଦ୍ଧାଞ୍ଜଳି,
୫୦୫୭, ରାମେଶ୍ୱରପାଟଣା,
ଭୁବନେଶ୍ୱର - ୨

ପରିବେଷଣ
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ - ୨

ମୂଲ୍ୟ ଷାଠିଏ ଟଙ୍କା ମାତ୍ର

# BHINNA SWARA
(A Collection of Features)

Author :
**Kanan Mishra**

First Edition :
2004 A.D.

Published by :
**Smt. Manojmanjari Raj**
Omkar Publishers
Plot No. 35, Shakti Nagar
Link Road, Cuttack - 12

Printed at :
**Jagannath Process Pvt. Ltd.**
Dagarpada, Cuttack -2

Page Layout :
**Shradhanjali**
5057, Rameswarpatna
Bhubaneswar - 2

Distributor :
**Orissa Book Store**
Binod Bihari, Cuttack - 2

Price : Rs. 60/-

# ପୂର୍ବାଭାସ

ଏ ବହିର ଅଧିକାଂଶ ଲେଖା, ଦୁଇହଜାର ଦୁଇ ମସିହାରେ 'ଅନୁପମ ଭାରତ' ସମ୍ବାଦପତ୍ରର 'ଭିନ୍ନ ସ୍ୱର' ସ୍ତମ୍ଭରେ ପ୍ରକାଶିତ । ବାକି ଲେଖା କେତୋଟି ସ୍ଥାନିତ ହୋଇଛି ବିଭିନ୍ନ ପତ୍ରପତ୍ରିକାରେ, ବିଗତ ଦୁଇବର୍ଷ ଭିତରେ ।

ବିନ୍ଦୁ ବିନ୍ଦୁ ଜଳ ମିଶି ଜଳଧି ସୃଷ୍ଟି ହେଲା ପରି ସାନ ସାନ ଘଟଣାର ସମଷ୍ଟିରେ ଇ ଜୀବନ । ଏ ଲେଖା ସବୁ ମୂଳତଃ ଜୀବନର ସେଇ ସବୁ ସାନ ସାନ କଥାକୁ ନେଇ । ଛପାହେଲାବେଳେ, ପାଠକମାନେ ସସ୍ନେହ ସ୍ୱୀକୃତି ଦେଇଛନ୍ତି ଏ ଲେଖା ସବୁକୁ । କେହି କେହି କହିଛନ୍ତି 'ଫିଚର' । ଆଉ କିଏ ଅବା ଗ୍ରହଣ କରିଛନ୍ତି ଭିନ୍ନସ୍ୱରରେ ଲେଖା କାହାଣୀ ରୂପରେ ।

ମୋ ଜୀବନରେ ଭେଟିଥିବା ଅଜସ୍ର ଚରିତ୍ରଙ୍କୁ ମୁଁ ସ୍ମରଣ କରିଛି ଏ ଲେଖାଗୁଡ଼ିକ ମାଧମରେ । ମୋ'ର ଅନୁଭୂତିକୁ ସମୃଦ୍ଧ କରିଥିବା ସେହିସବୁ ମନୋହର ଚରିତ୍ରମାନଙ୍କ ଉଦ୍ଦେଶ୍ୟରେ ଏ ବହିଟି ଉତ୍ସର୍ଗୀକୃତ । ସେମାନଙ୍କ ବିନା ହୁଏତ 'ଭିନ୍ନସ୍ୱର' ସମ୍ଭବ ହୋଇନଥାନ୍ତା ।

ସର୍ବଶେଷରେ, ବହିଟିର ପ୍ରକାଶନର ଗୁରୁଭାର ବହନ କରିଥିବା ହେତୁ, କଟକର ଓଁକାର ପବ୍ଲିସର୍ସ ସଂସ୍ଥାକୁ ମୋର ଆନ୍ତରିକ ଧନ୍ୟବାଦ ।

କାନନ ମିଶ୍ର

# ସୂଚୀପତ୍ର

# ସିନ୍ଧୁ

ସାନବଡ଼ ଅନେକ ହୋଟେଲ୍‌ରେ ମତେ ଖୁଆଇସାରିଲାପରେ ବି ଯେତେବେଳେ ବବି ଦେଖିଲା ଯେ ଆମେରିକାନ୍ ଖାଦ୍ୟ ମତେ ଠିକ୍ ସୁହାଉନି, ବାଧ ହୋଇ ମୋତେ ନେଇ ଯାଇଥିଲା 'ସିନ୍ଧୁ' ରେଷ୍ଟୁରାଣ୍ଟକୁ ।

ଖାଦ୍ୟପେୟ ସଂପର୍କରେ ମଣିଷ ଯେ କିଭଳି ତୀବ୍ରଭାବରେ ଅଭ୍ୟାସର ଦାସ, ତାହା ମୁଁ ଆମେରିକା ଯାଇ ବୁଝିଥିଲି । ଦକ୍ଷିଣଭାରତର ଅଧିବାସୀମାନେ ପ୍ରଚୁର ଲଙ୍କାଗୁଣ୍ଡଯୁକ୍ତ ଖଟାପାଣି ରସମ୍‌କୁ କାହିଁକି ସର୍ବୋତ୍ତମ ଖାଦ୍ୟ ବୋଲି ମନେକରନ୍ତି, ମୁଁ କେବଳ ବୁଝିଥିଲି ଆମେରିକା ଗଲା ପରେ । କେବଳ ଆମେରିକା ଗଲାପରେ ହିଁ ଆବିଷ୍କାର କରିଥିଲି ଯେ ସୋରିଷତେଲ ଛୁଙ୍କ ଦିଆ ରାଇ, ସନ୍ତୁଳା ଓ ଡ଼ାଲମାର ସ୍ଥାନ ଅନ୍ୟ କୌଣସି ଖାଦ୍ୟ ନେଇନପାରେ ।

ସେଠିକାର ରେଷ୍ଟୁରାଣ୍ଟମାନଙ୍କରେ ମିଳୁଥିବା ଖାଦ୍ୟ ଥିଲା ତାଜା ଓ ପୁଷ୍ଟିସାରଯୁକ୍ତ । କିନ୍ତୁ ରନ୍ଧାପ୍ରଣାଳୀ, ଆମ୍ଭମାନଙ୍କ ପ୍ରଣାଳୀଠାରୁ ଥିଲା ସଂପୂର୍ଣ୍ଣ ଭିନ୍ନ । ମିଳୁଥିଲା ଟୋଫୁ - ସୋୟାବିନ୍ କ୍ଷୀରର ଛେନା ଏବଂ ବିଭିନ୍ନ ପ୍ରକାର ବର୍ଗର୍ ଓ ଷ୍ଟେକ୍ । ଷ୍ଟେକ୍‌ଥିଲା ହାଡବିହୀନ ମାଂସର ଟୁକୁଡ଼ାଟିଏ । ତାହା ପୁଣି ତିନି ପ୍ରକାରର- ରେୟାର (ଅଳ୍ପରନ୍ଧା), ମିଡ଼ିୟମ୍ (ଦରସିଝା) ଏବଂ ୱେଲ୍‌ଡନ୍ (ଭଲଭାବରେ ସିଝିଥିବା) । ମିଳୁଥିଲା ଗିରୋ (ଇଲେକ୍‌ଟ୍ରିକ୍ ହିଟରରେ ରନ୍ଧା ହୋଇଥିବା ମାଂସର ପତଳା ପତଳା ଟୁକ୍‌ଡ଼ା), ଟର୍ଟିୟା (ମଇଦା ତିଆରି ମୋଟା ମୋଟା ରୁଟି), ପିଟାବ୍ରେଡ୍, ଟାକୋ ସାଲାଡ୍, କୋଲ୍‌ସ୍ଲ (ବନ୍ଧା କୋବି ଓ ମାୟୋନିଜ୍ ସସ୍‌ର ମିଶ୍ରଣ) ଓ ପ୍ରିଜେଲ୍ (ଅନେକାଂଶରେ ମଇଦା ତିଆରି ଶକ୍ତ ଚିଲିପି ପରି), ଆଉ ମିଳୁଥିଲା ଭଳି ଭଳି ପିଟ୍‌ଜା । ଏସବୁ ଜିନିଷର ଉଭୟ ସ୍ୱାଦ ଓ ଗନ୍ଧ ପ୍ରତି ମୋର ଥିଲା ପ୍ରଚଣ୍ଡ ଅନାଗ୍ରହ । ଥିଲି ପୁଣି ଶାକାହାରୀ ଏବଂ ସେଠାରେ ନବେ ପ୍ରତିଶତ ଖାଦ୍ୟରେ ମାଂସ ବ୍ୟବହାର ହେଉଥିଲା ଯାହାକି ମୋ' ପାଇଁ ଥିଲା ନିଷିଦ୍ଧ ।

ଡ଼ାଲି ଓ ଝୋଳ ଗୋଳାଇ ଭାତ ଖାଉଥିବା ପାଟିକୁ ତେଲମସଲା ବିହୀନ ଦରସିଝା ଖାଦ୍ୟ ଲାଗୁଥିଲା ବିସ୍ୱାଦ । କେବଳ ଖାଉଥିଲି କର୍ଣ୍ଣଚିପ୍‌ସ-ସାଲ୍‌ସାରେ ବୁଡ଼ାଇ । କର୍ଣ୍ଣଚିପ୍‌ସ ଥିଲା ମକାଅଟାରେ ତିଆରି କୁରୁମୁରିଆ କୁନିକୁନି ପାମ୍ପଡ, ସାଲ୍‌ସା ଥିଲା ଟମାଟୋ ଚଟଣୀର ଅନ୍ୟତମ ନାମ । ପ୍ରାୟ ଖାଦ୍ୟ ସହିତ ପିଜୁଳି ପରି ଦେଖାଯାଉଥିବା ଆଭୋକାଡ଼ୋ ନାମକ ପରିବାର ସସ୍ ପରଶା ଯାଉଥିଲା ଯାହାର କି ନିଜସ୍ୱ କୌଣସି

ସ୍ୱାଦ ନ ଥିଲା । ସେ ତୁଳନାରେ ସାଲ୍‌ସାର ଖଟାମିଠା ସ୍ୱାଦ ଥିଲା ଅପେକ୍ଷାକୃତ ଆକର୍ଷଣୀୟ । ଆଉ ଖାଉଥିଲି ଫ୍ରେଞ୍ଚଫ୍ରାଏ-ଆଙ୍ଗୁଠି ପରି କଟା ଲମ୍ବ ଲମ୍ବ ତେଲଛଣା ଆଳୁଭଜା ଏବଂ ହାସ୍‌ବ୍ରାଉନ୍ - କୋରା ଆଳୁର ଭଜା । ସେ ଦେଶର ଆଇସ୍‌କ୍ରିମ୍ ଥିଲା କିନ୍ତୁ ଅନବଦ୍ୟ । ଭଳି ଭଳି ଆଇସ୍‌କ୍ରିମ୍, ମିଳୁଥିଲା ବି ଅତ୍ୟନ୍ତ ସୁଲଭ ମୂଲ୍ୟରେ । ସବୁଠାରୁ ବେଶୀ ପସନ୍ଦ କରୁଥିଲି ମୁଁ ବନାନା ସ୍ପ୍ଲିଟ୍ - ବିରାଟକାୟ ପାଚିଲା କଦଳୀକୁ ଦୁଇଫାଳ କରି କାଟି ତା ଉପରେ ରଖାହେଉଥିଲା ସ୍ୱ ମନପସନ୍ଦର ତିନି ରକମର ଆଇସ୍‌କ୍ରିମ୍‌ର ପିଣ୍ଡୁଳା । ଉପରେ ଢ଼ଳାହେଉଥିଲା ମହୁ ଓ ବିଭିନ୍ନ କିସମ୍‌ର ମିଠା ଫଳର ସସ୍ । ଶେଷକୁ ଛିଞ୍ଚା ହେଉଥିଲା ଭିନ୍ନ ଭିନ୍ନ ଖୁସ୍‌ବୁଦାର ଶୁଖିଲା ଫଳର ମିହିକଟାଟୁକୁଡ଼ା । ପ୍ଲେଟ୍ ଭର୍ତ୍ତି ବନାନାସ୍ପ୍ଲିଟ୍‌ଟିଏ ଖାଇଦେଲେ ମୋ ପେଟ ପୂରିଯାଉଥିଲା ।

"ତମ ଆମେରିକାନ୍ ଖାଦ୍ୟ ତୁଳନାରେ ଆମ ଭାରତୀୟ ଖାଦ୍ୟ ଢ଼େର୍ ଭଲ । ଗରମ ଗରମ ପୁରି ଓ ଆଳୁଦମ୍‌ର ସ୍ୱାଦ କଥା ଟିକିଏ ଭାବିଲୁ !" ଦିନେ ବବିକୁ କହିଲି । ବବି ହସିଲା । କହିଲା - ଜାଣ ମାମା ! ତମେ ଇଣ୍ଡିଆନ୍ ଫୁଡ୍‌କୁ ଭଲ କହୁଚ । ଅଥଚ ମୋର ଗୋଟିଏ ସାଙ୍ଗ - ଗ୍ରେଗ୍, ଏଇ ଇଣ୍ଡିଆନ୍ ଫୁଡ୍ ଖାଇ ଥରଟେ ଭୟଙ୍କର ଭାବେ ଅସୁସ୍ଥ ହୋଇ ପଡ଼ିଥିଲା । ଆମଦେଶର ଖାଦ୍ୟ ଖାଇବାପାଇଁ ମନକରି ଦିନେ ଆସିଥିଲା ଆମଘରକୁ । ସ୍ମିତା ତା ପାଇଁ ରାନ୍ଧିଥିଲା ପଲାଉ, ଦହିବରା, ମୁର୍‌ଗୀଝୋଳ ଓ ପାୟସ । ସିଝା ଖାଇବାରେ ଅଭ୍ୟସ୍ତ ତା ପାକସ୍ଥଳୀ ଏ ସବୁ ଘିଅ ମସଲାଯୁକ୍ତ ଖାଦ୍ୟ ହଜମ କରିପାରିଲାନି । ତିନିଦିନ ଧରି ସିରିୟସ୍ ଡ଼ିସେଣ୍ଟ୍ରି ।

- ସତରେ ? ମୁଁ ଆଶ୍ଚର୍ଯ୍ୟ ହୋଇ କହିଲି ।

ବବି ପୁଣି କହିଲା - ଖାଇବାଟାତ ମୁଖ୍ୟତଃ ଅଭ୍ୟାସର କଥା ମାମା ! ମୋ'ର ଗୋଟିଏ ସାଙ୍ଗ ଏବେ କିଛି ଦିନ ତଳେ ଜାପାନ ଯାଇଥିଲା । ଜଣେ ଭଦ୍ରବ୍ୟକ୍ତି ତାକୁ ଡ଼ିନର୍ ପାଇଁ ନିମନ୍ତ୍ରଣ କରିଥିଲେ । ତମେ ଜାଣ ତାକୁ କଅଣ ଦେଇଥିଲେ ?

- କଅଣ ଦେଇଥିଲେ ?

- ପ୍ଲେଟ୍ ଭର୍ତ୍ତି ଝିଣ୍ଟିକା ଭଜା ।

- ଯାହା କହିଲୁ ! ଖାଦ୍ୟାଭ୍ୟାସଟି ଅନେକାଂଶରେ ଭୌଗୋଳିକ । ଯିଏ ପିଲାଦିନୁ ଯାହା ଖାଏ ସେଇଥିରେ ଇ ଅଭ୍ୟସ୍ତ ହେଇଯାଏ । ମୁଁ କହିଲି ।

ବବି ପଚାରିଲା - ଏଠି ଅନେକ ଜାପାନିଜ୍ ରେଷ୍ଟୁରାଣ୍ଟ ଅଛି । ତମେ ଯିବ ମାମା ? ସେଠିକି ଲୋକମାନେ ସୁଶୀ ଖାଇବାକୁ ଯାଆନ୍ତି । ସୁଶୀ ହେଲା କଞ୍ଚାମାଛର ଡ଼ିସ୍ ।

- ମୁଁ ତ ଭେଜିଟେରିଆନ୍ । ସେ ଜିନିଷଟିର ଚାଖିବାର ସୌଭାଗ୍ୟ ମୋ'ର ତେଣୁ ହେଇପାରିବନି ।

- ଆଚ୍ଛା ମୁଁ ତୁମକୁ କାଲି 'କଣ୍ଟ୍ରି ବଫେ' ନେଇଯିବି । ଦେଖ, ସେଠି ଯଦି ତୁମକି କିଛି ଭଲଲାଗେ । ବହୁତ ବଡ଼ ରେଷ୍ଟୁରାଣ୍ଟ । ଛୁଟିଦିନମାନଙ୍କରେ ଓ ଶନିରବିବାର ଦିନ ଲୋକମାନେ ଘରେ ନ ରାନ୍ଧି ପ୍ରାୟ ସେଠି ଖାଇଦେଇ ଆସନ୍ତି । ସାନ ପିଲାମାନଙ୍କ ପାଇଁ ମାତ୍ର ପଚାଶ ସେଣ୍ଟ୍ ଦବାକୁ ପଡ଼େ । ସିନିୟର୍ ସିଟିଜେନମାନଙ୍କ ପାଇଁ କନସେସନ୍‌ର ବ୍ୟବସ୍ଥା ମଧ୍ୟ ଅଛି । ଅନ୍ୟମାନଙ୍କ ପାଇଁ ଧାର୍ଯ୍ୟ ଦେୟ ସାତ ଡ଼ଲାର । ମାତ୍ର ସାତ ଡ଼ଲାର ଦେଇ ତମେ ଯାହା ମର୍ଜି ଖାଇପାର ।

ପରଦିନ ବବି ମତେ ନେଇଯାଇଥିଲା କଣ୍ଟ୍ରିବଫେକୁ । ଚକ୍‌ଚକ୍ କାଚ ଓ ଚାଇନା ପାତ୍ରରେ ପରଶା ଶତାଧିକ ବ୍ୟଞ୍ଜନ । ଆଇସ୍‌କ୍ରିମ୍, କେକ୍ ଓ ସାଲାଡ୍ ପାଇଁ ସ୍ୱତନ୍ତ୍ର ଗୋଟିଏ ଗୋଟିଏ ବିଭାଗ । ଲୋକମାନେ ବୁଲି ବୁଲି ନିଜ ନିଜ ପସନ୍ଦର ଖାଦ୍ୟପଦାର୍ଥ ନିଜେ ନେଇ ଭୋଜନ କରୁଛନ୍ତି । ସାରା ରେଷ୍ଟୁରାଣ୍ଟ ଭର୍ତ୍ତି ସାନ ସାନ ନୀଚାଟେବୁଲ୍ । ତା' ଚାରିପଟେ ଚାରୋଟି ଲେଖାଏଁ ଚୌକି । ଅଜସ୍ର ଖାଦ୍ୟସାମଗ୍ରୀର ଏକ ବିପୁଳ ଆୟୋଜନ । ଗୋଟିଏ କଡ଼ରେ ଜଣେ ମଣିଷ ଜୋକର୍ ସାଜି ସାନପିଲାମାନଙ୍କର ମନୋରଂଜନ କରୁଛନ୍ତି । ଗୋଟିଏ ବଡ଼ ଟେବୁଲ୍ ଉପରେ ପେଣ୍ଟିଂ ସରଞ୍ଜାମ । ଅନେକ କୁନି କୁନି ଛୁଆ ବସି ପେଣ୍ଟିଂ କରୁଛନ୍ତି ।

ସାଲାଡ୍ ବାର୍‌ଟିରେ ଭଳି ଭଳି ସାଲାଡ୍ - ସୂର୍ଯ୍ୟମୁଖୀ ମଞ୍ଜିଠାରୁ ଆରମ୍ଭ କରି କିସ୍‌ମିସ୍ ପର୍ଯ୍ୟନ୍ତ । ପ୍ରତ୍ୟେକ ବ୍ୟଞ୍ଜନର ପାତ୍ର ପାଖରେ ବ୍ୟଞ୍ଜନଟିର ନାଁ ଲେଖା । ବ୍ୟାଜେଲ୍, ସିନାମନ୍ ବ୍ରେଡ୍, ମଫିନ୍‌ସ, ବେକ୍‌ଡ୍ ବିନ୍, ପର୍କ, ଷ୍ଟିମ୍‌ଡ୍ ବିନ୍, ଫ୍ରାଏଡ୍ ଫିସ୍, କର୍‌ନକାରଟ୍ କେକ୍, ବ୍ରୋକୋଲି, ମାସ୍‌ଡ୍ ପଟାଟୋ ଉଇଥ୍ ବିଫ୍ ସସ୍, ବ୍ରେଡ୍‌ରୋଲ୍, ମସ୍‌ରୁମ, ହୋଲଟମାଟୋ, ଆପଲ୍‌ପାଇ, ଚିଜ୍‌କେକ୍, ଚକୋଲେଟ୍ ନଟ୍‌ସ୍, ପିଜ୍‌ଜା, ଭିଲ୍, ବେକ୍‌ଡ୍ ଚିକେନ୍ ଇତ୍ୟାଦି ଶହେରୁ ଉର୍ଦ୍ଧ୍ୱ ଖାଦ୍ୟ । ମୁଁ କିନ୍ତୁ ତହିଁରୁ କିଛି ବି ଖାଇପାରିଲିନି । କେବଳ ପିଇଲି ଫଳରସ ଗିଲାସଟିଏ । ଖାଇଲି ଦୁଇପ୍ରକାର ଆଇସ୍‌କ୍ରିମ୍ ।

ଠିକ୍ ତା' ପରଦିନ ଥିଲା ରବିବାର । ବବି କହିଲା - ତୁମେ ତ କୌଣସି ଆମେରିକାନ୍ ଖାଦ୍ୟ ଖାଇପାରୁନ ମାମା । ଏଠି ଗୋଟିଏ ଇଣ୍ଡିଆନ୍ ରେଷ୍ଟୁରାଣ୍ଟ ଅଛି - ସିନ୍ଧୁ । ତା ମାଲିକଙ୍କର ନାଁ ସୋମନାଥ । ଆମେ କେବେ କେମିତି ସେଠିକି ଯାଉ । ଆମର ବେଶ୍ ଚିହ୍ନା ହୋଇଯାଇଛନ୍ତି ସୋମନାଥ । ଶ୍ରେୟା ଜନ୍ମବେଳେ ମୁଁ ତାଙ୍କଠୁ ବହୁତ ଗୋଲାପଜାମୁ ଆଣିଥିଲି । ମୋ'ର ଝିଅ ହେଇଥିବା ଖୁସିରେ ସୋମନାଥ ମୋ'ଠାରୁ ସେଲ୍‌ସ୍‌ଟାକ୍ସ ନେଇନଥିଲେ । ଆଜି ଚାଲ ଲଞ୍ଚ୍ ପାଇଁ ସେଠିକି ଯିବା ।

ଦିନ ବାରଟା ବେଳକୁ ବବି ନେଇଗଲା ମୋତେ ସିନ୍ଧୁ । ସ୍ୱୟଂଚାଳିତ କାଚକବାଟ ଟପି ଭିତରକୁ ପଶିଲା ବେଳକୁ ଆଖିରେ ପଡ଼ିଲା ଚେନାଏ ଭାରତବର୍ଷ । ଛାତରୁ ଓହଳିଛି ସୁଦୃଶ୍ୟ କାଚର ଚାଣ୍ଡେଲିୟରମାନ । କାନ୍ଥସାରା ପାରଂପାରିକ ଭାରତୀୟ ଚିତ୍ରକଳା - ବିଭିନ୍ନ ନୃତ୍ୟମୁଦ୍ରାରେ ନର୍ତ୍ତକୀଗଣ । ନାକରେ ବାଜିଲା ମଟର ପନିର ଓ ପଲାଉର ବାସ୍ନା - ଗୁଜୁରାତି, ଡ଼ାଲଚିନି, ଜିରା, ଧନିଆର ଖୁସ୍‌ବୁରେ ମହମହ ସାରା ବାତାବରଣ ।

ତିନିବର୍ଷର ପୌତ୍ର ସୋହମ୍ ଦୌଡ଼ିଯାଇ ସୋମନାଥଙ୍କୁ କହିଲା - ହାଇ, ସୋମନାଥ । ସୋମନାଥ ତତ୍‌କ୍ଷଣାତ୍ ଯାଇ ଗିଲାସେ ଆମ୍ବରସ ଆଣି ଧରେଇଦେଲେ ସୋହମ୍‌କୁ । ଲଞ୍ଚ ସମୟରେ ଜଣପିଛା ସାତଡ଼ଲାର ଦେଇ ମନଇଚ୍ଛା ଖାଦ୍ୟ ଖାଇବାର ବ୍ୟବସ୍ଥା । ଇଡ୍‌ଲି, ସମ୍ବର, ଦୋଷା ଓ ନଡ଼ିଆଚଟଣୀଠାରୁ ଆରମ୍ଭକରି ପାଳଙ୍ଗଶାଗ, ଛେନାତରକାରୀ, ତନ୍ଦୁରୀ ଚିକେନ୍, ଫ୍ରାଏଡ୍ ରାଇସ୍, ପରଟା, ଆଚାର, ରାଇତା, ପାୟସ ପର୍ଯ୍ୟନ୍ତ - ବିଭିନ୍ନ କିସମର ଭାରତୀୟ ରନ୍ଧା । ଚମତ୍କାର ସ୍ୱାଦ, ଚମତ୍କାର ଗନ୍ଧ । ଖାଇ ମନେ ହେଲା ଆହା ! ଭାରତୀୟ ଖାଦ୍ୟ ପରି ସୁଖାଦ୍ୟ ବୋଧହୁଏ ପୃଥିବୀରେ ଆଉ କେଉଁଠି ନାହିଁ ।

ଦେଖିଲି - ବେଶୀ ଭାଗ ଲୋକ ଆମେରିକାନ୍ । ଆରାମ୍‌ରେ ବସି ପଲାଉ, କୋଫ୍‌ତା କରି ଓ ଆଳୁଦମ୍ ଖାଇଲାଗିଛନ୍ତି । ଦେଖାହେଲା ସଦ୍ୟ ମିସିଗାନ୍ ଷ୍ଟେଟ୍ ୟୁନିଭର୍ସିଟିରେ ଯୋଗ ଦେଇଥିବା ବମ୍ବେର ଝିଅ ହର୍ଷା ସହିତ । ଦେଖାହେଲା ବିଶ୍ୱବିଦ୍ୟାଳୟରେ ବବିର ସହକର୍ମୀ ଆରନ୍ ଓ ତାଙ୍କ ପତ୍ନୀ ଆନାଙ୍କ ସହିତ । ଦୁହିଁଙ୍କ ହାତରେ ଦୁଇଟି ସୁଦୃଶ୍ୟ ଫୁଡ୍ ପ୍ୟାକେଟ୍ ।

ମୁଁ ବବିକି କହିଲି, ସେମାନେ ଏଠି ନ ଖାଇ ଘରକୁ ଖାଦ୍ୟପଦାର୍ଥ ପ୍ୟାକ୍ କରି ନେଇଗଲେ ବୋଧେ ।

ବବି ହସିଲା, କହିଲା - ନାଇଁ ମାମା । ସେଇଟା ସେମାନେ ଖାଇନପାରି ପ୍ଲେଟ୍‌ରେ ଛାଡ଼ିଯାଇଥିବା ଖାଦ୍ୟପଦାର୍ଥ । ବଳକା ଖାଦ୍ୟ ରେଷ୍ଟୁରାଣ୍ଟ୍‌କୁ କହି ପ୍ୟାକ୍ କରି ନେଇଯାଉଛନ୍ତି ।

- ସତରେ ? ଆମଦେଶରେ କିନ୍ତୁ ପ୍ଲେଟ୍‌ରେ ରହିଯାଇଥିବା ବଳକା ଖାଦ୍ୟ ଏମିତି ବାନ୍ଧି ନେଇଯିବା ପାଇଁ ଆମକୁ ଲାଜ ଲାଗିବ ।

- ଏଠି କିନ୍ତୁ ଏହା ଗୋଟିଏ ନିହାତି ସାଧାରଣ କଥା । ସମସ୍ତେ କରନ୍ତି । କୌଣସି ଡ଼ିନର୍ ପାର୍ଟିରେ ମଧ କିଛି ଖାଦ୍ୟପଦାର୍ଥ ବଳିଗଲେ ନିମନ୍ତ୍ରିତ ଅତିଥିମାନେ କିଛି କିଛି ବାନ୍ଧି ନେଇଯାଆନ୍ତି ସାଥିରେ । ଜିପ୍‌ଲକ୍ ବ୍ୟାଗ୍‌ରେ । ଗୃହସ୍ୱାମୀ ଆଗରୁ

ତାହା ବନ୍ଦୋବସ୍ତ କରି ରଖିଥାଆନ୍ତି । ବ୍ୟାଗ୍‌ଗୁଡ଼ିକର ମୁହଁରେ ଜିପର୍ ଥାଏ । ତରକାରୀପତ୍ର ସୁରକ୍ଷିତ ରହେ । ଝୋଳ ଇତ୍ୟାଦି ବାହାରି ତଳେ ପଡେନି ।

– ଭାରି ବଢ଼ିଆ ବ୍ୟବସ୍ଥା ତ ! ଅନ୍ତତଃ ଜିନିଷ ନଷ୍ଟ ହୁଏନି । ଆମଦେଶରେ ଯେ କୌଣସି ଭୋଜିଭାତରେ କେତେ ଯେ ଜିନିଷ ନଷ୍ଟ ହୁଏ । ମୁଁ କହିଲି ।

ସୋମନାଥ ପାଖରେ ଆସି ଠିଆହେଇ ଖାଇବାପିଇବା କଥା ବୁଝିଲେ । ଅନେକ ଗପ ହେଲା ମଧ ତାଙ୍କ ସହିତ । ଶ୍ୟାମଳବର୍ଣ୍ଣର ମେଦବର୍ଜିତ ପତଳା ସୁଦର୍ଶନ ଚେହେରା । କଳାପ୍ୟାଣ୍ଟ, ଧଳାଫୁଲ୍‌ସାର୍ଟ ଓ କଳା ବୋ'ଟାଇରେ ସଜ୍ଜିତ, ହସ ହସ ମୁହଁ । ତାଙ୍କର ଜଣେ ସଂପର୍କୀୟ କୁଟୁମ୍ବ ଥିଲେ ଏଠି । ତାଙ୍କରି ସହାୟତାରେ ଇ ଆସିଥିଲେ ଏଠାକୁ । ଆସି ପ୍ରଥମେ ସ୍କୁଲରେ ପାଠପଢ଼ିଲେ । ସ୍କୁଲ୍‌ପାଠ ସରିଲା ପରେ ଏଇ ବ୍ୟବସାୟ । ପ୍ରଥମେ ସିକାଗୋରେ ଗ୍ରସରୀ ଦୋକାନ କରିଥିଲେ । ପରେ ଆସିଲେ୍ ଡେଟ୍ରିଅଟ୍ । ସବାଶେଷକୁ ମିସିଗାନ୍ ପ୍ରଦେଶର ରାଜଧାନୀ ଲାନ୍‌ସିଂ । ଲାନ୍‌ସିଂର ଏଇ ରେଷ୍ଟୁରାଣ୍ଟଟିର ଏବେ ଖୁବ୍ ନାଁ ।

ଗାଁ'ରେ ପିତାମାତାଙ୍କର ମୃତ୍ୟୁ ହୋଇଛି ଏଇ ପଚିଶ୍‌ବର୍ଷ ଭିତରେ । ଘରେ ଚାରି ଭାଇ ଓ ତିନିଭଉଣୀ । ନିୟମିତ ଡ଼ଲାର୍ ପଠାନ୍ତି ସେମାନଙ୍କୁ । ବାହା ହେଇଛନ୍ତି ନିଜ ଦେଶର ଝିଅକୁ । ବାହାଘର ପରେ ପରେ ନେପାଳରୁ ପତ୍ନୀଙ୍କୁ ନେଇ ଆସିଛନ୍ତି ଆମେରିକା । ପତ୍ନୀଙ୍କ ନାଁ ଦେବକୁମାରୀ । ପନ୍ଦର ଓ ଚଉଦବର୍ଷର ପୁତ୍ରକନ୍ୟା ଯୋଡ଼ିଏ – ହୃଷୀକେଶ ଓ ଇନ୍ଦିରା । ଏଠି ସ୍କୁଲରେ ପାଠ ପଢ଼ନ୍ତି । ନିଜର ଘର କିଣିଛନ୍ତି ଆମେରିକାରେ ।

– କେତେଜଣ ଲୋକ ରଖିଛନ୍ତି ରେଷ୍ଟୁରାଣ୍ଟରେ ? ପଚାରିଲି ।

– ନିୟମିତ ରାନ୍ଧୁଣିଆ ଦୁଇଜଣ । ଦୁଇଜଣଯାକ ଭାରତୀୟ । ମଝିରେ ମଝିରେ ସେମାନଙ୍କୁ ସାହାଯ୍ୟ କରିବା ପାଇଁ ଅନ୍ୟ ରାନ୍ଧୁଣିଆ ବି ରଖିବାକୁ ପଡ଼େ । ଡ଼ିସ୍‌ଓ୍ୱାସର ମେସିନ୍ ଚଳାଇ ବାସନ ସଫା କରିବାପାଇଁ ଜଣକୁ ରଖିବାକୁ ପଡ଼ିଛି । ତାଙ୍କର ସାରାଦିନର କାମ । ଓ୍ୱେଟର ଓ ଓ୍ୱେଟ୍ରେସ ମିଶି ସାତଜଣ । ସେମାନେ ଲୋକମାନଙ୍କଠୁ ଅର୍ଡର ନେଇ ସେମାନଙ୍କୁ ବଢ଼ାବଢ଼ି କରନ୍ତି – କେବଳ ରୋଷେୟା ଦୁଇଜଣଙ୍କୁ ଛାଡ଼ିଦେଲେ ବାକି ପରିଚାରକ ସବୁ ଆମେରିକାନ୍ ।

ଶାନ୍ତିରେ ଭରପେଟ ଆହାର କରି, ପାନମହୁରୀ ଚୋବାଇ ଚୋବାଇ ଫେରିଲାବେଳକୁ ସେଦିନ ଅପରାହ୍ନ ।

ଯା' ପରଠାରୁ ପ୍ରତ୍ୟେକ ରବିବାର 'ସିନ୍ଧୁ'ରେ ମଧ୍ୟାହ୍ନଭୋଜନ କରିବା ଏକପ୍ରକାର ନିୟମରେ ପଡ଼ିଯାଇଥିଲା । ମଝିରେ ମଝିରେ ଖାଦ୍ୟପଦାର୍ଥ ମଗେଇ

ଦେଉଥିଲୁ ମଧ । ଫୋନ୍‌ରେ ଭୋଜ୍ୟବସ୍ତୁର ନିର୍ଦ୍ଦେଶ ଦେଇଦେଉଥିଲା ବବି । ଘଣ୍ଟାକ ପରେ ଯାଇ ନେଇ ଆସୁଥିଲା ।

ମୁଁ ଭାରତବର୍ଷ ଫେରିବା ପୂର୍ବଦିନ ସୋମନାଥ ଫୋନ କଲେ । କହିଲେ, ଆଜି ଚମତ୍କାର ଦୋଷା ହେଇଛି, ଆସିକି ନେଇଯାଆନ୍ତୁ । ବବି ଗାଡ଼ି ନେଇ ଯାଇ ଗରମ ଗରମ ପୂରଦିଆ ମସାଲାଦୋଷା, ସମ୍ବର ଓ ଚଟଣୀ ନେଇ ଆସିଲା ତତ୍‌କ୍ଷଣାତ୍ ।

ଫେରିଆସି କହିଲା - ଜାଣିଚ ମାମା ! ସୋମନାଥ ଆଜି ମୋ'ଠାରୁ ବହୁତ କମ୍ ପଇସା ନେଲେ । ମୁଁ ଆଗରୁ ମସଲା ଦୋଷା ଆଣିଚି ତ ! ସଠିକ୍ ଦାମ୍‌ଟି ତେଣୁ ଜାଣେ । ତାଙ୍କୁ ପଚାରିଲାରୁ କଅଣ କହିଲେ ଜାଣିଚ ?

- କଅଣ କହିଲେ ?

- କହିଲେ ମା' ଯେ କାଲି ଭାରତବର୍ଷ ଫେରିଯାଉଛନ୍ତି । ତାଙ୍କୁ ଖୁଆଇବା ଭଏ ମୋର ଶେଷ ଦୋଷା । ମସାଲା ଦୋଷା ଦେଇଥିଲେ ବି ତେଣୁ ସାଦା ଦୋଷାର ଦାମ୍ ପକେଇଛି ମୁଁ । ମା'ଙ୍କ ପାଇଁ ଭଏ ମୋର କନ୍‌ସେସନ୍ ।

ଖାଇ ଦେଖିଲି - ଚମତ୍କାର ସ୍ୱାଦ ଥିଲା ସେ ମସାଲା ଦୋଷାର । ସୋମନାଥଙ୍କର ସ୍ନେହ ଓ ଶ୍ରଦ୍ଧା ବୋଧହୁଏ ଗୋଳେଇ ହେଇଯାଇଥିଲା ସେ ବିରିଚାଉଳର ପିଠୋଉ ସହିତ ।



# ସୋନୁ

ବମ୍ବେରେ ଉଡ଼ାଜାହାଜରେ ଚଢ଼ିବାଠାରୁ ଆରମ୍ଭକରି ଭୁବନେଶ୍ୱର ପହଞ୍ଚିବା ପର୍ଯ୍ୟନ୍ତ - ସାରା ରାସ୍ତା ସୋନୁ କାନ୍ଦିଥିଲା । ବେଶ୍ କରୁଣ ଭାବରେ । ବଡ଼ ବଡ଼ ଡବ୍‌ଡବ୍ ନୀଳ ଡ଼ୋଳା ଉପୁଚି ଶ୍ରାବଣର ବୁନ୍ଦାପରି ଅବିରଳ ଲୁହଠୋପା ବହି ଲାଗିଥିଲା ତା'ର । ଟଫି ଖାଇବାରେ ଏତେ ବେଶୀ ସରାଗୀ ହେଉଥିଲେ ସୁଦ୍ଧା, ଏୟାରହୋଷ୍ଟେସ୍ ଟ୍ରେ ଭର୍ତ୍ତି ଲଜେନ୍ସ ତା ଆଗରେ ଆଣି ଧରିଲାବେଳେ, ଟ୍ରେଟି ଠେଲିଦେଲା ହାତରେ । ଲଞ୍ଚପ୍ୟାକେଟ୍‌ଟି ଖୋଲିକି ଦେଖିଲାନି ସୁଦ୍ଧା । କେବଳ କାନ୍ଦିଲା ଆଉ ବାରମ୍ବାର ଦୋହରେଇ ଲାଗିଲା ଚାରୋଟି ଶବ୍ଦ - ଆଇ ମିସ୍ ମାଇଁ ପାପା ।

ମୁଁ ଏଇଆ ଇ ଭୟ କରୁଥିଲି । ଏକାଧିକଥର ବବିକୁ ଟେଲିଫୋନ୍‌ରେ କହିଥିଲି - ପାଞ୍ଚ ବର୍ଷର ଛୁଆ । କେବେ ବି ଏକା ତୁମ ଦି ଜଣଙ୍କୁ ଛାଡ଼ିକି ରହିନି । ଭୁବନେଶ୍ୱର ତା' ପାଇଁ ବିଲ୍‌କୁଲ୍ ନୂଆ ଜାଗା । ଇଂରାଜୀ ବ୍ୟତୀତ ଅନ୍ୟ କୌଣସି ଭାଷା ବି ଜାଣେନି । ଆମ ପାଖେ ରହିପାରିବତ ? କାନ୍ଦିବନି ତ ?

ବବି କହିଥିଲା - ତମେ ଜମ୍ମା ବ୍ୟସ୍ତ ହୁଅନା ମାମା ! ମୁଁ ତାକୁ ବୁଝେଇ ଦେଇଛି । ଏଥରକ ସିଏ ଜେଜେବାପା, ଜେଜେମା'ଙ୍କ ସାଥିରେ ଛୁଟି କଟେଇବ ବୋଲି । ତା' ଛଡ଼ା ତୁମ ଦୁଇଜଣଙ୍କୁ ଚିହ୍ନିବା ବି ତ ତା' ପାଇଁ ଦରକାର ।

ମୁଁ କିନ୍ତୁ ଜାଣିଥିଲି - ପ୍ରକୃତ କାରଣ ସେଇଟା ନ ଥିଲା । ବବି ଥିଲା ଆମର ଏକମାତ୍ର ସନ୍ତାନ । ରହୁଥିଲା ଆମେରିକାରେ । ଯେତେବେଳେ ଆସୁଥିଲା ଆମ ଦୁଇଜଣଙ୍କର ଏକାକୀ ନିର୍ଜନ ଜୀବନକୁ ଦେଖି ବେଶ୍ ବିବ୍ରତ ହେଉପଡୁଥିଲା । ପାଖରେ ରହି ପୌତ୍ର ପୌତ୍ରୀଙ୍କର ଅଳିଅର୍ଦ୍ଦଳି ସହିବାର ସୌଭାଗ୍ୟ ଆମକୁ ଦେଇପାରୁନଥିଲା ବୋଲି ହୁଏତ କିଛିଟା ଅପରାଧ ବୋଧ ରହୁଥିଲା ତା' ମନରେ । ତେଣୁ ୟୁନିଭର୍ସିଟି କାମରେ ଯେତେବେଳେ ଭାରତ ଆସିଲା, ଆମକୁ ପୌତ୍ରସୁଖ ଦେବାପାଇଁ ସୋନୁକୁ ନେଇ ଆସିଲା ସାଥିରେ । ବବିର କାମଥିଲା ବମ୍ବେ ଓ ଦିଲ୍ଲୀରେ । ସୋନୁକୁ ବମ୍ବେ ଯାଇ ନେଇ ଆସିବାର ଦାୟିତ୍ୱଟି ଥିଲା ମୋ ଉପରେ ନ୍ୟସ୍ତ । କଥାଥିଲା - ଫେରନ୍ତା ବାଟରେ ଭୁବନେଶ୍ୱରରେ କିଛିଦିନ ରହି ସୋନୁକୁ ସାଥିରେ ଧରି ବବି ଫେରିଯିବ ଆମେରିକା । ପୁତ୍ରବଧୂ ସ୍ମିତା ଛୁଟି ନ ପାଇବାରୁ ଆସିପାରିନଥିଲା ।

ପ୍ଲେନ୍‌ଯାତ୍ରା ସମୟରେ, ଶେଷ ପର୍ଯ୍ୟନ୍ତ ଅବଶ୍ୟ ସୋନୁର କ୍ରନ୍ଦନର ତୀବ୍ରତା କିଛି ପରିମାଣରେ ହ୍ରାସ କରାଇବାରେ ମୁଁ ସକ୍ଷମ ହେଉଥିଲି । ଗୋଟିଏ ଅଭିନବ

ଉପାୟରେ । ଚାଲାଖି କରି ନିଜେ କାନ୍ଦିବାକୁ ଆରମ୍ଭ କରିଥିଲି । ସୋନୁ ଅବାକ୍ ଆଖିରେ କିଛି ସମୟ ମତେ ଚାହିଁ ପଚାରିଲା - ମା ! ତମେ କାହିଁକି କାନ୍ଦୁଚ ? ମୁଁ କହିଲି - ତୁ କାନ୍ଦିବାରୁ ଯେ ଅସମ୍ଭବ କଷ୍ଟ ହେଉଛି ମୋ'ର । ମୁଁ ଯେ ଭାରି ଭଲପାଏ ତୋତେ ! ଏଥରକ କୁନି କୁନି ହାତରେ ମୋ ଲୁହପୋଛି ଦେଇ ସୋନୁ କହିଲା - ତମେ କାନ୍ଦନା ମା ! ମୁଁ ପ୍ରତିଜ୍ଞା କରୁଛି, ଆଉ ଜମ୍ମା କାନ୍ଦିବିନି । କୋହ ତାର କିଛି ମାତ୍ରାରେ କମିଗଲା ଯା ପରେ । ଏବଂ ପିତାମହୀ ଓ ପୌତ୍ରଙ୍କର ଏତାଦୃଶ କଥୋପକଥନ ତଥା ଲୁହଖେଳରେ ଆମୋଦିତ ହୋଇ ଆମପାଖରେ ଏକାଧାଡ଼ିରେ ବସିଥିବା ସହଯାତ୍ରୀଜଣକ ଅନେକ ସମୟ ଧରି ଦିଲ୍‌ଖୋଲା ହସ ହସିଥିଲେ ।

ଭୁବନେଶ୍ୱର ଏରୋଡ୍ରମ୍‌ରେ ପହଞ୍ଚି କିନ୍ତୁ ଅଚାନକ୍ କାନ୍ଦ ବନ୍ଦ ହେଇଗଲା ସୋନୁର । ବିନୟ କିଛି ଦୂରରେ ବାଡ଼ ସେପଟେ ଠିଆ ହେଇଥିଲେ । ଦେଢ଼ବର୍ଷ ପରେ ଦେଖୁଥିଲେ ବି ଠିକ୍ ଚିହ୍ନିପାରିଥିଲା ତାଙ୍କୁ । ପାଖକୁ ଦୌଡ଼ିଯାଇ କହିଲା - ବାପା, ଦେଖି, ଦେଖି, ତମର ଏବେ କେତେଟା ଦାନ୍ତ ଅଛି ? ବିନୟ ତାକୁ ଇମେଲ୍ ପଠାଇଥିଲେ ତାଙ୍କର ଦୁଇଟି ଦାନ୍ତ ଡ଼ାକ୍ତର ଉପାଡ଼ି ଦେଇଛି ବୋଲି । ବିନୟ ତା ପାଇଁ ଅଜସ୍ର ବେଲୁନ୍‌ରେ ଘର ସଜେଇଥିଲେ । ଘରେ ପହଞ୍ଚି ଖଟଉପରେ ନାଚିବାକୁ ଲାଗିଲା ଏବଂ ଚଳନ୍ତା ଫ୍ୟାନ୍ ଉପରକୁ ତଳୁ ବେଲୁନ୍ ଫିଙ୍ଗି, ସେ ବେଲୁନ୍ ଫଟାଇବାର ଆନନ୍ଦରେ ମସ୍‌ଗୁଲ୍ ହେଇ ଭୁଲିଗଲା ପିତାମାତାଙ୍କଠାରୁ ଅଲଗା ହେଇଯିବାର କ୍ଳେଶ ।

ସୋନୁ ଥିଲା ସ୍ୱଭାବରେ ଚପଳ । ଏବଂ ଆମର ଜୀବନଚର୍ଯ୍ୟା ଥିଲା ଅନେକାଂଶରେ ସ୍ଥବିର । ତେଣୁ ସୋନୁ ତାର ସମୟତକ କିଭଳି ଖର୍ଚ୍ଚ କରିବ ଭାବି ଆମେ ବେଶ୍ ଚିନ୍ତିତ ଥିଲୁ । କିନ୍ତୁ ସେ ସମସ୍ୟାଟିର ଅଚିରେ ସହଜ ସମାଧାନଟିଏ ହେଇଗଲା । ଏବଂ ତାହା ସମ୍ଭବ ହେଲା ଆମ ତଳମହଲାରେ ଭଡ଼ାଥିବା ସୁଶ୍ରୀ, ମିଷ୍ଟଭାଷିଣୀ ପଞ୍ଜାବୀ ବଧୂଟି ଯୋଗୁଁ । ସୋନୁ ସାରା ସକାଳ ବିତାଉଥିଲା ବନ୍ଦନା ପାଖରେ । ବନ୍ଦନା ସୋନୁକୁ ଖଟଉପରେ ବସାଇ ଓ ଖେଳଣାଟିଏ ଧରାଇ ଦେଇ ଘରକାମ କରୁଥିଲା । ମଝିରେ ମଝିରେ ସୋନୁ ସହିତ ଟୁକ୍‌ଟାକ୍ କଥାବାର୍ତ୍ତା । ବେଶ୍ ନିରୁଦ୍‌ବେଗ ଭାବରେ ଘଣ୍ଟା ଘଣ୍ଟା ଧରି ସେଠି ବସିରହୁଥିଲା ସୋନୁ । ସ୍ମିତା ଆମେରିକାରୁ ଫୋନ୍ କରି ପଚାରିଲା - ମାମା ! ସୋନୁ ମତେ ମନେପକାଉଛି ? ମୁଁ କହିଲି - ଜମ୍ମା ନୁହେଁ । ତୋ' ପୁଅ ବରଂ ଏଠି ଯା ଭିତରେ ପ୍ରିୟଦର୍ଶନା ବାନ୍ଧବୀଟିଏ ଯୋଗାଡ଼ କରିସାରିଲାଣି । ସ୍ମିତା ହସିଲା ଖିଲ୍‌ଖିଲ୍ ହେଇ ।

ସୋନୁ ଆମ ପାଖରେ ଥିଲା ପନ୍ଦର ଦିନ । ଚମତ୍କାର ଦୀପ୍ତିମାନ୍ ଦିନ ସେ ସବୁ ଥିଲା ଆମ ପାଇଁ । ଅଜସ୍ର ଗପ କରୁଥିଲା ସିଏ ଆମ ସାଥିରେ । କିପରି ତାର ଗୋଟିଏ ସାଙ୍ଗ-କ୍ରିସ୍ ଭାରି ବଦ୍‌ମାସ୍, ବାପା ମା'ଙ୍କ କଥା ଶୁଣେନି । କିପରି ଗଛ

କାଟିଦେଲେ ପୃଥିବୀ ନଷ୍ଟ ହେଇଯିବ । ପଶୁପକ୍ଷୀମାନଙ୍କୁ ହତ୍ୟା କରିବା କିପରି ଚରମ ନିଷ୍ଠୁରତାର ପ୍ରତୀକ ଓ ସେଇଥିପାଇଁ ସିଏ ଠିକ୍ କରିଛି ଆଉ ଚିକେନ୍ ନ ଖାଇ ଶାକାହାରୀ ହୋଇଯିବ ଇତ୍ୟାଦି ଇତ୍ୟାଦି । ବତାଉଥିଲା ଯେ ତା ଜନ୍ମଦିନରେ ସେମାନେ ସିଜଲର୍ଲ୍ୟାଣ୍ଡ ଦୋକାନକୁ ଯାଇ ଇଲେକ୍ଟ୍ରୋନିକ୍ସ ଗେମ୍ସ୍ ଖେଳିଥିଲେ ଓ ଏଠୁ ଫେରିଗଲେ ତାଙ୍କ ସ୍କୁଲ୍ର ପିଜ୍ଜା ପାର୍ଟିରେ ତାକୁ ଯୋଗ ଦେବାର ଅଛି । ପ୍ରସଙ୍ଗକ୍ରମେ ଏକଥା ମଧ ଜଣାଇଥିଲା ଯେ ସିଏ ଭାବୁଛି ଆସନ୍ତା ଅକ୍ଟୋବର ମାସରେ ତା ପାପା ଓ ମମି ବାହାହେବେ । ବିଗତ ଦଶବର୍ଷ ଧରି ବିବାହିତ ଜୀବନଯାପନ କରୁଥିବା ତା ପିତା ଟେଲିଫୋନ୍ରେ ଖବରଟି ପାଇ ଦ୍ୱିତୀୟ ବିବାହର ସମ୍ଭାବନାରେ ଉଲ୍ଲସିତ ହେଇଥିଲେ ଓ କ୍ରମାଗତ ପାଞ୍ଚମିନିଟ୍ ଧରି ହସିଥିଲେ ।

ସୋନୁ ଶୋଉଥିଲା ମୋ' ପାଖରେ । ଦିନେ ଅର୍ଦ୍ଧରାତ୍ରିରେ ମୋତେ ନିଦରୁ ଉଠାଇ କହିଲା - ମା', ମୁଁ ଆଜି ଜମା ଶୋଇପାରୁନି ।

- କାହିଁକି ? କଅଣ ହେଲା ?

- ତମେ ଜାଣନିକି ମା ? ମୁଣ୍ଡଟା ଫାଙ୍କା ଥିଲେଇ ନିଦ ହୁଏ । ମୁଣ୍ଡ ଭିତରେ କଅଣ ଗୋଟେ କଥା ଭାବୁଥିଲେ ମୋଟେ ନିଦ ହୁଏନି ।

- ତୁ କଅଣ ଏତେ କଥା ଭାବୁଛୁ ଯେ ? ମୁଁ ପଚାରିଲି ।

ସୋନୁ କହିଲା - ଲଗାନ୍ ସିନେମାରେ କ୍ରିକେଟ୍ ମ୍ୟାଚ୍ ଆଗରୁ ଗାଁ ବାଲାଙ୍କ ସାଥିରେ ମିଶି ଭୁବନ୍ ଗାଇଥିବା ଗୀତଟି କଥା ମୁଁ ଭାବୁଚି । ହେଲେ ଗୀତଟି ମୋର ଆଦୌ ମନେପଡୁନି । ଆଉ ଖାସ୍ ସେଇଥିପାଇଁ ମୁଁ ଶୋଇପାରୁନି ।

ସୋନୁ କ୍ରିକେଟ୍ ଭଲପାଏ ବୋଲି ବବି ତାକୁ ଲଗାନ୍ ସିନେମାଟି ଦେଖାଇଥିଲା ବୋଲି ମୁଁ ଜାଣିଥିଲି । ମୁଁ କହିଲି - ଏଇଟା ତ କିଛି ସମସ୍ୟା ଇ ନୁହେଁ । କାଲି ବାପାଙ୍କୁ କହିଲେ ଲଗାନ୍ର ସି.ଡ଼ି.ଟି ନେଇ ଆସିବେ । ତୁ କଂପ୍ୟୁଟରରେ ଗୀତଟି ଦେଖିନେବୁ । ସୋନୁ ଏଥରକ କଡ଼ମୋଡ଼ି ଶୋଇଲା ଓ ଦୁଇମିନିଟ୍ ଭିତରେ ଗଭୀର ଭାବରେ ତନ୍ଦ୍ରାମଗ୍ନ ହେଲା ।

କଂପ୍ୟୁଟର ଚଳାଇବାରେ ଥିଲା ଓସ୍ତାଦ୍ । ପରଦିନ ଗୀତଟି ଓ କ୍ରିକେଟ୍ ମ୍ୟାଚ୍ଟି ଦେଖିଦେଲା କଂପ୍ୟୁଟରରେ । ଏବଂ ସାରାଦିନ ଗୋଟିଏ ସାନବାଡ଼ିକୁ କ୍ରିକେଟ୍ ବ୍ୟାଟ୍ କରି ଓ ଗୋଟିଏ କାଳ୍ପନିକ ବଲ୍ ପଛରେ ଗୋଡ଼ାଇ ଗୋଡ଼ାଇ କ୍ରିକେଟ୍ ଖେଳି ଲାଗିଲା ଘରସାରା ଏବଂ କାଳେ ଝୁଣ୍ଟିକି ପଡ଼ିଯିବ ବୋଲି ଭୟକରି ଆମେ ଫର୍ଣିଚର ସବୁ ଘରକଣକୁ ଟାଣିବାକୁ ଲାଗିଲୁ ।

ସୋନୁକୁ ଭାରତୀୟ ଖାଦ୍ୟ ରୁଚିକର ମନେ ହେଉନଥିଲା । ଏଥିପାଇଁ ବହୁତ ବିବ୍ରତ ହୋଇ ଶେଷକୁ ଦିନେ ତାକୁ କହିଲି -ସୋନୁ ! ତୁ ସକର୍ ଖେଳିବାକୁ ବହୁତ ଭଲପାଉ । ମାଂସପେଶୀ ଶକ୍ତ ହେଲେ ସିନା ଭଲ ଖେଳାଳୀ ହେବୁ । ପୁଷ୍ଟିସାର ଯୁକ୍ତ ଖାଦ୍ୟ ତ ତତେ ଖାଇବାକୁ ପଡ଼ିବ ସେଥିପାଇଁ । ସେଇଦିନଠାରୁ ସୋନୁ ମାଗି ମାଗି ପ୍ରତିଦିନ ଗିନାଏ ହବ କିସ୍‌ମିସ୍ ଏବଂ ଗୋଟିଏ ଲେଖାଏଁ ଗାଜର ଖାଇବାକୁ ଲାଗିଲା ଏବଂ ପ୍ରତି ଅଧଘଣ୍ଟାରେ ଥରେ ଲେଖାଏଁ ଟିସାର୍ଟର ହାତଟି ମୋଡ଼ିଦେଇ ପରଖି ଲାଗିଲା ବାହୁର ମାଂସପେଶୀ ସଶକ୍ତ ହେଲାଣି ନା ନାହିଁ । ଏକଥା ମଧ ଜଣାଇଦେଲା ଯେ 'ଜଙ୍କ୍‌ଫୁଡ୍' ଖାଇବା ଆଦୌ ଭଲ ନୁହେଁ । ସିଏ ତେଣୁ ଚେରୀ, ହନିଡ଼ିଉ ମେଲନ୍, ଜୁସ୍ ଓ ପପ୍‌କର୍ଣ୍ଣ ଖାଇବାକୁ ପସନ୍ଦ କରେ ।

ସୋନୁ ଏଇଠି ଥିବା ସମୟରେ ବିନୟଙ୍କର ଜନ୍ମଦିନ ପଡ଼ିଲା । ସେଦିନ ଅନେକ ସମୟ ଧରି କବାଟ ବନ୍ଦକରି ସୋନୁ ପଶିରହିଲା ବେଡ୍‌ରୁମ୍‌ରେ । ଯେତେବେଳେ ବାହାରିଲା, ତା ହାତରେ ଥିଲା ଦୁଇଟି ପେଣ୍ଟିଙ୍ଗ୍ । ସାଥିରେ ଆଣିଥିବା ରଙ୍ଗ ପେନ୍‌ସିଲ୍‌ରେ ବଡ଼ବଡ଼ କାଗଜରେ ଆଙ୍କିଥିଲା - ପ୍ରଥମଟିରେ ଜ୍ୱଳନ୍ତ ମହମବତୀ ଯୁକ୍ତ ବିରାଟକାୟ କେକ୍ ପାଖରେ ଜଣେ ଭଦ୍ରବ୍ୟକ୍ତି ଓ ସାନଛୁଆଟିଏ ଦଣ୍ଡାୟମାନ । ତଳେ ଅଙ୍କାବଙ୍କା ଅକ୍ଷରରେ ଲେଖା - ହାପିବାର୍ଥଡ଼େ ଟୁ ବାପା । ଦ୍ୱିତୀୟଟିରେ ଜଣେ ବିରଳ କେଶ ପୁରୁଷ ଓ ଲମ୍ୱାବେଣୀଥିବା ମହିଳାଙ୍କର ଛବି । ମଝିରେ ଦୁହିଁଙ୍କର ତର୍ଜନୀ ଧରି ବାଟ ଚାଲୁଥିବା ଚାରି ପାଞ୍ଚବର୍ଷର କୌତୁକିଆ ବାଳକଟିଏ । ତଳେ ବଡ଼ ବଡ଼ ଅକ୍ଷରରେ ଲେଖା - ଆଇ ଲଭ୍ ବାପା ଆଣ୍ଡ୍ ମା' । ପେଣ୍ଟିଙ୍ଗ୍ ଦୁଇଟି ସାଇତି ରଖିଛି ପାଖରେ । ମୋ' ଜୀବନର ସର୍ବଶ୍ରେଷ୍ଠ ଉପହାର ରୂପେ ।

ଏଠା ରହଣି ସମୟରେ, ସୋନୁର ସବୁଠାରୁ ଉଲ୍ଲାସମୟ ମୁହୂର୍ତ୍ତଗୁଡ଼ିକଥିଲା ସନ୍ଧ୍ୟାବେଳେ ବିନୟଙ୍କ ସାଥିରେ ବଜାର ବୁଲିଯିବା । ବିନୟଙ୍କ ତର୍ଜନୀଟି ଧରି ସାରାରାସ୍ତା ଗୀତ ଗାଇ ଗାଇ ବାଟ ଚାଲୁଥିଲା । ଆଇସ୍‌କ୍ରିମ୍ ଓ ପଟାଟୋ ଚିପ୍‌ସ୍ ଖାଇ, ସାରା ବଜାର ଦୌଡ଼ି ତଥା ବିନୟଙ୍କୁ ନାକେଦମ୍ କରି ଫେରି ଆସୁଥିଲା ଘରକୁ । କହୁଥିଲା ଏଇ ଅନୁଭୂତିଟି ତା'ର କୁଆଡ଼େ ଚିରସ୍ମରଣୀୟ ହୋଇ ରହିବ ।

ଫେରିଯିବା ପୂର୍ବ ହଠାତ୍ ସୋନୁ କହିଲା - ମା ! ତମେ ଓ ବାପା ଏଠି ଭାରି ଏକୁଟିଆ, ନା ? ତମେ କାମ କରି କରି ଏକ୍‌ଦମ୍ ଥକା ହେଇପଡୁଚ । ମୁଁ ଯଦି ଏଠି ରହନ୍ତି ବାପାଙ୍କୁ ମୋଟେ ବଜାର କରିବାକୁ ଦିଅନ୍ତିନି । ନିଜେ ବଜାର କରିଆଣନ୍ତି । ତମକୁ ବି ଘର କାମରେ ସାହାଯ୍ୟ କରନ୍ତି ସବୁବେଳେ ।

- ତୁ ତା ହେଲେ ରହିଯାଉନୁ ? ମୁଁ କହିଲି ।

- କେମିତି ରହିବି ଯେ ! ମୋତେ ଯେ ସ୍କୁଲ ଯିବାକୁ ପଡ଼େ । ମୋର କେତେ ପ୍ରୋଜେକ୍ଟ କାମ କରିବାକୁ ଅଛି । ପାପା, ମମି ମଧ୍ୟ ଆସିପାରିବେନି । ସେମାନେ ଭାରି କାର୍ଯ୍ୟବ୍ୟସ୍ତ । ଦୁହିଁଙ୍କୁ ୟୁନିଭର୍ସିଟି ଯିବାକୁ ପଡ଼େ । ଘରେ କେବଳ 'ମାନୁ'ର ଇ କିଛି କାମ ନାହିଁ । ମୁଁ ଭାବୁଛି ଫେରିଗଲେ ତମକୁ କାମରେ ସାହାଯ୍ୟ କରିବାପାଇଁ ତାକୁଇ ପଠେଇ ଦେବି । ପ୍ରସଙ୍ଗତଃ କହିରଖେ - ମାନୁ ହେଉଛି ସୋନୁର ଦୁଇବର୍ଷର କୁନି ଭଉଣୀଟି ।

ସୋନୁ ଫେରିଯାଇଛି ଯା' ଭିତରେ । ଗଲା ଆଗରୁ ବାରମ୍ବାର କହିଯାଇଛି ମାନୁକୁ ପଠାଇଦେବ ଆମ ପାଖକୁ । ଆମେ ଦିହେଁ ଏବେ ଅଧୀର ଚିତ୍ତରେ ଅପେକ୍ଷା କରି ରହିଚୁ ମାନୁର ଆସିବାର ଲଗ୍ନକୁ । ଅପେକ୍ଷା କରି ରହିଚୁ କେବେ ଆମର ଦୁଇବର୍ଷୀୟା ପୌତ୍ରୀଟି ଆସି ପହଞ୍ଚିବ ଆମ ପାଖରେ - ଆମକୁ କାମରେ ସାହାଯ୍ୟ କରିବାପାଇଁ ।



# ଡ଼ିନର ପାର୍ଟି

ଢାଓ ତା'ର ଡ଼ିନରପାର୍ଟିକୁ ନିମନ୍ତ୍ରଣ କରିଥିଲା ।

ଢାଓ ୟାଙ୍ଗ୍ । ମିସିଗାନ୍ ଷ୍ଟେଟ୍ ୟୁନିଭର୍ସିଟିର ଅଧ୍ୟାପକ ଏବଂ ମୋ ପୁତ୍ରର ସହକର୍ମୀ । ପାର୍ଟି ଦେଉଥିଲା କିଥ୍‌ଙ୍କ ସମ୍ମାନାର୍ଥେ । ତାଙ୍କ ଜନ୍ମଦିନରେ । ପ୍ରାପ୍ତବୟସ୍କ କିଥ୍ ଥିଲେ ସାନ୍‌ଫ୍ରାନ୍‌ସିସକୋର ଏକ କାଥୋଲିକ କଲେଜର ପ୍ରଫେସର । ଖାସ୍ ଏଇ ଜନ୍ମଦିନ ପାର୍ଟି ପାଇଁ ଦିନକ ପାଇଁ ଆସିଥିଲେ ଲାନ୍‌ସିଂ । ରହୁଥିଲେ ଢାଓ ଘରେ, ତାହାରି ସହିତ । ଢାଓ ତା ଜୀବନର ସବୁକିଛି ସ୍ୱୀକୃତି ତଥା ସ୍ୱାଚ୍ଛନ୍ଦ୍ୟ ପାଇଁ କିଥ୍‌ଙ୍କ ନିକଟରେ ଋଣୀ ଥିଲା । କିଥ୍ ନ ଥିଲେ କୁଆଡ଼େ ଚୀନ୍‌ର କେଉଁ ଅଖ୍ୟାତ କୋଣ ସ୍ଥିତ ଏକ ଅନାମଧେୟ କଲେଜରେ ସିଏ ଏବେ ପାଠ ପଢ଼ାଉଥାଆନ୍ତା ।

କେଇବର୍ଷ ତଳେ, ଶିକ୍ଷା ସମ୍ବନ୍ଧୀୟ କୌଣସି ଏକ କାର୍ଯ୍ୟକ୍ରମରେ ଚୀନ୍ ଭ୍ରମଣ କଲାବେଳେ, ଢାଓ ସହିତ କିଥ୍‌ଙ୍କର ଦେଖା । ଜ୍ଞାନଲିପ୍‌ସୁ, ବୁଦ୍ଧିଦୀପ୍ତ ଯୁବକଟିକୁ ଦେଖି, ବେଶ ପ୍ରୀତ ହେଇଥିଲେ କିଥ୍ । ନିମନ୍ତ୍ରଣ ଜଣାଇଥିଲେ ଆମେରିକା ଆସି ଉଚ୍ଚତର ଶିକ୍ଷା ଲାଭ କରିବା ପାଇଁ । ବୃତ୍ତିର ବନ୍ଦୋବସ୍ତ ବି କରିଦେଇଥିଲେ । ତାଙ୍କରି ବଦାନ୍ୟତାରୁ ଇଲିନୟ ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡ଼ି. କରି ଢାଓ ବର୍ତ୍ତମାନ ଏଇ ପ୍ରଖ୍ୟାତ ବିଶ୍ୱବିଦ୍ୟାଳୟରେ କାର୍ଯ୍ୟରତ । ୟା ଭିତରେ ବେଶ୍ କିଛି ବର୍ଷ ବିତିଯାଇଥିଲେ ସୁଦ୍ଧା ତା ଜୀବନର ଏଇ ନାଟକୀୟ ପରିବର୍ତ୍ତନ ସୂତ୍ରଧାର କିଥ୍‌ଙ୍କୁ ଢାଓ ଭୁଲି ନ ଥିଲା । ପ୍ରତ୍ୟେକ ବର୍ଷ, ଅବିବାହିତ ଓ ପରିବାର ବିହୀନ କିଥ୍‌ଙ୍କର ଜନ୍ମଦିନଟି ମହାସମାରୋହରେ ପାଳନ କରୁଥିଲା ନିଜ ଘରେ ।

ୟା ପୂର୍ବରୁ ଅବଶ୍ୟ ମୁଁ ଆମେରିକା ପହଞ୍ଚିବା ଠିକ୍ ପରେ ପରେ, ଢାଓ ମତେ ନିମନ୍ତ୍ରଣ କରିଥିଲା ତା' ଘରର ରବିବାରୀୟ ଲଞ୍ଚରେ ଦିନଟିଏ ସାମିଲ୍ ହେବାପାଇଁ । ବବି ତଥା ପୁତ୍ରବଧୂ ସ୍ମିତା ସହିତ ଯାଇଥିଲି ତା ବାସଗୃହକୁ । ସାଥିରେ ଚାରିବର୍ଷର ପୌତ୍ର ସୋହମ୍ ଓ ତିନିମାସର ପୌତ୍ରୀ ଶ୍ରେୟାକୁ ନେଇ ।

ଢାଓର ଥିଲା ଲାନ୍‌ସିଂର ସଂଭ୍ରାନ୍ତ ଇଲାକା ଓକେମସ୍‌ରେ ଛବିପ୍ରତିମ ଦୁଇମହଲା କାଠଘରଟିଏ । ସୁଦୃଶ୍ୟ ଏବଂ ପରିଚ୍ଛନ୍ନ । ପହଞ୍ଚି ଦେଖେ ଢାଓର ପ୍ରତ୍ୟେକ ବଖରାରେ ଅପର୍ଯ୍ୟାପ୍ତ ଜିନିଷ ଠେସା । ଘରର କୋଣ, ଅନୁକୋଣ ଆସବାବପତ୍ର ଓ ସୌଖୀନ୍ ସାମଗ୍ରୀରେ ଭର୍ତ୍ତି । ଏଠି ସେଠି ଇତସ୍ତତଃ ହେଇ ପଡ଼ିଥିବା ପିଲାମାନଙ୍କର ଦାମୀ ଖେଳଣାଗୁଡ଼ିକ ଗଣି ବି ଶେଷ କରିପାରିଲିନି । ଢାଓର ସାତବର୍ଷର ସ୍ୱାସ୍ଥ୍ୟବାନ୍ ପୁତ୍ର ଟାଇଗର ଦୌଡ଼ିଆସି କହିଲା 'ହାଇ' । ଆଉ ତା' ପରେ ପରେ ବେସ୍‌ମେଣ୍ଟକୁ ଯାଇ ସୋହମ୍ ସହିତ କଂପ୍ୟୁଟରରେ ଭିଡ଼ିଓ ଗେମ୍ ଖେଳିବାରେ ବ୍ୟସ୍ତ ହେଇ ପଡ଼ିଲା ।

ହଠାତ୍ ତା' ଅଣ୍ଟାପାଖରେ ବନ୍ଧା ହୋଇଥିବା ମୋବାଇଲ୍ ଟେଲିଫୋନ୍ ସଦୃଶ ଏକ ଯନ୍ତ୍ରରେ କିଛି ଶବ୍ଦ ଶୁଣି ଜାଓ କହିଲା – ଆଥିନା ଉପର ମହଲାରେ ଶୋଇଥିଲା । ଏବେ ଉଠିପଡ଼ିଲାଣି । ସିଏ କାନ୍ଦିଲେ ଏଇ ପେଜର୍ ଶବ୍ଦ କରି ସିଗ୍‌ନାଲ ଦିଏ । ଦ୍ରୁତ ପଦକ୍ଷେପରେ ସିଡ଼ି ଚଢ଼ି ଆଠମାସର ଶିଶୁକନ୍ୟାଟିକୁ କୋଳରେ ଧରି ତଳକୁ ନେଇଆସିଲା ଜାଓ ।

ଦେଖାହେଲା ଜାଓର ହସ୍‌କୁରୀ ପତ୍ନୀ 'ଶି' ସହିତ । ସରୁ ସରୁ ଆଖିର ଲହୁଣୀବର୍ଣ୍ଣୀ ସୁର୍ଟପିନ୍ଧା ଝିଅଟିଏ । ଚେପ୍‌ଟା ମୁହଁ । ମୁଣ୍ଡରେ ଗୋଛାଏ କଳା ମୁଚ୍‌ମୁଚ୍ କୁଞ୍ଚୁକୁଞ୍ଚିଆ ବାଳ । ଶୁଣିଲି 'ଶି' ଆମେରିକା ଆସିବାପୂର୍ବରୁ ଚୀନ୍‌ର ଏକ କଲେଜରେ ରୁଷୀୟ ଭାଷାର ଅଧ୍ୟାପିକା ଥିଲା । ଏଠି ଆସି ବିଶ୍ୱବିଦ୍ୟାଳୟରେ ଏକ କଂପ୍ୟୁଟରର କୋର୍ସ କରୁଛି । ପାଠ ସରିଆସିଲାଣି ।

କଥା ପ୍ରସଙ୍ଗରେ ସେଦିନ ଜାଓଠାରୁ ଶୁଣିଥିଲି ତାର ସାତବର୍ଷର ପୁତ୍ର ଟାଇଗର ଓ ମୋ'ର ସଦ୍ୟଜାତ ପୌତ୍ରୀ ଶ୍ରେୟା ଭିତରେ ଗଢ଼ିଉଠିଥିବା ପ୍ରେମ ସଂପର୍କୀୟ ଉପାଖ୍ୟାନଟି ।

ଶ୍ରେୟା ଜନ୍ମ ହେବା ପରେ ପରେ କୁଆଡ଼େ ଟାଇଗର ନବଜାତ ଶିଶୁଟି ପ୍ରତି ଅତ୍ୟନ୍ତ ସ୍ନେହଶୀଳ ହେଇପଡ଼ିଥିଲା । ବବିଘରକୁ ଆସି ଶ୍ରେୟା ସହିତ ଖେଳି ଖେଳି ଅନେକ ସମୟ ବିତାଉଥିଲା ଛୁଟିଦିନମାନଙ୍କରେ । ଦିନେ ହଠାତ୍ ଗମ୍ଭୀର ଭଙ୍ଗୀରେ ଜାଓ ଆଗରେ ଜାହିର୍ କଲା – ପାପା, ମୁଁ ଭାବୁଛି ମୁଁ ଶ୍ରେୟାକୁ ଭଲପାଇବାକୁ ଆରମ୍ଭ କଲିଣି ।

ଜାଓ ହସି ହସି ମଜା କରି କହିଥିଲା – ସାବଧାନ୍ । ବବି ସାମ୍‌ନାରେ କିନ୍ତୁ ଏ କଥାଟି କେବେ କହିବୁନି । ତା' ଝିଅକୁ କିଏ ଭଲପାଉଛି ଜାଣିଲେ ସିଏ ରାଗିକି ନିଆଁ ହେଇଯିବ । ବାଡ଼ି ଧରି ଗୋଡ଼େଇବ ତୋ ପଛରେ ।

ଟାଇଗର କିଛି ସମୟ ଚିନ୍ତାମଗ୍ନ ହେଇ ଉତର ଦେଲା – ଏଥିରେ ରାଗିବାର କଅଣ ଅଛି ? ବଦଳରେ ବବିର ପୁଅ ସୋହମ୍ ମୋ ଭଉଣୀ ଆଥିନାକୁ ଭଲ ପାଇପାରେ ।

କାହାଣୀଟି ଶୁଣି ବେଦମ୍ ହସିଥିଲି ସେଦିନ । ହସଖୁସିର ବାର୍ତ୍ତାଳାପ ଭିତରେ ଲଞ୍ଚ ପରଶିଦେଲା 'ଶି' । ସରୁ ଚାଉଳର ଭାତ ସାଥିରେ ପାଳଙ୍ଗଶାଗ ଏବଂ ଟୋଫୁ (ସୋୟାବିନ୍)ର ତରକାରୀ, ମାଛ ଓ ଚିକେନ୍ ରୋଷ୍ଟ ଏବଂ ଲମ୍ବ ଲମ୍ବ କଟା ତେଲ ଛଣା ଆଳୁଭଜା । ରନ୍ଧା ହେଇଥିଲା ଅଲିଭ୍ ତେଲରେ । ଥିଲି ଶାକାହାରୀ । ଏବଂ ଚାଇନିଜ୍ ରୀତିରେ ରନ୍ଧା ସେ ଶାଗ ଏବଂ ସୋୟାବିନ୍‌ର ବ୍ୟଞ୍ଜନ ମତେ ଠିକ୍ ସୁହାଇ ନ ଥିଲା । ଭଦ୍ରତା ଓ ସୌଜନ୍ୟ ଖାତିର୍‌ରେ ଚେଷ୍ଟା କରି ବି ଗଳାଧଃକରଣ

କରିପାରିଲିନି । ଟେବ୍‌ଲ ମଝିରେ ଗୋଟିଏ କାଚପାତ୍ରରେ ଫଳର ଟୁକ୍‌ଡ଼ା କାଟି ରଖିଥିଲା ଶି । ୱାଟର ମେଲନ୍ ଓ ହନିଡ଼ିଉ ମେଲନ । ବଜାର୍‌ରେ ମିଳୁଥିବା ଏକ ନିର୍ଦ୍ଦିଷ୍ଟ ସ୍କୁପରରେ ଫଳ ସବୁକୁ କାଟିଥିଲା ଗୋଲ୍ ଗୋଲ୍ କରି, ସାନ ଅଙ୍ଗୁର କୋଳିର ଆକାର ଦେଇ । ଗୋଲାପି ଓ ଫିକା ହଳଦିଆ ଫଳର ରଙ୍ଗିନ୍ ମିଶ୍ରଣଟି ଆଖିକୁ ଦିଶୁଥିଲା ଭାରି ଲୋଭାବନ । ସେ ଫଳ ଖାଇଥିଲି ପ୍ଲେଟ୍‌ଭର୍ତ୍ତି । ଆଉ ଖାଇଥିଲି ବିଭିନ୍ନ ସ୍ୱାଦର, ବିଭିନ୍ନ ବାସ୍ନାର ଆଇସ୍‌କ୍ରିମ୍ । ଫ୍ରିଜ୍‌ରୁ କାଢ଼ି ପରଶି ଦେଇଥିଲା ଶି ।

କାନ୍ଥରେ ଟଙ୍ଗା ହୋଇଥିବା ଗୋଟିଏ ଫ୍ରେମ୍‌ବନ୍ଧା ଫଟ ଦେଖାଇ ଝାଓ ମତେ କହିଲା - ଦେଖନ୍ତୁ, ଇଏ ଆମ ଗାଁ । ଚାହିଁ ଦେଖିଲି । ପବନରେ ଢେଉ ଖେଳୁଥିବା ନରମ, ସବୁଜ ଧାନକ୍ଷେତ ଭିତରେ ଗୋଟିଏ ପାଦଚଲା ସରୁ ରାସ୍ତାର ଫଟୋଗ୍ରାଫ୍ । ଝାଓ କହିଲା - ଏଇ କ୍ଷେତ ସେପାରିରେ ଆମ ଗାଁ । ଏଇ ବାଟେ ଚାଲିଚାଲି ମୁଁ ସ୍କୁଲ୍ ଯାଉଥିଲି । ମୋ ବାପା ପୂରାପୂରି ନିରକ୍ଷର । ଏବେ ବେଶ୍ ବୁଢ଼ା ହୋଇଗଲେଣି । ସାରାଦିନ ବସି ବସି ଲମ୍ବା ପାଇପ୍‌ରେ ଟବାକୋର ଧୂଆଁ ଟାଣନ୍ତି । ବାପାଙ୍କର ଗୋଟିଏ ପୋଷା କୁନି ଚଢ଼େଇ ଅଛି । ପ୍ରତ୍ୟେକଦିନ ସକାଳେ ଚଢ଼େଇସହ ପଞ୍ଜୁରୀଟି ଧରି ସିଏ ଯାଆନ୍ତି ପ୍ରାତଃ ଭ୍ରମଣରେ । ରଂଗିନ୍ ସ୍ଫୂର୍ତ୍ତିଶୀଳ ଚଢ଼େଇଟି କିଚିର୍ ମିଚିର୍ ଶବ୍ଦ କରି କଥା କହେ ତାଙ୍କ ସାଥିରେ । ତାଙ୍କର ସକାଳଟି କଟେ ଏଇଭଳି । ଆଉ ସଂଜଟି ବିତେ ଗ୍ରିନ୍‌ଟି ପିଇ ପିଇ ଏବଂ ପଡ଼ୋଶୀ ବୃଦ୍ଧମାନଙ୍କ ସହିତ ଚେସ୍ ଖେଳି ଖେଳି । ଆମ ଗାଁର ବୟୋବୃଦ୍ଧ ଲୋକମାନଙ୍କର ଦିନସବୁ ସାଧାରଣତଃ ଏଇଭଳି ଭାବରେ କଟିଥାଏ ।

ମୁଁ କହିଲି - ତୁମ ଚାଇନିଜ୍‌ମାନଙ୍କର ଚା' ତିଆରି ପ୍ରଣାଳୀ ସଂପୂର୍ଣ୍ଣ ଭିନ୍ନ ପରା !

'ଶି' କହିଲା - ରହନ୍ତୁ । ଆପଣଙ୍କୁ ଆଜି ଚାଇନିଜ୍ ଟି ପିଆଇବି ।

କାନ୍ଥ ଆଲମାରୀ ଖୋଲି ଶି ବାହାର କଲା କେଇହଳ ପତଳା, ଫୁଲପକା କପ୍‌ପ୍ଲେଟ୍ । ପ୍ରତିଟି କପ୍ ଉପରେ କିନ୍ତୁ ଥିଲା ପୋର୍ସିଲେନ୍‌ର ଢ଼ାଙ୍କୁଣୀ । ଢ଼ାଙ୍କୁଣୀର ଗୋଟିଏ ପଟ କିଛି ଅଂଶରେ କଟା । ଶି ପ୍ରତିଟି କପ୍‌ରେ ଚାମୁଚେ ହବ ଲମ୍ବାଳିଆ ଗାଢ଼ ସବୁଜ ରଙ୍ଗର ଚାହାପତ୍ର ରଖି ତା' ଉପରେ ଫୁଟନ୍ତା ଗରମପାଣି ଢ଼ାଳିଦେଲା ଏବଂ ଢ଼ାଙ୍କୁଣୀଟି ତା ଉପରେ ଲଗାଇଦେଲା । କପ୍‌ଟି ମୋ' ଆଡ଼କୁ ବଢ଼ାଇଦେଲା କହିଲା - ଏବେ ପିଅନ୍ତୁ । ଢ଼ାଙ୍କୁଣୀ ଖୋଲିବେନି । ଚା' ତାହେଲେ ଅନେକ ସମୟ ଧରି ଗରମ ରହିବ । ଢ଼ାଙ୍କୁଣୀର ଯେଉଁ ଅଂଶରେ ଅଳ୍ପ କଟା ଅଛି, ସେଇବାଟେ ଚା' ପିଇବେ । ପତ୍ରସବୁ ଢ଼ାଙ୍କୁଣୀରେ ଅଟକିଯିବ । କିଛି ଅସୁବିଧା ହବନି ।

ମୁଁ କହିଲି - ଆଉ କ୍ଷୀର, ଚିନି ?

ଶି ହସିଲା । କହିଲା - ଚୀନ୍‌ରେ ଆମେ ଏ ଚା'ରେ କ୍ଷୀର ଚିନି ମିଶାଉନି । ଚା'ର ନିଜସ୍ୱ ସ୍ୱାଦ ଓ ଖୁଶ୍‌ବୁ ତା ହେଲେ ନଷ୍ଟ ହେଇଯିବ । ସାରାଦିନ ସେଠି ଏଇ ଚା'ଇ ପିଅନ୍ତି ଲୋକମାନେ । ଏକପ୍ରକାର ନିଶା କହିଲେ ଚଳେ ।

ଜାଓ ଓ ଶି ସହିତ ଏଇ ଥିଲା ମୋର ପ୍ରଥମ ପରିଚୟ । ବାଙ୍ଗ୍‌ରା ଚେହେରାର ଦିଲ୍‌ଖୋଲା, ସପ୍ରତିଭ ଅଧ୍ୟାପକଟିକୁ ଭେଟି ଭାରି ଖୁସି ଲାଗିଥିଲା ସେଦିନ । ପରକୁ ଆପଣାର କରିନେବା ପରି ଏକ ଆଶ୍ଚର୍ଯ୍ୟ କୁହୁକ ଥିଲା ଜାଓର ବ୍ୟକ୍ତିତ୍ୱରେ । ଜାଓ କହିଥିଲା - ଆଥିନାର ଜନ୍ମବେଳକୁ ମୋ ମା' ଆସି କେଇମାସ ରହିଥିଲେ ଆମ ସାଥିରେ । ଏବେ ଫେରିଗଲେ । ଆପଣଙ୍କୁ ଦେଖି ମା' ଫେରିଯିବାର ଦୁଃଖ ଲାଘବ ହେଇ୍‌ଗଲା କିଛି ପରିମାଣରେ ।

ଯା'ର କେଇଦିନ ପରେଇ ଜାଓ ପୁନର୍ବାର ନିମନ୍ତ୍ରଣ କରିଥିଲା କିଥ୍‌ଙ୍କ ପାଇଁ ଆୟୋଜିତ ଡ଼ିନର ପାର୍ଟିକୁ । ଯିବାପାଇଁ ପ୍ରଥମେ ନାମଙ୍ଗ ହେଇଥିଲି । ଜାଓ ଫୋନ୍‌ରେ କହିଥିଲା - ଏଇ ଡ଼ିନର ତ କିଥ୍‌ଙ୍କ ସମ୍ମାନାର୍ଥେ । କିଥ୍ ବବିକୁ ଚିହ୍ନନ୍ତି । ତାଙ୍କୁ ଆପଣଙ୍କ କଥା ବି ମୁଁ କହିଛି । ଆପଣମାନେ ନ ଆସିଲେ ସେ ମନଦୁଃଖ କରିବେ ନିଶ୍ଚୟ । ଅନ୍ୟ କେତେକ ଆମେରିକାନ୍ ଅଧ୍ୟାପକ ବି ଆସୁଛନ୍ତି । ଆସନ୍ତୁ ନା । ଦେଖା ହବ ସଭିଙ୍କ ସାଥିରେ । ଭଲ ଲାଗିବ ଆପଣଙ୍କୁ । ନିମନ୍ତ୍ରିତ ସମସ୍ତ ଅତିଥି ମୋ ପରିବାରର ସଦସ୍ୟ ଭଳିଆ । ଜାଓର କଥାକୁ ଯା ପରେ ଟାଳିପାରିନଥିଲି । ନିର୍ଦ୍ଦିଷ୍ଟ ଦିନ ତା ଘରେ ପହଞ୍ଚିଥିଲି ସପରିବାର ।

ପହଞ୍ଚି ଦେଖେ, ଜାଓ ଘରେ ବେଶ୍ ଲୋକଗହଳି ଓ କୋଳାହଳ । ପ୍ରାପ୍ତବୟସ୍କ କିଥ୍‌ଙ୍କ ବ୍ୟତୀତ ଉପସ୍ଥିତ ଥିଲେ ୟୁନିଭର୍ସିଟି ଅଫ୍ ମିସିଗାନ୍‌ର ଅଧ୍ୟାପକ ଡ଼କ୍ଟର ଟଡ୍ ଏବଂ ତାଙ୍କର ଗାର୍ଲଫେଣ୍ଡ୍ ନାନ୍‌ସୀ । ଜାଓଠାରୁ ଶୁଣିଲି ନାନ୍‌ସୀ କୁଆଡ଼େ ଅତିମାତ୍ରାରେ ବିଦୁଷୀ । ବର୍କଲେ ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡ଼ି. କରି ବର୍ତ୍ତମାନ ପାଖସହର ଆନ୍ ଆର୍ବରରେ ଅଧ୍ୟାପିକା । ଆଉଟ୍‌ଷ୍ଟାଣ୍ଡିଂ ୟଙ୍ଗ୍ ସାଇଣ୍ଟିଷ୍ଟ ହିସାବରେ ଖୋଦ୍ ରାଷ୍ଟ୍ରପତିଙ୍କ ଦ୍ୱାରା ପୁରସ୍କୃତା ହେବାର ଏକକ ଓ ଅନନ୍ୟ ସୌଭାଗ୍ୟ ଲାଭ କରିଛନ୍ତି ମଧ୍ୟ । ଏମାନଙ୍କ ସହିତ ଆହୁରି ଥିଲେ ପୋର୍ଟଲାଣ୍ଡ ବିଶ୍ୱବିଦ୍ୟାଳୟର ଅଧ୍ୟାପିକା କ୍ରିସ୍‌ଟିନା ଏବଂ ଟେକ୍‌ନୋଲୋଜି ଏବଂ ଟିଚିଙ୍ଗ୍ ବିଭାଗର ଆସିଷ୍ଟାଣ୍ଟ ଡ଼ାଇରେକ୍ଟର ରେକ୍ । ଉପସ୍ଥିତ ଥିଲେ ଦୁଇଜଣ ଗବେଷଣାରତ ଛାତ୍ର ମଧ୍ୟ । ରିକ୍ ଏବଂ ଜୟ । ରିକ୍ ଆମେରିକୀୟ । ଜୟ ତାମିଲ ଭାଷାଭାଷୀ ଯୁବକ ଏବଂ ପଣ୍ଡିଚେରୀ ନିବାସୀ । ବର୍ତ୍ତମାନ ସେଠାରେ ପି.ଏଚ୍.ଡ଼ି. କାର୍ଯ୍ୟରେ ଲିପ୍ତ ।

ସଭିଙ୍କ ସହିତ ପରିଚୟ କରାଇଦେଲେ ଜାଓ । ଶି ତାଙ୍କର ଦାମୀ କାମେରାଟି ଆଣି ଆମମାନଙ୍କର ଫଟ ଉଠାଇ ଲାଗିଲେ । ଖୁସିଗପ ଭିତରେ ଜାଓ ଟେବୁଲ୍ ମଝିରେ

ଆଣି ରଖିଲେ ଚକୋଲେଟ୍ ଆଇସିଂ ଦିଆ ସୁବୃହତ୍ ପ୍ଲମ୍ କେକ୍ । କିଥ୍ କେକ୍ କାଟିଲେ ଓ ବାକି ସଭିଏଁ ସମସ୍ୱରରେ ତାଳିମାରି ଗୀତ ଗାଇ ଲାଗିଲେ - ହାପି ବାର୍ଥ ଡ଼େ ଟୁ କିଥ୍ ।

ଆଜି ବି ଅନେକରକମ ଭୋଜ୍ୟ ବସ୍ତୁ ପ୍ରସ୍ତୁତ କରିଥିଲା ଶି । ଚିକେନ୍, ଫିସ୍, କ୍ୟାରଟ୍‌କେକ୍, ଟୋଫୁ, ସାମୁଦ୍ରିକ ଦଳ ଏବଂ ଅଙ୍କୁରିତ ଶସ୍ୟପୂରଦିଆ ସିଙ୍ଗେଡ଼ା ଏବଂ ମିଠାଳିଆ ବିନଚକଟା ବୋଳା ମଜାଦାର ଚାଇନିଜ୍ ପିଠା । ଗୋଟିଏ ନିର୍ଦ୍ଦିଷ୍ଟ ବ୍ୟଞ୍ଜନ ଆଡ଼କୁ ତର୍ଜନୀ ନିର୍ଦ୍ଦେଶ କରି ଜାଓ କହିଲା - ମାମା, ଏଇଟା ହେଉଛି ବାମ୍ବୁସୁଟ୍‌ର ତରକାରୀ । ଆମ ଚାଇନିଜ୍ ମାନଙ୍କର ପ୍ରିୟ ଖାଦ୍ୟ । ଏଠାକାର ଚାଇନିଜ ଷ୍ଟୋର୍‌ରୁ ବହୁକଷ୍ଟରେ ସଂଗ୍ରହ କରିଛି, ଚାଖି ଦେଖିବେ ତ ! ସିମେଇ ପରି ଦିଶୁଥିବା ମିହିକଟା ବାଉଁଶକରଡ଼ିର ଝୋଳରୁ ସାମାନ୍ୟ ଚାଖିଥିଲି ଚାମଚରେ । ମନେହେଲା ବିସ୍ୱାଦ । ଆଜି ବି ଡ଼ିନର ଖାଇପାରିଲିନି ଭଲ କରି । ମତେ ଆଶ୍ଚର୍ଯ୍ୟାନ୍ୱିତ କରି ନିମନ୍ତ୍ରିତ ଅତିଥିଗଣ କିନ୍ତୁ ପ୍ଲେଟଭର୍ତ୍ତି ଭାତ, ତରକାରୀ ମହାଆନନ୍ଦରେ ଭୋଜନ କରି ଲାଗିଥିଲେ ।

ଘଣ୍ଟାକୁ ଚାହିଁ ଦେଖିଲି - ସମୟ ସାଢ଼େ ସାତଟା । ବାହାରେ ଅପର୍ଯ୍ୟାପ୍ତ ସୂର୍ଯ୍ୟାଲୋକ । ମାସ ଥିଲା ଅଗଷ୍ଟ । ମିସିଗାନ୍ ପ୍ରଦେଶରେ ସଂଜ ହେଉଥିଲା ରାତି ନଅଟାରେ ।

ଡ଼ିନର୍ ପରେ ଅଙ୍କାବଙ୍କା ଅଙ୍ଗୁରଲତା ମାଡ଼ିଥିବା କାଠଜାଫ୍ରିକୁ ପ୍ରଚ୍ଛଦପଟରେ ରଖି ବାରିପଟେ ଥିବା କାଠବେଦୀଟି ଉପରେ ବସି ଅତିଥି ଗଣ କୁନି କୁନି ଗ୍ଲାସ୍‌ରେ ୱାଇନ୍ ପିଇ ଲାଗିଲେ ଓ ଖୁସିଗପରେ ମସ୍‌ଗୁଲ୍ ହେଇପଡ଼ିଲେ । ମୁଁ ଓହ୍ଲାଇ ଗଲି ଜାଓର ବେସ୍‌ମେଣ୍ଟକୁ ଲାଗି ଢ଼ାଲୁ ହେଇ ତଳକୁ ଗଡ଼ିଯାଇଥିବା ଉପବନକୁ । ଅସ୍ତଗାମୀ ସୂର୍ଯ୍ୟଙ୍କର ଅକୃପଣ ସୁନାରଙ୍ଗା ଖରାରେ ଧୋଇହେଇ ବଗିଚାର ଘାସ ଲନ୍‌ଟି ଦିଶୁଥିଲା ଆହୁରି ନରମ, ଆହୁରି ଐଶ୍ୱରିକ । ଲନ୍ ମଝିରେ ଦୋଳିଟିଏ ବନ୍ଧା । ଆଥିନାକୁ କୋଳରେ ଧରି ଝୁଲା ଝୁଲୁ ଝୁଲୁ ଶି ଗପ କଲା ମୋ ସହିତ । ସୋହମ୍ ଟାଇଗର୍ ସହିତ ଫ୍ରିସ୍‌ବି ଖେଳି ଲାଗିଲା ଲନ୍‌ରେ ଦୌଡ଼ି ଦୌଡ଼ି ।

କିଛି ସମୟ ପରେ ଆଥିନାକୁ କ୍ଷୀର ପିଆଇବାପାଇଁ ଶି ଗଲା ଘରଭିତରକୁ । ଚତୁର୍ଦ୍ଦିଗରେ ବନସ୍ପତିର ଘ୍ରାଣ ନେଉ ନେଉ ମୁଁ ଅନ୍ୟମନସ୍କ ଭାବରେ ଘୂରି ଲାଗିଲି ବଗିଚା ଭିତରେ, ସଯତ୍ନେ ବର୍ଦ୍ଧିତ ଫର୍ଣ୍ଣ ଓ ଲିଲିଫୁଲର କିଆରୀ କଡ଼େ କଡ଼େ । ବଗିଚା କଡ଼ରେ ଥିବା କୃତ୍ରିମ ଜଳାଶୟର ନୀଳପାଣିକୁ ଆହୁରି ନୀଳକରି କ୍ରମଶଃ ଗୋଧୂଳିର ଛାଇ ନଇଁ ଆସୁଥିଲା ମିସିଗାନ୍ ପ୍ରଦେଶକୁ ।

ବୁଲୁ ବୁଲୁ ଦେଖିଲି, ଜାଓ ଘରର ପୂର୍ବପଟର ବଗିଚାରେ ଅଜସ୍ର ଫଳଗଛ - ପିଅର୍, ପିଚ୍ ଓ ଆପଲ୍‌ର ବର୍ଦ୍ଧିଷ୍ଣୁ ବୃଦାମାନ । ଆପଲ ଗଛଟିର ପ୍ରତ୍ୟେକ ଡ଼ାଳ ଝୁଲି

ପଡିଥିଲା ଟେନିସ୍‌ବଲ୍ ଆକାରର ସବୁଜ, ସୁପୁଷ୍ଟ ଫଳରେ । ଅଙ୍ଗୁରଲତାର ଗହଳ ପତ୍ର ଭେଦ କରି ଉଙ୍କିମାରୁଥିଲେ ରସ ଟଳମଳ ଫଳଗୁଚ୍ଛସବୁ । ଗଛରୁ ମୁଁ ଗୋଟିଏ ଆପ୍‌ଲ ଛିଣ୍ଡାଇ ଖାଉଥିବାର ଦେଖି ଓ୍ୱାଇନ୍ ପିଆ ବନ୍ଦ୍‌ରଖି ଜାଓ ଦୌଡ଼ିଆସିଲା ବଗିଚାକୁ । ତତ୍‌କ୍ଷଣାତ୍ ଘରୁ ଗୋଟିଏ ଥଳି ଆଣି ଥଳିଭର୍ତ୍ତି ଆପ୍‌ଲ ତୋଳି ଲାଗିଲା ଟୁକ୍‌ଟାକ୍ କରି । ଥଳିଟି ନେଇ ଆମ ଗାଡ଼ିରେ ରଖିଦେଇ ଆସି କହିଲା - ଏ ଫଳତକ ଆପଣଙ୍କ ପାଇଁ ।

ଏତେ ଆପ୍‌ଲ କଅଣ ହବ ? ବହୁତ ବେଶୀ ଦେଇଦେଲ ଯେ । ମୁଁ କହିଲି ।

- କଅଣ ଆଉ ହବ ? ଆପଣମାନେ ସମସ୍ତେ ମିଶି ଖାଇବେ । ଦେଖୁନାହାନ୍ତି । ଗଛ ଭାଙ୍ଗି ପଡୁଛି ଫଳର ଓଜନ୍‌ରେ । ଖାଇ ଖାଇ ଆମେ ସାରିପାରୁନୁ । ହସି ହସି ମନ୍ତବ୍ୟ କରି ଜାଓ ଫେରିଗଲା ତାଙ୍କ ଆସରକୁ ଏବଂ ଡ଼ୋଲାଭର୍ତ୍ତି ପ୍ରକୃତିର ସ୍ୱାଦ ନେଉ ନେଉ ମୁଁ ବୁଲିବାକୁ ଲାଗିଲି ବଗିଚା ସାରା ।

କିଛି ସମୟ ପରେ ଘରକୁ ଆସି ଦେଖେ, ଶି ତାର କନ୍ୟାସନ୍ତାନଟିକୁ ଦୋଳିରେ ଝୁଲାଇ ଶୁଆଇବାରେ ବ୍ୟସ୍ତ । ବାଥ୍‌ରୁମ୍‌ର ଅବସ୍ଥିତି ସଂପର୍କରେ ପଚାରିବାରୁ ଅତିଥିମାନଙ୍କ ପାଇଁ ଉଦ୍ଦିଷ୍ଟ ବାଥ୍‌ରୁମ୍‌ଟିକୁ ବାଟ ବତେଇଦେଲା ଶି ।

ତଳମହଲାକୁ ଆସି, ବାଥ୍‌ରୁମ୍ ଦରଜାର ଲକ୍ ମୋଡ଼ି, ଭିତରେ ପ୍ରବେଶ କଲାପରେ କିନ୍ତୁ ନ ଯଯୌ ନ ତସ୍ଥୌ ଅବସ୍ଥାରେ ଏକପ୍ରକାର ବାକ୍‌ଶକ୍ତି ରହିତ ହୋଇ, କେତୋଟି ମୁହୂର୍ତ୍ତପାଇଁ ମୁଁ ନିଃସ୍ପନ୍ଦଭାବରେ ଠିଆହେଇ ରହିଲି । ସାମ୍‌ନାରେ ଯେଉଁ ଦୃଶ୍ୟଟି ମୁଁ ଦେଖୁଥିଲି, ତାହା ଥିଲା ଏକାନ୍ତ ଭାବରେ ଅବିଶ୍ୱସନୀୟ । ମତେ ହତଚକିତ କରିଦେବା ପାଇଁ ଯଥେଷ୍ଟ ।

ମୋ ସାମ୍‌ନାରେ ଥିବା ଧଳାରଙ୍ଗର ଚକ୍‌ଚକ୍ କମୋଡ୍‌ଟି ଉପରେ ନାନ୍‌ସୀ ବସିରହିଥିଲେ । ପ୍ରାରମ୍ଭିକ ବିମୂଢ଼ତା କାଟି 'ସରି' କହି ମୁଁ ବାହାରି ଆସିଲା ବେଳକୁ ଥତମତ ହେଇ ଅସମଞ୍ଜସ ଭାବରେ ନାନ୍‌ସୀ କହି ଉଠିଲେ - ମୁଁ ଦୁଃଖିତ । ବାଥ୍‌ରୁମ୍‌ଟି ଭିତରୁ ବନ୍ଦ କରିବାକୁ ଭୁଲିଯାଇଥିଲି । କ୍ଷମା କରିବେ । କେମିତି ଯେ ଏଭଳି ଭୁଲ୍ ଟିଏ ହୋଇଗଲା !

ନାନ୍‌ସୀଙ୍କର ଲଜ୍ୟାରୁଣ ମୁଖମଣ୍ଡଳକୁ ଚାହିଁ ମୁଁ କହିଲି - ନାନ୍‌ସୀ, ତୁମେ ଆଦୌ ବିବ୍ରତ ବୋଧ କରନା । ଅପ୍ରସ୍ତୁତ ହେବାର କୌଣସି କାରଣ ଇ ନାହିଁ । ମୁଁ ଯେ ତୁମ ମା' ଭଳିଆ ।

ନାନ୍‌ସୀ ଏଥରକ କିଛିଟା ସ୍ୱାଭାବିକତା ଫେରିପାଇ କହିଲେ - ମୁଁ କୃତଜ୍ଞ । ଆପଣ ଭାରି ବଡ଼ କଥାଟିଏ ଆଜି କହିଲେ ମତେ ।

●●●

# ପ୍ରିୟତମ ଶତ୍ରୁ

ଆଶ୍ଚର୍ଯ୍ୟ କଥା - ଏତେ ପାଖାପାଖି ରହିଥିଲେ ସୁଦ୍ଧା ଶେଷପର୍ଯ୍ୟନ୍ତ ପ୍ରିୟତମ ଶତ୍ରୁଟି ସହିତ ମୋ'ର ଯାଇ ଦେଖା ହୋଇଥିଲା ସୁଦୂର ଯୁକ୍ତରାଷ୍ଟ୍ର ଆମେରିକାରେ । ମିସିଗାନ୍ ପ୍ରଦେଶର ରାଜଧାନୀ ଶୋଭାମୟୀ ଲାନ୍‌ସିଂ ନଗରୀର ଉପକଣ୍ଠରେ ।

ଏବଂ ଏଇ ସାକ୍ଷାତ୍‌ଟି ସମ୍ଭବ ହୋଇଥିଲା ମୁଖ୍ୟତଃ ଶ୍ରେୟା ଯୋଗୁ ।

ଶ୍ରେୟା ପାଇଁ ବବି ବେବୀସିଟର୍ ଖୋଜୁଥିଲା । ବବି ଓ ସ୍ମିତା ଉଭୟ ଥିଲେ ମିସିଗାନ୍ ୟୁନିଭର୍ସିଟିରେ କାର୍ଯ୍ୟରତ । ସକାଳ ଆଠଟାରୁ ଅପରାହ୍ଣ ପାଞ୍ଚଟା ପର୍ଯ୍ୟନ୍ତ । ଚାରିବର୍ଷର ସୋହମ୍ ଯାଉଥିଲା ବିଶ୍ୱବିଦ୍ୟାଳୟ ଦ୍ୱାରା ପରିଚାଳିତ ସ୍ମାର୍ଟାନ୍ ଡେ କେୟାର ସେଣ୍ଟର୍‌କୁ । କାର୍ଯ୍ୟରତ ଦମ୍ପତିମାନଙ୍କର ଶିଶୁସନ୍ତାନମାନଙ୍କର ଦେଖାଶୁଣା, ସେଠି ଉପଯୁକ୍ତ ଟ୍ରେନିଂ ପ୍ରାପ୍ତ ଶିକ୍ଷିକାମାନଙ୍କ ଦ୍ୱାରା କରାଯାଉଥିଲା । ଶ୍ରେୟା ଥିଲା ମାତ୍ର ତିନିମାସର । ଦିନବେଳେ ତାକୁ ରଖିବା ପାଇଁ କୌଣସି ଗୋଟିଏ ବେବୀସିଟ୍‌ର୍ ଦରକାର ହୋଇ ପଡିଥିଲା । ଆମେରିକାରେ ଅନେକ ଗୃହିଣୀ ଏଇଭଳି ଶିଶୁମାନଙ୍କର ଦେଖାଶୁଣା କରି ଅର୍ଥ ଉପାର୍ଜନ କରିଥାଆନ୍ତି ।

ବେବୀ ସିଟ୍‌ର୍ ଅନେକ ମିଳୁଥିଲେ, କିନ୍ତୁ ସେମାନେ ଠିକ୍ ବବିର ପସନ୍ଦ ହେଉନଥିଲେ । ଏତିକିବେଳେ ବବିର ଛାତ୍ରୀ କିନୁ ସମସ୍ୟାଟିର ଏକ ସହଜ ଓ ସରଳ ସମାଧାନ ଖୋଜି ବାହାର କରିନେଲା । କିନୁ ଥିଲା କଲେଜ ଅଫ୍ ଏଜୁକେସନ୍‌ର ଏମ୍.ଏ. ଶ୍ରେଣୀର ଛାତ୍ରୀ । ପାଠପଢା ସହିତ ପାର୍ଟଟାଇମ୍ ଚାକିରି ମଧ କରୁଥିଲା । ଟିଚିଙ୍ଗ୍ ଆସିଷ୍ଟାଣ୍ଟ ଭାବରେ । ରହୁଥିଲା ଭଗ୍ନୀ ଓ ଭଗ୍ନୀପତିଙ୍କ ପାଖରେ । ଭଗ୍ନୀପତି ଚାକିରିରୁ ଛୁଟି ନେଇ ପି.ଏଚ୍.ଡି କରୁଥିଲେ । ଭଉଣୀ କାମ କରୁଥିଲେ ବିଶ୍ୱବିଦ୍ୟାଳୟର କଂପ୍ୟୁଟର ବିଭାଗରେ ।

ସ୍ୱ ଅଧାପକଙ୍କର ଅହେତୁକ ବ୍ୟସ୍ତତା ଦେଖି କିନୁ ସ୍ୱତଃପ୍ରବୃତ୍ତ ହେଇ କହିଥିଲା - ମୋ ଅମ୍ମି ସାରାଦିନ ଘରେ ଏକୁଟିଆ । ଭଉଣୀ, ଭଉଣୀଜୋଇଁ ଓ ମୁଁ ଦିନତମାମ୍ ବାହାରେ ରହୁ । ଦିଦିର ତିନୋଟି ଯାକ ଛୁଆ ସ୍କୁଲ ଚାଲିଯାଆନ୍ତି ସକାଳୁ । ବିଦେଶ ଭୂଇଁରେ ଅମ୍ମିର ସାଙ୍ଗସାଥୀ ବି କେହି ନାହାନ୍ତି । ନିର୍ଜନ ଘରେ ସାରାଦିନ ଏକା ଏକା ରହିବାକୁ ପଡେ । ବେଳ କାଟିବା ତାଙ୍କ ପାଇଁ ମୁସ୍‌କିଲ୍ । କିଛି ସମୟ ପାଇଁ ଶ୍ରେୟାକୁ ପାଇଲେ ସିଏ ଖୁସି ହେବେ ନିଶ୍ଚୟ । ଏମ୍‌ତିରେ ଅମ୍ମି ଭାରି ଭଲପାଆନ୍ତି ସାନ ପିଲାମାନଙ୍କୁ । ମୁଁ ଆଜି ଯାଇ ତାଙ୍କ ସହିତ ଏ ସଂପର୍କରେ କଥାବାର୍ତ୍ତା କରିବି ।

ଏବଂ କିନୁ ତା ଅମ୍ମିଙ୍କ ସାଥିରେ କଥା କହି ଦୁଇଦିନ ଭିତରେ ସାରା ବନ୍ଦୋବସ୍ତ ପକ୍‌କା କରି ପକାଇଲା । ବବି, ସ୍ମିତା ସକାଳ ଆଠଟାରେ ୟୁନିଭର୍ସିଟି

ଯିବା ବାଟରେ ଶ୍ରେୟାକୁ ଅମ୍ମିଙ୍କ ପାଖରେ ଛାଡିଯାଉଥିଲେ । ସ୍ମିତା ଲଞ୍ଚବ୍ରେକ୍‌ରେ ଗାଡି ନେଇ ଶ୍ରେୟାକୁ ନେଇ ଆସୁଥିଲା ଘରକୁ । ଠିକ୍ ଗୋଟାଏ ବେଳେ । ତା'ପରଠାରୁ ଶ୍ରେୟା ରହୁଥିଲା ମୋ' ହିଫାଜତ୍‌ରେ । କିନୁର ବାରମ୍ବାର ବାରଣ କରିବା ସତ୍ତ୍ୱେ, ବେବୀସିଟରମାନଙ୍କ ପାଇଁ ପ୍ରଚଳିତ ଥିବା ଧାର୍ଯ୍ୟ ଦେୟ-ଘଣ୍ଟାକୁ ଦୁଇ ଡଲାର - ଅମ୍ମିଙ୍କୁ ମାସ ଶେଷରେ ଦେବାପାଇଁ ବବି ସ୍ଥିର କରି ନେଇଥିଲା ।

କେଇଦିନ ପରେ ଥରେ ବବିକୁ ଅନୁରୋଧ କରିଥିଲି ମତେ ଅମ୍ମିଙ୍କ ଘରକୁ ନେଇଯିବା ପାଇଁ । ମୋ'ର ପ୍ରିୟତମା ପୌତ୍ରୀଟିର ଦେଖାଶୁଣା କରୁଥିବା ମାତୃସମା ମହିଳାଜଣଙ୍କୁ ଭେଟିବାକୁ ବେଶ୍ ଆଗ୍ରହ ଓ ଉତ୍ସୁକତା ଥିଲା ମନରେ ।

ଠିକ୍ ଅଛି, କାଲି ସକାଳୁ ସକାଳୁ ତମେ ତିଆର୍ ହୋଇଯିବ । ମୁଁ ୟୁନିଭର୍ସିଟି ଗଲା ବାଟରେ ତମକୁ ଛାଡ଼ିଦେଇଯିବି ଅମ୍ମିଙ୍କ ଘରେ । ସୁବିଧା ଦେଖି, ଦୁଇଘଣ୍ଟା ପରେ ଯାଇ ନେଇ ଆସିବି ମଧ, ବବି ଉତ୍ତର ଦେଲା ।

ବବି ସହିତ ଅମ୍ମିଙ୍କ ଘରକୁ ଯାଇଥିଲି ତା ପରଦିନ । ୟୁନିଭର୍ସିଟି ହତା ଭିତରେ ଗୋଲାପି ମାପ୍‌ଲ ଗଛର ଛାୟାରେ, ଗବେଷଣାରତ ଛାତ୍ରମାନଙ୍କ ପାଇଁ ଉଦ୍ଦିଷ୍ଟ ଧାଡି ଧାଡି ସାନସାନ କାଠଘର । ତନ୍ମଧ୍ୟରୁ ଗୋଟିଏ ଘର ସାମ୍ନାରେ ନେଇ ଗାଡି ବନ୍ଦ କଲା ବବି । ତା'ଠାରୁ ଶୁଣିଲି ଘରଟି କିନୁର ଭଗ୍ନୀପତିଙ୍କୁ ୟୁନିଭର୍ସିଟି ତରଫରୁ ମିଳିଥିଲା ।

କଲିଂବେଲ୍ ଶବ୍ଦ ଶୁଣି ଯେଉଁ ଭଦ୍ରମହିଳା ହସ ହସ ମୁହଁରେ ଦରଜା ଖୋଲିଲେ ସିଏ ଥିଲେ ବେଶ୍ ସ୍ୱାସ୍ଥ୍ୟବତୀ ଓ ବୟସ୍କା । ଦୀର୍ଘାଙ୍ଗୀ ଓ ରୂପସୀ ମଧ । ଲହୁଣୀ ବର୍ଣ୍ଣର ତ୍ୱକ୍, ଲମ୍ବ ମୁହଁ ଓ ଉନ୍ନତ ନାସିକା । ମଥାର ହାଲୁକା ଶୁଭ୍ରକେଶଦାମ ଏକାଠି ହେଇ ବେକ ପାଖରେ ସାନଗଣ୍ଠିଟିରେ ବନ୍ଧା । ପିନ୍ଧିଥିଲେ ଫିକା ହଳଦିଆର ରଂଗର ଢ଼ୋଲା ସଲ୍‌ୱାର୍, କମିଜ୍ । ଓଢ଼ଣୀଟି ସଯତ୍ନେ ଓ ସସଂଭ୍ରମେ ମୁଣ୍ଡ ଉପର ଦେଇ ଟଣା ।

ଶ୍ରେୟାକୁ ତାଙ୍କ କୋଳକୁ ବଢ଼ାଇ ଦେଉ ଦେଉ ମୋ'ର ପରିଚୟ ପ୍ରଦାନ କରି ବବି କହିଲା - ଇଏ ମୋ ମା' । ଆପଣଙ୍କ ସାଥିରେ ଦେଖା କରିବାକୁ ଆସିଛନ୍ତି ।

ଭଦ୍ର ମହିଳା ମଧୁର ସ୍ୱରରେ ତଥା ଶୁଦ୍ଧ ହିନ୍ଦୀରେ କହିଲେ - ମୁଁ ଜାଣେ, କାଲି କିନୁ ମୋତେ କହୁଥିଲା ଆପଣ କୁଆଡ଼େ କଥା ପ୍ରସଙ୍ଗରେ ତାକୁ କହୁଥିଲେ ଆପଣଙ୍କ ମା' ଆଜି ଆମ ଘରକୁ ଆସିବେ ବୋଲି ।

ବବି ମତେ ଛାଡ଼ିଦେଇ ଚାଲିଗଲା ବିଶ୍ୱବିଦ୍ୟାଳୟ । ଭଦ୍ର ମହିଳାଙ୍କ ସାଥିରେ ତାଙ୍କ ଘର ଭିତରେ ପ୍ରବେଶ କରୁ କରୁ ମୁଁ ତାଙ୍କୁ ପଚାରିଲି - ଆପଣଙ୍କୁ ମୁଁ ଅମ୍ମି ବୋଲି ଡାକି ପାରେକି ?

ନିଶ୍ଚୟ ଡାକି ପାରନ୍ତି । ଆଜିଠୁ ଧରିନେବି ମୋର ଚାରୋଟି ନୁହେଁ, ପାଞ୍ଚଟି ଝିଅ । ଶ୍ରେୟାକୁ କୋଳରେ ଧରି ସୋଫାରେ ବସୁ ବସୁ ଅମ୍ମି ଜବାବ୍ ଦେଲେ । କିଛି ସମୟ ଅଟକି ପଚାରିଲେ - ଆପଣ କଫି ପିଇବେ ?

ମୁଁ କହିଲି - ବେଶ୍ ଥଣ୍ଡା ଥଣ୍ଡା ଲାଗୁଛି । ଗରମ କଫି କପେ ପାଇଲେ ମନ୍ଦ ହୁଅନ୍ତାନି । ମୋ କୋଳରେ ଶ୍ରେୟାକୁ ଶୁଆଇ ଦେଇ ଅମ୍ମି ଗଲେ କଫି ବନେଇବାକୁ । ଚାହିଁ ଦେଖିଲି, ଘରଟି ସାନ । କିନ୍ତୁ ସର୍ବପ୍ରକାର ଆଧୁନିକ ଘରକରଣା ସରଂଜାମରେ ଭରପୂର । ଟି.ଭି., ମାଇକ୍ରୋଓଭେନ୍, କୁକିଙ୍ଗ୍‌ରେଞ୍ଜ, ଫ୍ରିଜ୍, ଓ୍ୱାସିଙ୍ଗ୍ ମେସିନ୍, ଡିସ୍ ଓ୍ୱାସର ଇତ୍ୟାଦିରେ ସୁଚାରୁରୂପେ ସୁସଜ୍ଜିତ । ପ୍ରବେଶ ପଥରେ ଇ ଡ୍ରଇଂକମ୍ ଡାଇନିଂରୁମ୍, ଗୋଟିଏ ପାଖରେ କିଚେନ୍ । ଅପରପାଖରେ ସାନ ସାନ ବେଡ୍ ରୁମ୍ ଦୁଇଟି । ଲକ୍ଷ୍ୟ କଲି, ଗୋଟିଏ ବେଡ୍‌ରୁମ୍‌ରେ, ରେଲ୍‌ଓ୍ୱେ ଡବାର ଉପର ବାର୍ଥ ପରି ଦୁଇଟି ବିଛଣାଯୁକ୍ତ ବାଡ଼ଘେରା ଭାଡି । ଏବଂ ସେଠାକୁ ଚଢ଼ିକି ଯିବାପାଇଁ ସିଡି ମଧ୍ୟ । ବୁଝି ପାରିଲି, ଘରର ଛଅଜଣ ସଦସ୍ୟଙ୍କ ପାଇଁ ଛଅଟି ଖଟ ପକାଇବାପାଇଁ ବେଡ୍‌ରୁମ୍ ଦୁଇଟିରେ ଜାଗା ନିଅଣ୍ଟ । କନିଷ୍ଠତମ ସଦସ୍ୟ ଦୁଇଜଣଙ୍କ ଲାଗି ତେଣୁ ଏଇ ଭଳି ବ୍ୟବସ୍ଥା ।

ମାଇକ୍ରୋଓ୍ୱେଭ୍‌ରେ କଫି ପାଇଁ ପାଣି ଗରମ କରୁ କରୁ ଅମ୍ମି ପଚାରିଲେ ଆପଣଙ୍କ ସ୍ୱାମୀଙ୍କ ଦେହ କେମିତି ଅଛି ଏବେ ? ଶୁଣୁଥିଲି ବେଶ୍ ସାଂଘାତିକ ଭାବରେ ଅସୁସ୍ଥ ହୋଇ ସ୍ଲାରୋ ହସ୍‌ପିଟାଲ୍‌ରେ ଚିକିତ୍ସିତ ହେଉଥିଲେ ।

ମୁଁ କହିଲି - ଏବେ ହସ୍‌ପିଟାଲ୍‌ରୁ ଫେରିଆସିଲେଣି ଅବଶ୍ୟ । ତେବେ ବି ପ୍ରତିଦିନ ବିଭିନ୍ନ ପରୀକ୍ଷା ନିରୀକ୍ଷା ପାଇଁ ଡାକ୍ତରଙ୍କ ପାଖକୁ ଯିବାକୁ ପଡୁଛି । ପୂରାପୂରି ଠିକ୍ ହୋଇ ନାହାନ୍ତି । ତାଙ୍କରି ପରିଚର୍ଯ୍ୟାରେ ଇ ସବୁତକ ସମୟ ଯାଉଛି ମୋ'ର । ସେଇଥିପାଇଁ ତ ଆପଣଙ୍କୁ ହଇରାଣ କରିବା କଥା । ନହେଲେ ଆରାମ୍‌ରେ ସାରାଦିନ ଶ୍ରେୟାର ଦେଖାଶୁଣା କରି ପାରିଥାଆନ୍ତି । ଖୁସି ବି ହୋଇଥାଆନ୍ତି ତାହା କରି ।

-ଆହା ! ଶ୍ରେୟାକୁ ନେଇ ଖୁସିହେବାର ସୁଯୋଗ କିଛିଟା ଅନ୍ତତଃ ମତେ ଦିଅନ୍ତୁ ନା !

ଟେବୁଲ୍ ଉପରେ ଧୂମାୟିତ କଫି କପ୍ ରଖୁରଖୁ ମୃଦୁହସି ମଉଜିଆ ଢଙ୍ଗରେ ଅମ୍ମି ମତବ୍ୟକ୍ତ କଲେ । ଦୁଇଟି ପ୍ଲେଟ୍‌ରେ ମୋ' ପାଇଁ କିଛି କେକ୍ ଓ କ୍ରାକର ପରିବେଷଣ କରି କହିଲେ - ମୋ'ର ଚାରିଝିଅ, ପୁମା, ଗୁଲ, ଇଟା ଓ କିନୁ । କେବଳ କିନୁ ବ୍ୟତୀତ, ଅନ୍ୟ ତିନିଜଣ ଝିଅ ମୋ'ର ବିବାହିତା ଏବଂ ମୋର ପୌତ୍ର ପୌତ୍ରୀମାନଙ୍କର ସଂଖ୍ୟା ସର୍ବମୋଟ ଛଅ । ଏବଂ ଏଇ ଛଅଜଣ ନାତିନାତୁଣୀ ସଭିଏଁ ମୋ'ରି ହାତରେ ମଣିଷ । ଏବେ ଅବଶ୍ୟ ସମସ୍ତେ ଅପେକ୍ଷାକୃତ ବଡ ହେଇଗଲେଣି । ତେବେ ଶ୍ରେୟା ଭିତର ଦେଇ ମୁଁ ମୋ'ର ପୌତ୍ରପୌତ୍ରୀମାନଙ୍କର ଶୈଶବକୁ ପୁଣି ଥରେ ଫେରି ପାଇଛି । ମୋ'ର ଦିନ ସରୁନଥିଲା ଏଠି । ମୁଣ୍ଡ ଖରାପ ହେବାର ଅବସ୍ଥା, ଶ୍ରେୟା ମତେ ବଞ୍ଚେଇଦେଲା ।

ଅମ୍ମିଙ୍କ କଥାକୁ ଅଧାରେ ବ୍ୟାହତ କରି ଟେଲିଫୋନ୍ ଘଣ୍ଟି ବାଜି ଉଠିଲା ଏତିକିବେଳେ । ଅମ୍ମି ଟେଲିଫୋନ୍ ଉଠେଇଲେ । ବାର୍ତ୍ତାଳାପରୁ ବୁଝିଲି ୟୁନିଭର୍ସିଟିରୁ କନିଷ୍ଠାକନ୍ୟା କିନୁ କଥା କହୁଛି ।

ଫୋନ୍ ରଖିସାରି ଅମ୍ମି କହିଲେ - ମୋ' ଝିଅର ଫୋନ୍ ଥିଲା । କହୁଛି, ମୋ ଅଧ୍ୟାପକଙ୍କର ମା' । ଯତ୍ନରେ ଯେମିତି ତୃଟି ନହୁଏ । ଆପଣ ଆସିଲାବେଳକୁ ସଭିଏଁ କାମକୁ ବାହାରି ଯାଇଥିଲେ ତ ! କିନୁର ଭାରି ମନଦୁଃଖ ଯେ ଆପଣଙ୍କ ସହିତ ତା'ର ଆଜି ଭେଟ ହୋଇ ପାରିଲାନି ।

ମୁଁ କହିଲି - ଆପଣ ବୟସରେ ମୋ' ମାତୃସମା । ମତେ ନିଜର କନ୍ୟା ବୋଲି ଭାବିବେ । ଏ ଘରେ ମୁଁ ଅତିଥି ନୁହେଁ, ଅତିଥି ପରି ପରିଚର୍ଯ୍ୟା କଲେ ମୁଁ ଦୁଃଖ ପାଇବି ନିଶ୍ଚୟ ।

ଅମ୍ମି ଓ ମୁଁ ନୀରବରେ କଫି ପିଇ ଲାଗିଲୁ । ହଠାତ୍ ଦେଖିଲି, ମୋ' କୋଳରେ ଶୋଇଥିବା ଶ୍ରେୟାର ଆଖି ନିଦରେ ମୁଦି ହୋଇ ଆସୁଛି । ଅମ୍ମି ସିଏ ବସିଥିବା ଡିଭାନ୍‌ର ଗୋଟିଏ କଡକୁ ଘୁଞ୍ଚିଯାଇ ମତେ କହିଲେ - ଆପଣ ଏଇଠି ମୋ ପାଖରେ ଶୁଆଇ ଦିଅନ୍ତୁ ଶ୍ରେୟାକୁ । ତା'ର ଶୋଇବାସମୟ ହୋଇଗଲାଣି । ଏବେ କିଛି ସମୟ ସିଏ ନିଘୋଡ଼ ନିଦରେ ଶୋଇପଡ଼ିବ । ଏଇଟା ତା'ର ପ୍ରାତ୍ୟହିକ ରୁଟିନ୍ ।

ମୁଁ କହିଲି - ବବି, ସ୍ମିତା ନିଜେ ଉଠନ୍ତି ଖୁବ୍ ସକାଳୁ । ଶ୍ରେୟାକୁ ଏଠିକି ଆଣିବା ପାଇଁ ତାକୁ ବି ତିଆରି କରିବାକୁ ପଡ଼େ । ତେଣୁ ତାକୁ ମଧ୍ୟ ଉଠେଇ ଦଅନ୍ତି ଜଲ୍‌ଦି । ସ୍ୱାଭାବିକ ଯେ ଶ୍ରେୟା ତା'ର ଅପୂର୍ଣ୍ଣ ରହି ଯାଇଥିବା ନିଦତକ ଏଇଠିକି ଆସି ଆପଣଙ୍କ ପାଖରେ ପୂର୍ଣ୍ଣ କରିନିଏ । ଶ୍ରେୟାକୁ ମୁଁ ସନ୍ତର୍ପଣରେ ଶୁଆଇଦେଲି ଡିଭାନ୍‌ରେ । ଅମ୍ମି ଘରଭିତରୁ ସଫେଦ୍ ରଙ୍ଗର ନରମ କମ୍ବଳଟିଏ ଆଣି ଯତ୍ନର ସହିତ ଢାଙ୍କିଦେଲେ ତାର କୁନି ଶରୀରଟିକୁ ।

ଶ୍ରେୟା ଶୋଇଗଲା ପରେ, ଆରାମରେ ଡିଭାନ୍ ଉପରେ ଗୋଡଟେକି ମୋ' ସହିତ ଟୁକ୍‌ଟାକ୍ ଗପ କରି ଲାଗିଲେ ଅମ୍ମି । ବାର୍ତ୍ତାଳାପରୁ ଜାଣିଲି, ଜ୍ୟେଷ୍ଠା କନ୍ୟା ଓ ଜାମାତା ବିଗତ କେଇବର୍ଷ ହେଲା ଆମେରିକାରେ । କନିଷ୍ଠା କନ୍ୟା କିନ୍ତୁ ଦୁଇବର୍ଷ ତଳେ ଆସିଛି ପାଠ ପଢ଼ିବାକୁ । ତାହାରି ସାଥିରେ ଇ ଅମ୍ମିଙ୍କର ବିଦେଶ ଆଗମନ । ବାକୀ ଦୁଇ ବିବାହିତା କନ୍ୟା ତଥା ପତି ଏବେ ନିଜ ଦେଶରେ । ଅନେକ ଥର ଭାବିଲେଣି ଦେଶକୁ ଫେରିଯିବେ ବୋଲି । କନ୍ୟା, ଜାମାତା କିନ୍ତୁ ଏବେ ଛାଡିବାକୁ ନାମଙ୍ଗ । ସଭିଏଁ ଏଠି ନିଦାରୁଣ ଭାବରେ କାର୍ଯ୍ୟବ୍ୟସ୍ତ । ଅମ୍ମି ଥିବାରୁ ଅନ୍ତତଃ ଘରର ଜଂଜାଳ ସମାଳି ନେଉଛନ୍ତି । ସଂସାର ଚାଲିଛି ସୁରୁଖୁରୁରେ ।

- ଆପଣଙ୍କର ଏଇ ଦି'ଝିଅ କଅଣ ଏଇଠି ରହିଯିବେ ? ପଚାରିଲି । ଅମ୍ମି କହିଲେ - ହଁ, ସେମାନେ ବୋଧହୁଏ ରହିଯିବେ ଏଠି । ଆପଣ ବୋଧହୁଏ ଜାଣନ୍ତିନି । ଆମ ଦେଶରେ ଚାକିରିର ଅବସ୍ଥା ସେତେ ଭଲ ନୁହେଁ । ଏଠା ତୁଳନାରେ ରୋଜଗାର ବି କମ୍ । ଦେଖନ୍ତୁ ତ ! ଏଠି ମୋ ଝିଅ ଜୋଇଁଙ୍କର ଦୁଇଟି ଗାଡି । ବଡଝିଅର ପୁତ୍ରକନ୍ୟାମାନେ ସ୍କୁଲ୍ ଯାଆନ୍ତି । ପଇସାଟିଏ ଖର୍ଚ୍ଚ କରିବାକୁ ପଡେନି ! ବିଦ୍ୟାଳୟର ଶିକ୍ଷା ଏଠି ମାଗଣା, ଖାଦ୍ୟପଦାର୍ଥ ସୁକ୍ଷମ ଓ ଶସ୍ତା । ଏତେ ସୁବିଧା ଛାଡି

ଫେରିଯିବା ପାଇଁ କାହିଁକି ବା ମଙ୍ଗିବେ ପିଲାମାନେ ? ତେବେ କିନୁ ବାହାହେଇନି ତ ! ତା' ଚିନ୍ତା ଏବେ ମୁଣ୍ଡକୁ ଘାରୁଛି । ଦେଶକୁ ଫେରିଗଲେ ତା'ପାଇଁ ଭଲ ବରପାତ୍ରଟିଏ ଦେଖିବାକୁ ହେବ ।

-ଏଇ ବିଦେଶମାଟିରେ ବିଶେଷତଃ ନୂଆ ପରିବେଶରେ, ଆପଣଙ୍କର କିଛି ଅସୁବିଧା ହେଉନି ?

- ନା, ନା, ଅସୁବିଧା କାହିଁକି ହବ ? କାମ ଚଳିଲା ଭଳିଆ ସାମାନ୍ୟ ଇଂରାଜୀ ଜାଣେ । ଅଧା ସମୟ ଧର୍ମକର୍ମରେ କଟାଏ । ଦିନକୁ ପାଞ୍ଚଥର ନମାଜ ପଢେ ମୁଁ । ସକାଳ ପାଞ୍ଚଟାରେ, ଦିନ ଦୁଇଟାରେ, ଅପରାହ୍ନ ଚାରିଟାରେ, ସନ୍ଧ୍ୟାରେ ଏବଂ ରାତିରେ । ଏଇ ପାଖରେ ମସ୍‌ଜିଦ୍‌ଟିଏ ଅଛି । ସେଠିକି ବେଳେ ବେଳେ ଯାଏ । ନାତି ନାତୁଣୀ ତିନୋଟିଙ୍କର ଅଳିଅର୍ଦ୍ଦଳି ସବୁ ମୋ' ପାଖରେ । ସ୍କୁଲରୁ ଫେରିଆସି ଆଗ କହିବେ 'ଶୀଘ୍ର ଖାଇବାକୁ ଦେ' । ସକାଳ ଓଳି ବିଶେଷ କିଛି କାମନଥାଏ । ଅପରାହ୍ନଟି ପିଲାମାନଙ୍କ ପାଇଁ ରନ୍ଧାବଢା କରିବାରେ କଟିଯାଏ ।

ମୁଁ କହିଲି - ସମୟର ବେଶ୍ ସଦୁପଯୋଗ କରୁଛନ୍ତି ଆପଣ ।

ଅମ୍ମି କହିଲେ - ଏଇ ତ ଜୀବନ । ତା ପରେ ମୋତେ ପଚାରିଲେ - ଯା ଭିତରେ ଆପଣ ଆଉ କୁଆଡ଼େ ବୁଲାବୁଲି କରିବାକୁ ଗଲେଣି ?

ମୁଁ କହିଲି - ନା, ବିନୟଙ୍କ ଅସୁସ୍ଥତା ହେତୁ ବିଶେଷ କୁଆଡ଼େ ଯାଇପାରିନୁ । ବେଶ୍ ପ୍ରସନ୍ନ ସ୍ୱରରେ ଅମ୍ମି କହିଲେ - ମୁଁ କିନ୍ତୁ ସାରା ଆମେରିକା ବୁଲିସାରିଲିଣି । ଛୁଟି ଦିନ ମାନଙ୍କରେ ଝିଅ ଜୋଇଁ ଗାଡ଼ି ଚଳେଇ ବୁଲେଇ ଆଣିଛନ୍ତି । ନାଏଗ୍ରା ଜଳପ୍ରପାତର ଦୃଶ୍ୟ ସତରେ ସ୍ୱର୍ଗୀୟ । ମୟାମିବିଚ୍‌ର ସୌନ୍ଦର୍ଯ୍ୟ ବି ଅତୁଳନୀୟ । ମଝିରେ ଥରେ ୟୁନିଭର୍ସାଲ୍ ଷ୍ଟୁଡିଓ ଦେଖିବାକୁ ଯାଇଥିଲୁ । ଡିସ୍‌ନିଲାଣ୍ଡ ବି ବୁଲିଆସିଛି । ଗାଡି ଚଳେଇ ଗଲାବେଳେ, ଫ୍ଲୋରିଡାର କମଳାଲେମ୍ବୁର ବଗିଚା ଆଉ ଜର୍ଜିଆର ପେକାନ୍ ଓ ପିଚ୍‌ଗଛର ସାରିବଦ୍ଧ ସମାରୋହ ଭାରି ମନକୁ ଛୁଇଁଛି ମୋର ।

ମୁଁ ହସିଲି । କହିଲ - ଆପଣଙ୍କ ଭାଷାରେ ଯେ କବିତ୍ୱର ଛଟା ।

ଟେବୁଲ୍ ଉପରୁ ଖାଲି କପ୍‌ପ୍ଲେଟ୍ ଉଠାଉ ଉଠାଉ ଅମ୍ମି କହିଲେ - ଆପଣ ଆଜି ଏଠି ଲଞ୍ଚ୍ କରି ଯାଆନ୍ତୁ । ସାଙ୍ଗେ ସାଙ୍ଗେ ବନେଇଦେବି । ନହେଲେ କିନୁ ରାଗିବ ।

ମୁଁ କହିଲି - ଆପଣ ସେଥିପାଇଁ ଆଦୌ ବ୍ୟସ୍ତ ହୁଅନ୍ତୁନି । ଆପଣ ଜାଣନ୍ତିତ । ଘରେ ମୋର ଅସୁସ୍ଥ ସ୍ୱାମୀ ଏକୁଟିଆ । ମତେ ଶୀଘ୍ର ଫେରିବାକୁ ଇ ପଡିବ । ମୁଁ ବରଂ ଆଉ ଦିନେ କେବେ ଆସିବି ଭାରତବର୍ଷ ଫେରିଯିବା ପୂର୍ବରୁ । ଏମିତିରେ ତ ଆପଣଙ୍କ ପାଖରେ ମୁଁ ଆଜୀବନ ଋଣୀ ହୋଇ ରହିଗଲି । ଶ୍ରେୟା ଆମ ପାଇଁ ଭାରି ଦାମୀ ଶିଶୁଟିଏ । ବହୁବର୍ଷ ପରେ କନ୍ୟା ସନ୍ତାନଟିଏ ଘରକୁ ଆସିଛି । ଆମର ଅନେକ ପ୍ରାର୍ଥନାର ଫଳ ସ୍ୱରୂପ । ମୋ'ର ଝିଅ ନାହିଁ ତ ! ଅମ୍ମି ମୃଦୁ ହସି ଉତ୍ତର ଦେଲେ - ବାଃ ଶ୍ରେୟା କଅଣ ଖାଲି ଆପଣଙ୍କର ? ମୋ'ର କଅଣ ସିଏ କେହି ନୁହେଁ ? ମୋ'ର ବି କିଛିଟା ହକ୍ ଅଛି ନିଶ୍ଚୟ ତା' ଉପରେ ।

ମୁଁ କହିଲି ଜରୁର୍ ।

ଆମର ବାର୍ତ୍ତାଳାପ ଭିତରେ ନିଦରୁ ଉଠି ତା' ନୀଳଡୋଳାରେ ଆମ ଦୁଇଜଣଙ୍କୁ ଚାହିଁ ବେଶ୍ ଚମତ୍କାର ହସଟିଏ ହସିଲା ଶ୍ରେୟା । ଅମ୍ମି ତରତର ହୋଇ ଉଠି ଫ୍ଲାସ୍କରୁ ଗରମପାଣି ଢାଳି ତା' ପାଇଁ କ୍ଷୀର ତିଆରି କରିବାରେ ଲାଗିଲେ । ବୋତଲରେ କ୍ଷୀର ଭର୍ତ୍ତି କରୁ କରୁ କହିଲେ - ଶ୍ରେୟାକୁ ଭୋକ ଲାଗିଲାଣି । ସବୁଦିନ ଏତିକିବେଳକୁ କ୍ଷୀର ପିଏ ସିଏ । ସେଇଥିପାଇଁ ମୁଁ ପାଣି ଗରମ କରି ଆଗରୁ ରଖି ଦେଇଥାଏ ଫ୍ଲାସ୍କରେ ।

କ୍ଷୀର ସଜିଲ୍ କରି ସାରିଲା ପରେ, ଶ୍ରେୟାର ଓଦା ଡାଇପରଟିକୁ କାଢି, ତା' ଦେହରେ ଟାଲ୍‌କମ୍ ପାଉଡର ଛିଞ୍ଚିଦେଲେ ଅମ୍ମି । ତା'ପରେ ଶୁଖିଲା ଡାଇପରଟିଏ ପିନ୍ଧାଇ ଦେଇ ଓ ତାକୁ କୋଳକୁ ନେଇ ନିବିଷ୍ଟ ଚିତ୍ତରେ ତାକୁ କ୍ଷୀର ପିଆଇବାରେ ଲାଗିଗଲେ କିଛି ସମୟ ପାଇଁ । କ୍ଷୀର ପିଆଇ ସାରି ଓ ନାପ୍‌କିନ୍‌ରେ ତା ମୁହଁପୋଛି ତା' ହାତରେ ଅମ୍ମି ଧରେଇଦେଲେ କୁନି ଟେଡି ବିୟରଟିଏ । ଶ୍ରେୟା କଣ୍ଢେଇଟିକୁ ଜାବୁଡି ଧରି ଓ ସ୍ୱରତନ୍ତ୍ରୀରୁ ଅସ୍ପଷ୍ଟ ଶବ୍ଦମାନ ନିର୍ଗତ କରି ଉତ୍‌ଫୁଲ୍ଲ ମନରେ ଖେଳିବାରେ ଲାଗିଲା ।

ମୁଁ କହିଲି - ଆପଣଙ୍କର ଜଣେ ଜୋଇଁତ ଏଠି ଗବେଷଣା ରତ । ବାକୀ ଦୁଇ ଜୋଇଁ କଅଣ କରନ୍ତି ନିଜ ଦେଶରେ ?

ଅମ୍ମି କହିଲେ - ଜଣେ ଫିଜିଓଥେରାପିଷ୍ଟ । ଅନ୍ୟ ଜଣକ ଆର୍ମିରେ । ଆପଣଙ୍କର କାର୍‌ଗିଲ୍‌ରେ ଏବେ ଗଣ୍ଡଗୋଳ ଲାଗିଛିତ । ତାଙ୍କର ଡ଼ିଉଟି ଏବେ ସେଇଠି ।

ଅମ୍ମିଙ୍କ କଥାକୁ ମଝିରେ ବ୍ୟାହତ କରି କଲିଂ ବେଲ୍ ବାଜିଲା । ବବି ଆସି ପହଞ୍ଚିଥିଲା ମତେ ନେଇ ଘରେ ଛାଡିଦେବାକୁ । ତାକୁ ଗାଡ଼ିରେ ଅପେକ୍ଷା କରିବା ପାଇଁ କହି ମୁଁ ଆସିଲି ଅମ୍ମିଙ୍କଠାରୁ ବିଦାୟ ନେବା ପାଇଁ । ଶ୍ରେୟାକୁ କୋଳରେ ଧରି ଅମ୍ମି ବାହାରକୁ ଆସିଲେ ମତେ ବାଟେଇ ଦେବା ଲାଗି ।

ନମସ୍କାର କରି ମୁଁ ଅମ୍ମିଙ୍କୁ କହିଲି - ଏତେ ସମୟ ରହିଲି ଆପଣଙ୍କ ପାଖରେ । ଆପଣଙ୍କ ନାଁଟି କିନ୍ତୁ ଜାଣିପାରିଲିନି ।

ଅମ୍ମି ଶ୍ରେୟାର ଗାଲଚିପି, ଦୁଷ୍ଟାମିର ହସ ହସି କହିଲେ - ଆପଣଙ୍କ ନାତୁଣୀର ନାଁ ଯାହା, ମୋ' ନାଁ ବି ସେଇଆ ।

ଆଶ୍ଚର୍ଯ୍ୟ ସ୍ୱରରେ ମୁଁ ପଚାରିଲି - ସତରେ ? ଆପଣଙ୍କ ନାଁ ବି ଶ୍ରେୟା ?

ଅମ୍ମି କହିଲେ - ପ୍ରାୟ ସେଇ ରକମ୍ । ଏକା ନାଁ କହିଲେ ଚଳେ । ମୋ' ନାଁ ସୁରେୟା । ଏଥରକ ଅମ୍ମି ଓ ମୁଁ ଦୁହେଁ ହସିଲୁ । ପରସ୍ପରର କଣ୍ଠଲଗ୍ନ ହୋଇ ।

ଅମ୍ମିଙ୍କୁ ଧନ୍ୟବାଦ ଦେଇ ମୁଁ ଆସି ଗାଡିରେ ବସିଲି । ବବି ଗାଡି ଷ୍ଟାର୍ଟ କଲା । କାଚ ଝରକା ବାଟେ ଚାହିଁ ଦେଖିଲି - ଶ୍ରେୟାର ନରମ ତୁଲ୍‌ତୁଲ୍ କୁନି ହାତଟିକୁ ନିଜ ହାତରେ ଉଠାଇ ନେଇ ଆମକୁ ବାୟ୍ ବାୟ୍ କରୁଥିଲେ ଅମ୍ମି । ହଠାତ୍ ମନେହେଲା - ତାଙ୍କରି ପରିବାରର ଜଣେ ସଦସ୍ୟ ବର୍ତ୍ତମାନ କାର୍‌ଗିଲ୍ ସୀମାନ୍ତରେ ଠିଆ ହୋଇ ମୋ ଦେଶର ଜବାନ୍‌ମାନଙ୍କୁ ନିଷ୍ଠୁରତାର ସହିତ ଗୁଳିବିଦ୍ଧ କରିବାରେ ବ୍ୟସ୍ତ । ଅଥଚ ସେଇ ଶତ୍ରୁପକ୍ଷର ଅନ୍ୟ ଗୋଟିଏ ମଣିଷ ହାତରେ ମୋ ଜୀବନର ସର୍ବଶ୍ରେଷ୍ଠ ସମ୍ପଦକୁ କିଛି ସମୟ ପାଇଁ ସମର୍ପି ଦେଇ ମୁଁ ଫେରି ଆସୁଛି ଘରକୁ । ନିର୍ଭୟରେ, ନିଶ୍ଚିନ୍ତ ହୋଇ ।

●●●

# ଜଣେ ପାଲାକାରଙ୍କ ସ୍ମୃତିରେ

ବୁଢ଼ୀ ମା' ମାନସିକ କରିଥିଲେ ।

ପୁଅ ଭଲରେ ଭଲରେ ବିଲାତରୁ ଫେରିଆସିଲେ ସତ୍ୟନାରାୟଣ ପୂଜା ହେବ । ସାଥିରେ ଠିଆପାଲା । ବାପା ଭଲରେ ଭଲରେ ଫେରିଆସିଥିଲେ ଲଣ୍ଡନ୍‌ରୁ । କିନ୍ତୁ ଛ' ମାସ ଗଡ଼ିଯାଇଥିଲେ ସୁଦ୍ଧା ବୁଢ଼ୀ ମା'ଙ୍କର ମାନସିକ ପୂର୍ତ୍ତି ହୋଇପାରିନଥିଲା । କାରଣ ଗାଁକୁ ଯିବାପାଇଁ, ଯା ଭିତରେ ବାପାଙ୍କୁ ଦୀର୍ଘ ଛୁଟି ମିଳିନଥିଲା ।

ଛୁଟି ମିଳିଲା ଗ୍ରୀଷ୍ମଦିନେ । କଲେଜ ବନ୍ଦ ହେବାରୁ ସାରା ପରିବାର ବାହାରିଲୁ ଗାଁକୁ । କଟକରୁ ଟ୍ରେନ୍‌ରେ ଖୋର୍ଦ୍ଧା । ସେଠୁ ଗାଁ ପର୍ଯ୍ୟନ୍ତ ଶଗଡ଼ଗାଡ଼ିରେ - ପାହାଡ଼ ତଳ ପଦ୍ମଫୁଲଫୁଟା ପୋଖରୀ କଡ଼େକଡ଼େ, ତାଳବନ ଓ କଣ୍ଟେଇ କୋଳି ବୁଦା ପାଖେପାଖେ, ଧାନକିଆରୀର ପେଟ ଚିରି ଲମ୍ବି ଯାଇଥିବା ଚିକିଟା ମାଟିର ଗହୀର ରାସ୍ତାରେ ।

ପାଲାକାର ଥିଲେ ପଡ଼ିଶାଘରର ଯୁବକ ହରିବନ୍ଧୁ । ବାପା ଲଣ୍ଡନ୍ ଗଲାବେଳେ ଗାଁରେ ଥିଲୁ ବର୍ଷେ । ପ୍ରତ୍ୟହ ସନ୍ଧ୍ୟାରେ, ହରିବନ୍ଧୁଙ୍କ ଦାଣ୍ଡଦୁଆରେ ଥିବା ବଳଦଗୁହାଳ ପାଖ କୁନି ଘରଟିରେ ହରିବନ୍ଧୁ ତଥା 'ତାଙ୍କ ପାଲାଦଳଙ୍କୁ ରିହର୍ସାଲ୍ କରୁଥିବାର ଶୁଣୁଥିଲୁ । ଠିକ୍ ଆମ ଘରକୁ ଲାଗି ଗିଲ ଓ ଧୂତୁରାବଣ ଭର୍ତ୍ତି ଲମ୍ୱାଳିଆ ଖାଲି ଡ଼ିହଟିଏ । ତା ପରେ ପରେଇ ହରିବନ୍ଧୁଙ୍କ ଘର । ରାତିର ନିସ୍ତବ୍ଧତା ଭେଦକରି ମୃଦଙ୍ଗମାଡ଼ ସହିତ ପାଲାକାର ମାନଙ୍କର ସୁଉଚ୍ଚ କଣ୍ଠର ଛାନ୍ଦ ଚୌପଦୀ ଭାସି ଆସୁଥିଲା ନିତିଦିନ - ଚେତି ଚତୁରୀ ଚାହିଁଲା ନିଶିଶେଷେ ପାଶେ ନାହିଁ ଦିବ୍ୟତରୁଣ । ପିତ୍ତଳ ଝାଞ୍ଜର ଘମାଘୋଟିଆ ଝାଇଁ ଝାଇଁ ନିନାଦରେ ଝଙ୍କୃତ ହେଉଥିଲା ପ୍ରଶସ୍ତ ଓ ସୁଶୁପ୍ତ ଗାଁ ଦାଣ୍ଡ ।

ହରିବନ୍ଧୁଙ୍କ ସାନଭଉଣୀ ଶଶୀ ଥିଲା ମୋର ସାଙ୍ଗ । କେବେ କେମିତି ତାଙ୍କ ଘରକୁ ଯାଉଥିଲି । ଆଉ ଶୈଶବର ଅହେତୁକ ଉତ୍ସୁକତା ନେଇ, ହରିବନ୍ଧୁଙ୍କୁ ନିରେଖି ଦେଖୁଥିଲି ଦୂରରୁ । ଟେରିକଟା କୁଞ୍ଚୁକୁଞ୍ଚିଆ ବାବୁରି ବାଳ । ମେଦବର୍ଜିତ ଗୌରବର୍ଣ୍ଣର ସୁଠାମ ଚେହେରା । ଲମ୍ୱମୁହଁରେ ଟାଖନାକଟି ଥିଲା ଭାରି ଶୋଭାବନ । ତାଙ୍କର ତରୁଣ ସାନଭାଇ ରାମ ମଧ୍ୟ ପାଲାଦଳରେ ସାମିଲ୍ ଥିଲେ ବୋଲି ଶଶୀ କହୁଥିଲା ।

ଏ ପର୍ଯ୍ୟନ୍ତ ଦୂରରୁ ଦେଖି ଆସୁଥିବା ପାଲାକାର ଯେ ସତକୁ ସତ ଆମଘର ସାମ୍ନା ଦାଣ୍ଡରେ ଆସି ପାଲା କରିବେ ଭାବି ବେଶ୍ ଉତ୍ତେଜିତ ହେଉଥିଲି । ଉତ୍ତେଜନାର

କାରଣ ଅବଶ୍ୟ ଥିଲା । ଯା ପୂର୍ବରୁ ପାଲା ଦେଖିବାର ସୌଭାଗ୍ୟ ମୋର ହୋଇନଥିଲା । ପାଲା ଜିନିଷଟି ପ୍ରତି କୌତୂହଳ ଥିବାଟାଇ ଥିଲା ସ୍ୱାଭାବିକ୍ ।

ପାଲାଦିନ ଘର ସାମ୍‌ନା ଦାଣ୍ଡରେ ଛାମୁଣ୍ଡିଆ ବାନ୍ଧି ପକେଇଲେ ଆମ ହଳିଆମାନେ । ବଡ଼ ବଡ଼ ବାଉଁଶ ପୋତି ଉପରେ ଢ଼ାଙ୍କି ଦିଆହେଲା ତଲେଇ । କେତୋଟି ପେଟ୍ରୋମାକ୍ସ ଯୋଗାଡ଼ ହେଇ ଆସିଲା ଗାଁର ବିତ୍ତବାନ୍ ଲୋକମାନଙ୍କ ଘରୁ । ବଡ଼ ଆଟିକାରେ କ୍ଷୀର, କଦଳୀ, ଚିନି, ଅଟା ଓ ଗୋଲମରିଚ ଗୁଣ୍ଡ ମିଶେଇ ବୋଉ ତିଆରି କଲା ଆଟିକାଏ ମହମହ ବାସ୍ନାର ସିରିଣୀ । ସତ୍ୟନାରାୟଣ କାଳେ ସିରିଣୀ ଭୋଗକୁ ଇ ସୁଖପାଆନ୍ତି । ବୂଢ଼ୀ ମା' ସାରାଦିନ ପଣା ପିଇ ଓ ଜଳପାନ କରି ବ୍ରତ ରଖିଲେ । ପୂଜା ସରିଲେ ଇ ଅନ୍ନ ଛୁଇଁବେ ।

ପାଲା ଆରମ୍ଭ ହେଲା ରାତି ଦିଘଡ଼ି ସରିକି । ଛାମୁଣ୍ଡିଆ ତଳେ କଡ଼ିକିଆ ହେଇ ବାଲିବେଦୀ । ସେଇଠି ହେଇଥିଲା ପ୍ରଭୁ ସତ୍ୟନାରାୟଣଙ୍କର ସ୍ଥାପନା । ବେଦୀ ଚାରିପଟେ ମୟୂରଚନ୍ଦ୍ରିକା ମଣ୍ଡନ । ତହିଁରେ ପୁଣି ଫୁଲମାଳ ବେଢ଼ଣ । ସାମ୍‌ନାରେ ଗନ୍ଧ, ଅକ୍ଷତ, ପୁଷ୍ପ, ଧୂପ, ଦୀପ, ନୈବେଦ୍ୟ, ତାମ୍ବୁଳ ଓ ଗୁବାକ ସଜ୍ଜା । ହରିବନ୍ଧୁ ପ୍ରଥମେ ଗଣେଶ, ଭାସ୍କର, ଶିବ ଓ ଦୁର୍ଗାଙ୍କୁ ସ୍ତୁତି କରି, ମୁଦ୍ରିତନୟନରେ ସତ୍ୟନାରାୟଣଙ୍କୁ ପୂଜା ଓ ନୈବେଦ୍ୟ ସମର୍ପଣ କରି ଆରମ୍ଭ କଲେ ପାଲାଗାନ । ପ୍ରଥମେ ମଙ୍ଗଳାଚରଣ, ଏବଂ ତା ପରେ ମୂଳକାହାଣୀର ବର୍ଣ୍ଣନା । ମୂଳକାହାଣୀର ସ୍ରୋତକୁ ବ୍ୟାହତ ନ କରି ଓ ମଝିରେ ମଝିରେ ତୀର୍ଯ୍ୟକ୍ ଭାବରେ ଗତିକରି ମଧ୍ୟଯୁଗୀୟ ଓ ପ୍ରାଚୀନ କବିମାନଙ୍କର ପଦାବଳୀ ଓ ଛାନ୍ଦ ଗାଇ ଶୁଣାଉଥିଲେ ହରିବନ୍ଧୁ । କଦବା କେମିତି ସଂସ୍କୃତ ଶ୍ଳୋକ ଓ ଢ଼ଗଢ଼ମାଳି ମଧ୍ୟ । ଗୋଟିଏ ଗୀତର ସୂତ୍ର ଧରି ଅତ୍ୟନ୍ତ ସାବଲୀଳ ଭାବରେ ପ୍ରବେଶ କରୁଥିଲେ ବୃହତ୍ତର ସାହିତ୍ୟ ଜଗତକୁ ଏବଂ ପୁନର୍ବାର ଫେରିଆସୁଥିଲେ ମୂଳ ଉପାଖ୍ୟାନକୁ । ବସ୍ତୁତଃ ତାଙ୍କର ଗାୟନ ଥିଲା ମଧ୍ୟଯୁଗୀୟ ସାହିତ୍ୟର ଏକ ଉତ୍କର୍ଷ ରସମୟ ଆଲୋଚନା । ମଧୁରକଣ୍ଠ, ବୁଦ୍ଧିର କ୍ଷିପ୍ରତା, ସ୍ମୃତିର ପ୍ରଖରତା, ସ୍ମିତମୁଖ ଏବଂ ବିନୟ ମଧୁର ଭାଷଣ ଦ୍ୱାରା ଅତି ସହଜରେ ଜନଚିତ୍ତକୁ ସାହିତ୍ୟରସଧାରାରେ ପ୍ଲାବିତ କରିଦେବାରେ ସକ୍ଷମ ହୋଇଥିଲେ ହରିବନ୍ଧୁ ।

ଚମତ୍କାର ସୁରେଲା ଗଳା ଥିଲା ହରିବନ୍ଧୁଙ୍କର । ଖାଲି ଯେ ଗୀତ ଗାଉଥିଲେ ତାହା ନୁହେଁ, ବିଭିନ୍ନ ଛାନ୍ଦ ଚୌପଦୀକୁ ସରଳ ଭାବରେ ବ୍ୟାଖ୍ୟା କରି ବୁଝାଉଥିଲେ ଚମତ୍କାର ଭାବରେ । ଡାହାଣ ହାତରେ ଧରା ଲମ୍ବ ବେଣ୍ଟଲଗା ଧୋବ ଫରଫର ଚାମର । ବୀରରସର ଗୀତଗାଇଲାବେଳେ, ସେ ଚାମରଧରା ହସ୍ତକୁ ଶୂନ୍ୟରେ ଉତ୍ତୋଳନ କରି ବେଶ୍ ଶୌର୍ଯ୍ୟର ଭଙ୍ଗିମା ଧାରଣ କରୁଥିଲେ ହରିବନ୍ଧୁ । ବାମ ହାତରେ କୁନି କୁନି ଗିନିଯୋଡ଼ିଏ । ସେ ଗିନିର ଲମ୍ବସୂତା ହାତର ଆଙ୍ଗୁଠିଗୁଡ଼ିକ ଭିତରେ ଛନ୍ଦେଇ

ହେଇ ରହିଥିଲା । ମଝିରେ ମଝିରେ ହରିବନ୍ଧୁ ସେ ହାତଟିକୁ ହଲେଇଦେଲେ, ଗିନି ଦୁଇଟି ମିହି ସ୍ୱରରେ ଟୁଂ ଟାଂ ନିକ୍ୱଣ ସୃଷ୍ଟି କରୁଥିଲେ ଗୀତ ସାଥିରେ ତାଳ ଦେଇ ଏବଂ ଭାରି ଶ୍ରୁତିମଧୁର ଥିଲା ଯେ ଗିନିର ନିକ୍ୱଣ ।

ହରିବନ୍ଧୁଙ୍କ ସାଜପୋଷାକରେ ଥିଲା ବୈଚିତ୍ର୍ୟ । ମଥାରେ ପାଗ, କାନରେ ସୁବର୍ଣ୍ଣ କୁଣ୍ଡଳ, ହାତରେ ରୂପାଖଡୁ, ଅଣ୍ଟାରେ ତିନିସରିଆ ଅଣ୍ଟାସୂତା, ବାହୁରେ ଅନନ୍ତ ଓ ବେକରେ ସୋରିଷିଆ ମାଳ । ଦେହରେ ଚକମକ ଜରିଲଗା ଜାକେଟ୍ । ଜାକେଟ୍ ତଳେ ନିମ୍ନାଙ୍ଗରେ ଚଉଡ଼ା ଘେରର ସାର୍ଟିନକନାର ଘାଗରା । ସେ ଘାଗରାର ଝୁଲ ଲମ୍ବିଥିଲା ବଳାଗଣ୍ଠିଯାଏ ।

ହରିବନ୍ଧୁଙ୍କୁ ବାଦ୍‌ଦେଲେ, ବାକୀ ପାଲାକାର ଥିଲେ ପଞ୍ଚଜଣ । ସଭିଙ୍କ ଦେହରେ ପିନ୍ଧା ଘେର ଓ ନାଲ୍, ନୀଳ ଜାକେଟ୍ । ଆଖିରେ କଜଳ ଓ ମଥାରେ ଚନ୍ଦନର ଛିଟା । ପାଳିଆମାନଙ୍କ ପାଦରେ ଘାଘୁଡ଼ି ଓ ହାତରେ ଝାଞ୍ଜ । ବାୟକଙ୍କ କାନ୍ଧରେ ନାଲି ସାଲୁକନା ଗୁଡ଼ା ହେଇଥିବା ମୃଦଙ୍ଗ । ଗୀତ ଗାଇବା ସଂଗେ ସଂଗେ ପାଦର ଘାଘୁଡ଼ି ବା ବାଜେଣି ବଜାରେ ତାଳ ଦେଇ ନାଚୁଥିଲେ ସେମାନେ । ହରିବନ୍ଧୁଙ୍କ ପଛରେ ଠିଆହୋଇ ପାଳିଧରୁଥିଲେ ସମସ୍ୱରରେ ଏବଂ ଉଚ୍ଚପର୍ଦ୍ଦାରେ ଗାଇଲାବେଳେ, ସେମାନଙ୍କ ଗଳାର ମୋଟା ମୋଟା ଶିରା ସବୁ ସ୍ଫୀତ ହୋଇ ଉଠୁଥିଲେ ସ୍ପଷ୍ଟ ଭାବରେ ।

ସବୁଠୁ ଭଲ ଗାୟକୀ ପରିବେଷଣ କରିଥିଲେ ଡ଼ାହାଣ ପାଳିଆ ବା ଶିରୀ ପାଳିଆ ନବ । ନବ ଥିଲେ ଚଷାଘରର ପୁଅ । ଅନେକଥର ଗାଁ ଦାଣ୍ଡରେ କରିଆଟିଏ ପିନ୍ଧି ଓ ମୁଣ୍ଡରେ ବୃହଦାକାର କଳେଇଟିଏ ବୋହି ତାଙ୍କୁ ବିଲରୁ ଫେରୁଥିବାର ଦେଖୁଥିଲି । ଅଳଙ୍କାର ଓ ରେଶମ୍ ଘାଗରାରେ ମଣ୍ଡିତ ହୋଇ ନବଙ୍କର କିନ୍ତୁ ନବକଳେବର ଘଟିଥିଲା ସେଦିନ । ଚେହେରାରେ ଆସିଥିଲା ଚୌଲୁସ୍ । ହରିବନ୍ଧୁ ଗୀତର ଅଧାପଦ ଗାଇଲାପରେ ବାକୀ ପଦପୂର୍ତ୍ତି ନବ ହିଁ କରୁଥିଲେ । ଲହର୍‌ଦେଇ ଗୀତଗାଇଲାବେଳେ, ବାମହସ୍ତଟି କାନ ଉପରେ ନ୍ୟସ୍ତ କରି ଡ଼ାହାଣ ହାତଟି ଲମ୍ବାଇ ଦେଉଥିଲେ ସାମ୍ନାକୁ । ମଝିରେ ମଝିରେ ରସମଗ୍ନ ହୋଇ ଆଣ୍ଠେଇ ପଡୁଥିଲେ ଭୂଇଁରେ । ତାଙ୍କର ଠାଣୀ ଥିଲା ପୂରାପୂରି ରାଜସୁଲଭ ।

ମୋତେ କିନ୍ତୁ ସବୁଠୁ ଭଲ ଲାଗିଥିଲା ହରିବନ୍ଧୁଙ୍କ ତରୁଣ ଭାଇ 'ରାମ'ଙ୍କର ଲୀଳାଖେଳା । ବେକରେ ମୃଦଙ୍ଗ ଝୁଲାଇ, ମଝିରେ ମଝିରେ ରାମ ଗୀତ ସହିତ କୁନି କୁନି ଲମ୍ଫ ପ୍ରଦାନ କରୁଥିଲେ ଓ ତାଳବାଦ୍ୟର ବୋଲ୍ ମୁହଁରେ କହି କଦବା କେମିତି ଚକ୍ରକାଟି ବୁଲି ଯାଉଥିଲେ । ସେ ଘୂର୍ଣ୍ଣନ ଫଳରେ ତାଙ୍କ ଛିଟ ଘାଗରାଟି ରୂପ ନେଉଥିଲା ଏକ କ୍ଷୁଦ୍ରାତିକ୍ଷୁଦ୍ର ତମ୍ବୁର କିନ୍ତୁ ଚାହିଁ ଦେଖୁଥିଲି କେବଳ ମୋ ବ୍ୟତୀତ,

ରାମଙ୍କର ସେଇ ଦୈହିକ ନୃତ୍ୟ କୁଶଳତାରେ, ଆଉ ଜଣେ ହେଲେ ବି ଦର୍ଶକ ବିହ୍ୱଳ ହେଲା ପରି ମନେ ହେଉ ନଥିଲା ଏବଂ ରାମଙ୍କ ପ୍ରତି ଗ୍ରାମବାସୀ ମାନଙ୍କ ଦ୍ୱାରା ହେଉଥିବା ଏତାଦୃଶ ଅବିଚାରରେ ମୁଁ ବେଶ୍ କ୍ଷୁବ୍ଧ ହୋଇଥିଲି ।

ପାଲା ଚାଲିଥିଲା ସାରାରାତି, ସକାଳ ହେବା ପର୍ଯ୍ୟନ୍ତ । ପାଲାମଣ୍ଡପ ଚାରିପଟେ ଫୁଙ୍ଗୁଳା ଦେହୀ, ଶ୍ୟାମକାନ୍ତି ଗ୍ରାମୀଣ ମଣିଷଙ୍କ ଭିଡ଼ । ଚକମାଲି ପକାଇ ବସି, ଏକାଗ୍ର ଚିତ୍ତରେ ଗୀତ ଶୁଣୁଥିଲେ ସେମାନେ । ଦାଣ୍ଡକବାଟ ପାଖ ପିଣ୍ଡାମାନଙ୍କରେ ଜକାଜକି ହୋଇ ବସିଥିଲେ ଗ୍ରାମବଧୂ ସକଳ । ସେମାନଙ୍କର ଆଂଶିକ ଅବଗୁଣ୍ଠନ ତଳେ ଥିବା ନାକଫୁଲର ଧଳା ପଥରମାନ ପେଟ୍ରୋମାକ୍ସର ରଶ୍ମିରେ ଚିକ୍‌ମିକ୍ କରି ଉଠୁଥିଲେ କେବେ କେମିତି । ମଝିରେ ମଝିରେ ଗ୍ରାମବାସୀମାନେ 'ହରିବୋଲ' ଧ୍ୱନି କରୁଥିଲେ । ମହିଳାମାନେ ସମସ୍ୱରରେ ପକାଉଥିଲେ ହୁଳହୁଳି । ସେ ହରିବୋଲ ଓ ହୁଳହୁଳିର ମିଶାମିଶି ନିନାଦ ସତେ ଅବା ଏକ ମନ୍ତ୍ରର ରୂପ ନେଇ ପ୍ରତିଧ୍ୱନିତ ହେଉଥିଲା ଗାଁର ନିଥର, ନିଃଶବ୍ଦ ବାତାବରଣରେ ।

ମନେ ଅଛି, ସାରା ରାତି ଉଜାଗର ରହି ସେ ପାଲା ଦେଖିଥିଲି । ଏବଂ ଯାହା ସେତେବେଳେ ମୋତେ ସବୁଠାରୁ ବେଶୀ ମୁଗ୍ଧ କରିଥିଲା, ତାହା ହେଲା ହରିବନ୍ଧୁଙ୍କର ପ୍ରତ୍ୟୁତ୍ପନ୍ନମତି ଓ ବାକ୍‌ପଟୁତା । ହରିବନ୍ଧୁ ଥିଲେ ତୁରନ୍ତ କବି । ଯେ କୌଣସି ବିଷୟ ହେଉ – ତାଙ୍କ ପାଇଁ କିଛି ଖିଲୀପାନ ପଠାଇବା ପାଇଁ ବୋଉକୁ କରୁଥିବା ଅନୁରୋଧ ହେଉ, କିମ୍ବା ହେଉ କୌଣସି ତନ୍ଦ୍ରାଳୁ ବୟୋଜ୍ୟେଷ୍ଠଙ୍କୁ ତନ୍ଦ୍ରା ତେଜି ତାଙ୍କ ଗାୟନରେ ମନୋନିବେଶ କରିବାର ମିନତି – ସବୁ କହୁଥିଲେ ଗୀତରେ ଏବଂ ସେ ଦ୍ୱିପଦୀ ସବୁ ରଚନା କରି ଦେଉଥିଲେ ତତ୍‌କ୍ଷଣାତ୍ । ବେଶ୍ ଛନ୍ଦ, ଯତିପାତ ତଥା ଉପଧାମିଳନ ସହିତ ।

ସେଇଥିଲା ମୋ ଜୀବନର ପ୍ରଥମ ଓ ଶେଷ ପାଲା ଦେଖା । ଗାଁରୁ ଫେରିଆସିଲୁ କଟକ । କଟକରେ କଦବା କେମିତି କେଉଁଠି ବାଦୀ ପାଲା ହେବାର ଶୁଣୁଥିଲୁ । କିନ୍ତୁ ସାରାରାତି ବାହାରେ ରହି ପାଲା ଦେଖିବାର ପ୍ରଶ୍ନ ଇ ନଥିଲା । ଟେଲିଭିଜନ୍ ନଥିଲା ସେତେବେଳେ । ଅଲ୍ ଇଣ୍ଡିଆ ରେଡିଓରୁ ଥରେ ଅଧେ ପାଲାକାର ମାନଙ୍କର ଗୀତ ଯାହା ଶୁଣିବାକୁ ମିଳୁଥିଲା ।

ବାହାଘର ପରେ ସାରା ଜୀବନ କଟିଲା ଓଡ଼ିଶା ବାହାରେ, ଭାରତବର୍ଷର ବିଭିନ୍ନ ପ୍ରଦେଶରେ । ଓଡ଼ିଶା ଫେରିଲି ବିନୟ ଚାକିରିରୁ ଅବସର ଗ୍ରହଣ କରି ସାରିବା ପରେ । ଏବଂ ଫେରିବାର କେଇଦିନ ପରେ ଥରଟେ ଟି.ଭି.ର ଓଡ଼ିଆ ଚାନେଲ୍‌ରେ ପାଲା ଦେଖିବାର ସୁଯୋଗ ପୁନର୍ବାର ମିଳିଲା ମୋତେ । ଚୌକୀରେ ଆରାମ କରି

ବସି, ଆଗ୍ରହର ସହିତ ଅନାଇଁ ରହିଲି ଟେଲିଭିଜନର ପର୍ଦ୍ଦାକୁ । କିନ୍ତୁ ପାଲାର ଯେଉଁ ନବୀକରଣ ରୂପ ଦେଖିଲି ତାହା ମୋତେ ବେଶ୍ ନିରାଶ ଓ ନିରୁତ୍ସାହିତ କଲା ।

ବିଗତ ଅର୍ଦ୍ଧଶତାବ୍ଦୀ ଭିତରେ, ପାଲାର ଉପସ୍ଥାପନା ଶୈଳୀରେ ବେଶ୍ ପରିବର୍ତ୍ତନ ହୋଇଥିବାର ଲକ୍ଷ୍ୟ କଲି । ପରିବର୍ତ୍ତନ ଲକ୍ଷ୍ୟ କଲି ପାଲାକାରମାନଙ୍କର ବେଶପୋଷାକରେ ମଧ୍ୟ । ପାଲାକାରମାନେ ଆଗପରି ଜରିଲଗା ଜାକେଟ୍ ବା ଘେରଦିଆ ଘାଗରା ପିନ୍ଧିନଥିଲେ । ଶରୀର ସେମାନଙ୍କର ଥିଲା ସଂପୂର୍ଣ୍ଣରୂପେ ଆଭୂଷଣ ବର୍ଜିତ । ଆଭୂଷଣ ଭିତରେ କେବଳ କଚଟିରେ ବନ୍ଧା ହୋଇଥିବା ଘଡିଟିମାନ । ଟି.ଭି. ପର୍ଦ୍ଦାରେ ଫୁଟି ଉଠୁଥିଲେ ମାଲ୍‌କଚ୍ଛା ମରା ଧୋତି ଓ ଚୁଡ଼ୀଦାର୍ ପଞ୍ଜାବୀ ପିନ୍ଧା, ତେଜହୀନ ଓ ସ୍ଫୁର୍ତ୍ତିହୀନ ଚାରୋଟି ଭଗ୍ନସ୍ୱାସ୍ଥ୍ୟର ଯୁବକ ଓ ପ୍ରୌଢ଼ ।

ଆଙ୍ଗିକ ଅଭିନୟ ସେମାନଙ୍କର ଥିଲା ଅନେକାଂଶରେ କମ୍ । ସଭିଏଁ ଠିଆ ହୋଇଥିଲେ ସିଧାସଳଖ - ଶୁଷ୍କ କାଷ୍ଠଖଣ୍ଡ ନ୍ୟାୟ, ଶରୀରର ଛନ୍ଦ, ସ୍ୱାଚ୍ଛନ୍ଦ୍ୟ, ଗତିଶୀଳତା ଓ ସାବଲୀଳତାକୁ ପ୍ରତିହତ କରି । ବାଦକ ମହାଶୟ ମୃଦଙ୍ଗ ଧ୍ୱନି ସହିତ ତାଳ ଦେଇ ଉତ୍ସାହାତିଶଯ୍ୟରେ ଭୂଇଁରେ ଆଣ୍ଠେଇପଡି ତାଙ୍କର ନୈପୁଣ୍ୟ ଓ କଳାକୁଶଳତା ପ୍ରଦର୍ଶନ କରୁନଥିଲେ । ନଥିଲା ବି ଏକଦା ଦେଖିଥିବା ତରୁଣ ରାମଚନ୍ଦ୍ରଦ୍ୱାରା ପ୍ରଦର୍ଶିତ ସେ ପ୍ରାଣୋଚ୍ଛଳ ନୃତ୍ୟ ବା ଘୂର୍ଣ୍ଣନ । ପାଲାର ସେ ଆତ୍ମା ନଥିଲା । ନଥିଲା ସେ ଓଜ, ନଥିଲା ସେ ସଜୀବତା, ସରସତା ବା ପ୍ରସନ୍ନତା ।

କିମ୍ବା ଏହା ବି ହୋଇପାରେ । ଶୈଶବର ଯେଉଁ ଭାବପ୍ରବଣ ହୃଦୟ ଓ ସ୍ୱପ୍ନିଳ ଦୃଷ୍ଟି ନେଇ ପାଲା ଦେଖିଥିଲି, ସେଇ ହୃଦୟ ଓ ଦୃଷ୍ଟି ହୁଏତ ମୁଁ ହରାଇ ବସିଛି ଯା' ଭିତରେ । ଅର୍ଦ୍ଧଶତାବ୍ଦୀ ଆଗେ, ଗ୍ରାମର ନିଃସ୍ପନ୍ଦ ମାଟିଗନ୍ଧଭରା ପ୍ରାୟାନ୍ଧକାର ପରିବେଶରେ, ଛାଇ ଆଲୁଅର ମିଶାମିଶି ଝୁଲଣତଳେ, କୋରା ଓ ସବୁଜମନରେ ଯେଉଁ କୁନିଝିଅଟି ପାଲାଗାନ ଶୁଣି ଏକଦା ବିଭୋର ହୋଇଥିଲା, ସେଇ କୁନିଝିଅଟି ହୁଏତ ଆଜି ନିଶ୍ଚିହ୍ନ ହୋଇଯାଇଛି ଏ ପୃଥିବୀର କଠୋର ଓ ଧୂସର ବାସ୍ତବତା ଭିତରେ । କିଏ ଜାଣେ ?



# ମଧୁମାଳତୀ

ବୁଲୁ କହିଲା - ନାନୀ, ମଧୁମାଳତୀ ମାନେ କଅଣ କହିଲୁ ?

ବୁଲୁ ମୋ ସାନଭଉଣୀ । ରାଉରକେଲାରେ ଡାକ୍ତର । ଭୁବନେଶ୍ୱର ଆସିଥିଲା କୌଣସି ଏକ କାମରେ । ଉଠିଥିଲା ମୋ' ଘରେ । ଏବଂ କଥାଟି କହିଥିଲା ପ୍ରାତଃକାଳୀନ ଠାକୁରପୂଜା ସାରି । ଠାକୁରଙ୍କୁ ମୋ ବଗିଚାରୁ ତୋଳା ଗୁଚ୍ଛ ଗୁଚ୍ଛ ମଧୁମାଳତୀରେ ସଜାଇ ।

ମୁଁ ଫିକ୍ କରି ହସି ଦେଲି । ଇଏ ପୁଣି କି ଧରଣର ପ୍ରଶ୍ନ ? ମଧୁମାଳତୀର ମାନେ ପୁଣି କଅଣ ? ଭାବିଲି କେବଳ ବୁଲୁ ଇ ଏଇଭଳି ଅବାନ୍ତର ପ୍ରଶ୍ନ କରିପାରେ ।

- ଜାଣିପାରିଲୁନି ନାନୀ ? ମଧୁମାଳତୀ ମାନେ ଯେ ଶୈଶବ ! ବୁଲୁ ଅର୍ଥପୂର୍ଣ୍ଣ ମୃଦୁହସଟିଏ ହସି ମତେ ଚାହିଁ କହିଲା ।

ଏଥରକ ମୁଁ ଜାଣି ପାରିଲି । କେଉଁ ଦୂରଦୂରାନ୍ତର ଇଲାକାରୁ ଭାସି ଆସୁଥିବା ମଧୁମାଳତୀର ଭୀରୁ ବାସ୍ନା ସତେ ଅବା ଘ୍ରାଣ କଲି ମୁଁ । ଥୋକା ଥୋକା ସାଦା ଗୋଲାପି ମଧୁମାଳତୀର ରୂପଶ୍ରୀରେ ଶୋଭାବନ୍ତ ହେଇଉଠିଲା ସ୍ମୃତିର ପର୍ଦ୍ଦା । ସତକଥା, ମଧୁମାଳତୀ ମାନେ ଯେ ଶୈଶବ ।

ଏଲ୍ ପ୍ୟାଟର୍ଣ୍ଣର ଚଉଡା ବାରଣ୍ଡା ଥିବା ଘର । ମଝିରେ ଅଗଣା । ଦାଣ୍ଡଘର ବାଟଦେଇ ପିଣ୍ଡା ଉପରକୁ ପାଦ ଦେଲାବେଳକୁ ଆଖିରେ ପଡୁଥିଲା ମଧୁମାଳତୀର ଲତା । ପିଣ୍ଡସାରା ଚଉଖୁଣ୍ଟିଆ ମସ୍ତବଡ୍ ପିଲାରମାନଙ୍କରେ ଲତେଇ ଲତେଇ ମାଡିଯାଇଥିଲା ଉପରକୁ । ଉପରୁ ତଳକୁ ଓହଳିଥିଲା ତା'ର ଘଞ୍ଚ, ଝୁଲନ୍ତ ଓ ବ୍ରୀଡାବତୀ ଶାଖାସବୁ । ଗୋଟିଏ ସବୁଜପ୍ରାଚୀର ପରି ଘେରି ରହିଥିଲା ପିଣ୍ଡାକୁ । ପିଣ୍ଡାଟି ଥିଲା ପଶ୍ଚିମମୁଖା । କିନ୍ତୁ ସୂର୍ଯ୍ୟ ପଶ୍ଚିମକୁ ଢ଼ଳିଲେ ବି ନିଦାଘଋତୁରେ ଜମ୍ମା ଉତ୍ତପ୍ତ ହେଉନଥିଲା ପିଣ୍ଡାଟି । ମଧୁମାଳତୀର ମାଳଞ୍ଚ ଘରଟିକୁ ରଖୁଥିଲା ଛାୟାଶୀତଳ ଓ ଶ୍ୟାମଘନ ।

ଆଉ ପୁଞ୍ଜପୁଞ୍ଜ ନକ୍ଷତ୍ର ଫୁଟିଲା ପରି ଲମ୍ୱଲମ୍ୱ ବୃନ୍ତ ଅଗରେ ଦୁକ୍‌ଦୁକ୍ ଆଖିମେଲି ଚାହିଁ ରହୁଥିଲେ ମୃଦୁଗନ୍ଧୀ ପୁଷ୍ପସ୍ତବକ ସବୁ । ଭାରି ନମ୍ର, ଭାରି ଲଜ୍ୟାଶୀଳା ଥିଲେ ସେ ସବୁ ପୁଷ୍ପସ୍ତବକ । ସଦା ସର୍ବଦା ନମନୀୟ ଓ ନତମୁଖୀ - ଝୁଲିରହୁଥିଲେ ତଳକୁ । ଘରକୁ କେହି କୁଣିଆ ଆସିଲେ ଦଣ୍ଡେ ଥକ୍କା ମାରି ଠିଆ ହୋଇ ରହୁଥିଲେ ସେ ଗଛକୁ ଚାହିଁ । ଏଭଳି ରୁଚିର ଓ ଏଭଳି ଫୁଲପତ୍ରରେ ଜମଜମାଟ୍ ଆସର ବସାଇଥିବା ମଧୁମାଳତୀ ଗଛଟିଏ ସଚରାଚର ଆଖିରେ ପଡୁନଥିଲା । ଅପର୍ଯ୍ୟାପ୍ତ ଶାଖାର ଭାରରେ ବେଳେବେଳେ ନଇଁ ପଡୁଥିଲା ଗଛଟି । ଆମେ ଖୁଣ୍ଟସହିତ ଲୁହା ତାର ଦେଇ ବାନ୍ଧି ଦେଉଥିଲୁ । ଶୈଶବର ସବୁ ଖେଳକୁଦ, ଗପସପ ଓ ଖିଆପିଆ ହେଉଥିଲା ସେ ବରଣ୍ଡାରେ, ମଧୁମାଳତୀ ଗଛକୁ ସାକ୍ଷୀ ରଖି ।

ମନେ ଅଛି - ବର୍ଷଟେ ପୋକ ଲାଗିଗଲେ ଗଛରେ । ଠିକ୍ ଗଛଡ଼ାଳ ରଂଗର । ମାଟିଆ ମାଟିଆ କାଠିପରି ଚେହେରା । ଦୂରରୁ ଦେଖିଲେ ଲାଗୁଥିଲା ସତେ ଅବା ଗଛର ଶୁଖିଲା କାଠିଟିଏ । କିନ୍ତୁ ପତ୍ରଖାଇବାରେ ସେ ପୋକମାନେ ଥିଲେ ଓସ୍ତାଦ୍ । ଗଛଟିକୁ ହତଶ୍ରୀ କରିଦେଲେ କେଇଟା ଦିନରେ । ଉଡ଼ି ବସିଲେ ଏଠିସେଠି । ବୋଉ ବ୍ୟତିବ୍ୟସ୍ତ ହେଇ ମୂଳରୁ ଚାଖଣ୍ଡେ ହେବ ଛାଡ଼ି ଗଛଟିକୁ କାଟିଦେଲା । ପିଣ୍ଡାଟି ଦିଶିଲା ଆଭୂଷଣବିହୀନ, ଫାଙ୍କାଫାଙ୍କା । ଆମେ ଦଳକଯାକ ଗଛମଳାରେ ପାଣିଦେଇ ନିଇତି ନିରେଖି ଲାଗିଲୁ ଗଛଟିକୁ । କଳି ଦେଲାଣି ନା ନାଇଁ । ଜୀବନ୍ତ ଅଛି ନା ନାଇଁ । ଗଛଟି ଥିଲା ଭାରି ସମ୍ବେଦନଶୀଳ । ଆମ ଦୁଃଖ ସହିନପାରି ବଢ଼ିଗଲା ତର୍‌ତର୍ ହେଇ । କ୍ରମବର୍ଦ୍ଧିଷ୍ଣୁ ପ୍ରଶାଖାତକ ଅଚିରେ ସୁପୁଷ୍ଟ ଓ ଶ୍ୟାମଳ ମାଳଞ୍ଚଟିଏ ତିଆରି କରିଦେଲେ ପିଣ୍ଡାକଡ଼ରେ ।

ଶୈଶବ ଥିଲା ଫୁଲର । ମଲ୍ଲିକା, ସ୍ୱର୍ଣ୍ଣଚମ୍ପା ଓ କାମିନୀର । ଅବିରବୋଳା ଟକ୍ ଟକ୍ ଲାଲ୍ ପାଳଧୁଆ ଫୁଲର ବି ।

ପିଣ୍ଡାପାହାଚ ଓହ୍ଲାଇଲେ ଆୟତକ୍ଷେତ୍ରାକାର ପ୍ରଶସ୍ତ ଅଗଣା । ଜ୍ଞାନହେଲା ଦିନଠାରୁ ଦେଖୁଥିଲି, ସେ ପାହାଚ ତଳକୁ ଧାଡ଼ି ଧାଡ଼ି ହେଇ ଲଗା ହେଇଥିଲା ବୁଦା ବୁଦା ମଲ୍ଲିଗଛ । କିଏ କେବେ ରୋପଣ କରିଥିଲା ଜାଣେନି । ସାରା ଶୀତରତୁ ନିର୍ଜୀବ ଓ ସୁଶୁପ୍ତ ଅବସ୍ଥାରେ ରହୁଥିଲେ ସେ ଗଛତକ । କିନ୍ତୁ ଖରାଦିନ ଆସିଗଲେ ଆଚମ୍ବିକା ତନ୍ଦ୍ରା ତେଜି ଆଖି ଖୋଲିବାକୁ ଆରମ୍ଭ କରୁଥିଲେ । ବୈଶାଖ ଓ ଜ୍ୟେଷ୍ଠ ମାସରେ ଟିଉବ୍‌ୱେଲରୁ ପାଣିମାରି ପ୍ରତି ଅପରାହ୍ଣରେ ତା' ମୂଳରେ ବାଲ୍‌ଟି ବାଲ୍‌ଟି ପାଣି ଢ଼ାଳୁଥିଲେ ବାପା । ରସ ପିଇ କେଇଟା ଦିନରେ ଗଛତକ ହେଇଯାଉଥିଲେ ଗହନସବୁଜ । ମୋଟାଳିଆ ଚେଲିଆ ପତ୍ର । ସେ ପତ୍ର ଅଗରେ ଖୁନ୍ଦାଖୁନ୍ଦି ହୋଇ କୁନି କୁନି କଢ଼ ଆସିଯାଉଥିଲା ପ୍ରଚୁର । ଆଉ କେଇଟା ଦିନରେ ସାଦା ଧବ୍‌ଧବ୍ ପାଖୁଡ଼ା ମେଲେଇ ମୁର୍କି ହସ ମାରୁଥିଲେ ମଲ୍ଲିଫୁଲଯାକ । ଆମେ ଫୁଲଟିଏ ତୋଳି ପିଇବା ପାଣିରେ ପକାଇ ଦେଉଥିଲୁ । ପାଣି ବାସୁଥିଲା ମହମହ । ରାତିରେ ଶୋଇଲାବେଳକୁ ତକିଆ ପାଖେ ରଖିଦେଉଥିଲୁ ଯୋଡ଼ିଏ ଲେଖାଏଁ ମଲ୍ଲିକଢ଼ । ରାତିର ଆୟୁଷ ବଢ଼ିବା ସହିତ ସେ ଦରଫୁଟା କଢ଼ ସବୁ ମନକୁ ମନ ଫିଟି ଫିଟି ଆସୁଥିଲେ । ଆମ ଦେହରେ ମକ୍‌ଚି ହେଇ ବିଛଣାକୁ କରିଦେଉଥିଲେ ସୌରଭସିକ୍ତ ।

ଆଉ ଠିକ୍ ଅଗଣା ମଝିରେ ଥିଲା ମୁଣ୍ଡେ ଉଚ୍ଚର କାମିନୀଗଛଟି । ଆଷାଢ଼ମାସର ବୁନ୍ଦା ପଡ଼ିଲେ ଇ ଛାଇ ଯାଉଥିଲା ଫୁଲରେ । ଜମାଟବନ୍ଧା ପେନ୍ଥାରେ ସରୁସରୁ ପାଖୁଡ଼ାର ଫୁଲସବୁ । ଫୁଲଟିମାନ ଥିଲା ସାନ । କିନ୍ତୁ ଛକାଛକି ହେଇ ପେନ୍ଥାରେ ଏକତ୍ରିତ ଭାବରେ ଫୁଟି, ସେ ଫୁଲଗୁଚ୍ଛ ରୂପ ନେଉଥିଲା ଏକ ସଫେଦ୍ ଗୋଲାକାର ସାନ ପେଣ୍ଡୁର । କି ମତାଣିଆ ଓ ତୀବ୍ର ବାସ୍ନା ଥିଲା ସେ ଫୁଲର ! ସାରା ଘର ଓ ଅଗଣା ରାତି ଆସିଲେ ମହମହ ହେଇଉଠୁଥିଲା ସେ ବର୍ଷାଧୁଆ ଫୁଲର ବାସ୍ନାରେ । ମାଟି ଅଗଣାଟି ଶ୍ରୀମୟୀ ହୋଇ ଉଠୁଥିଲା ସେ କାମିନୀଫୁଲର ଲାବଣ୍ୟରେ ।

ଦାଣ୍ଡପଟକୁ, ଠିକ୍ ଘର ସାମ୍ନାରେ ଥିଲା ସ୍ୱର୍ଣ୍ଣଚମ୍ପାର ଗଛଟି । ବୋଉ କେଉଁ ଏକ ପ୍ରଦର୍ଶନୀରୁ ଆଣି ଲଗାଇଥିଲା । ହାତପାଆନ୍ତାରେ ଥିଲାବେଳେ ଫୁଟିଥିବା ଦୁଇ ଚାରୋଟି ଫୁଲ ତୋଳି ଆଣୁଥିଲୁ ଆମେ । ବୋଉ ଠାକୁରପୂଜା କରିବ ବୋଲି । ଗଛଟି କିନ୍ତୁ ବଢ଼ିଗଲା ମାତ୍ର କେତୋଟି ବର୍ଷରେ - ହୋଇଗଲା ଦୀର୍ଘ ଓ ତ୍ରିକୋଣାକାର । ସାରାବର୍ଷ ଫୁଲ ଫୁଟୁଥିଲା ପ୍ରଚୁର । ରାତି ପାହିଲେ, ଡ଼ାଳେ ଡ଼ାଳେ ନହୁଲୀ, ରଙ୍ଗବତୀ ଚମ୍ପାମାନେ ଫୁଟିଉଠୁଥିଲେ ଖୁସିମନରେ । ଫୁଟୁଥିଲେ ଆଉ ଝଡ଼ୁଥିଲେ । ଶେଷକୁ ଦିନେ ନଜର୍ ପଡ଼ିଗଲା ଆମ ଘର ପାଖ ଶିବମନ୍ଦିର କାମ କରୁଥିବା ମାଳିଟିର । ବୋଉଠୁ ଅନୁମତି ନେଇ ନିଇତି ଗଛଚଢ଼ି ଅଣ୍ଟିଏ ହେବ ଫୁଲ ନେଇ ଯାଉଥିଲା ସିଏ ସାଥିରେ - ମାଳ କରି ବିକ୍ରି କରିବା ପାଇଁ । ଏବଂ ପ୍ରତ୍ୟେକ ଦିନ ଯିବାପୂର୍ବରୁ ମୁଠାଏ ଫୁଲ ଦେଇ ଯାଉଥିଲା ଆମକୁ । ମଞ୍ଜ କଦଳୀପତ୍ର ଉପରେ ରଖା, ଭୀରୁବାସ୍ନାର ମେଞ୍ଚାଟିଏ ଫିକା ହଳଦିଆ ଚମ୍ପାଫୁଲ, ସାରା ସକାଳ ପଡ଼ି ରହୁଥିଲା ଆମ ପିଣ୍ଡାରେ କଡ଼ିକିଆ ହୋଇ ପଡ଼ିଥିବା ପଟାଖଟିଟି ଉପରେ । ବୋଉ ସ୍ନାନ କରିବା ପର୍ଯ୍ୟନ୍ତ । ଗାଧୋଇ ସାରିଲେ ବୋଉ ଠାକୁରଙ୍କୁ ଲାଗି କରାଉଥିଲା ସେ ଫୁଲ ।

ଦାଣ୍ଡପଟକୁ ଥିଲା ସାରିବନ୍ଧ ଓ ଉଚ୍ଚୁ ପାଳଧୁଆ ଗଛତକ । ଘର ସାମ୍ନାରେ ନାଲି ଗୋଡ଼ିର ଗଦା । କାହିଁ କେବେ ବାପା ଘର ତିଆରି କଲାବେଳେ ଗୋଡିତକ ବଳିଥିଲା । ତା'ଉପରେ ମାଟିର ପରସ୍ତ ପଡି ସୃଷ୍ଟି ହୋଇଯାଇଥିଲା କୁଦଟିଏ । ଆଉ ସେ କୁଦଫଟେଇ ଗଜୁରିଥିଲେ କେତୋଟି ପାଳଧୁଆ ଗଛ । ଉଞ୍ଚ ମଥାନ । ସେ ଗଛର ଅଗକୁ ଉପରକୁ ମୁହଁ କରି ଆଖି ଟେକି ଚାହିଁବାକୁ ପଡୁଥିଲା । ଗୋଟିଏ ନିର୍ଦ୍ଦିଷ୍ଟ ଋତୁରେ ଟକ୍‌ଟକ୍ ଲାଲ୍ ଫୁଲର ଆଭାରେ ଝଲସି ଉଠୁଥିଲା ସେ ଗଛର ଶୀର୍ଷଦେଶ । ଦିନେ ଦିଦିନ ପରେ ଦରଶୁଖିଲା ଫୁଲତକ ଝଡ଼ି ପଡୁଥିଲେ ପାଳଧୁଆ ଗଛମୂଳରେ ଥିବା କଣ୍ଟାଳିଆ ନାଗୁଆରି ବଣରେ । କୁନି କୁନି ନାଗୁଆରି ଫୁଲର ବୃନ୍ତରୁ ମହୁ ଚୁଷି ପିଉ ପିଉ ଆଖିରେ ପଡୁଥିଲା ସେ ସବୁ ଲାଲ୍‌ଫୁଲ । ଭୂଇଁରୁ ଉଠାଇ ଆଣି ଅବାକ୍ ଆଖିରେ ପରଖୁଥିଲୁ ତାର ରଙ୍ଗ ଓ କାରିଗରୀ । ଏଭଳି ଉଜ୍ଜ୍ୱଳ ଲାଲ୍‌ରଙ୍ଗ କେବେ କେଉଁଠି ଦେଖିନି । ଦେଖିନି ବି ଫୁଲଫୁଟା ପାଳଧୁଆ ଗଛଟିଏ ଆଉ କେବେ ଜୀବନରେ ।

ବୁଲୁ ଠିକ୍ କହିଥିଲା - ସିଏ ଥିଲା ଚମତ୍କାର ଏକ ଫୁଲର ଶୈଶବ ।

ଏବେ କିନ୍ତୁ ଘରେ ମଧୁମାଳତୀ ଫୁଟେନି । ବରଣ୍ଡାଟି ଘେରା ହୋଇ, ସେ ଜାଗାରେ ଅଧିକା ଦୁଇ ବଖରା କୋଠାଘର ତିଆରି ହୋଇଛି । କାମିନୀଗଛ ଓ ମଲ୍ଲିବୁଦାତକ ନିଶ୍ଚିହ୍ନ । ଅଗଣାର ସେଇ ସବୁ ସ୍ଥାନରେ ଏବେ ସିମେଣ୍ଟ ପଲସ୍ତରା । ଘର ସାମ୍ନାରେ ତିଆରି ହୋଇଥିବା ଗ୍ୟାରେଜ ଯୋଗୁଁ କାଟିବାକୁ ପଡ଼ିଛି ଚମ୍ପାଗଛଟି । ଏବଂ ରଙ୍ଗିନ୍ ପାଳଧୁଆ ଗଛତକ, ମୋର ରଙ୍ଗିନ୍ ଶୈଶବ ପରି, ଏବେ ମୃତ ।



# ବିଶିଷ୍ଟ ମଣିଷଟି ପାଇଁ

ମୋ' କଳ୍ପନାପ୍ରବଣ କିଶୋରୀମନର ଅଳିନ୍ଦରେ କଦବା କେମିତି ଉଙ୍କି ମାରୁଥିବା ସେଇ ସ୍ୱପ୍ନର ରାଜକୁମାର ପରି ସିଏ ଝଲମଲ୍ ଜରିଲଗା ପୋଷାକ ପିନ୍ଧି କିମ୍ବା ଉଡ଼ନ୍ତା ପକ୍ଷୀରାଜ ଘୋଡ଼ା ପିଠିରେ ସବାର ହୋଇ ଆସି ନ ଥିଲେ । ଆସିଥିଲେ ନିହାତି ଗଦ୍ୟମୟ ଭାବରେ - ଚାଲିଚାଲି, ପଦବ୍ରଜରେ । ପୋଷାକ ଥିଲା ସାଧାରଣ ଧଳା ରଙ୍ଗର ଫୁଲ୍‌ପ୍ୟାଣ୍ଟ୍ ଓ ଅଲିଭଗ୍ରୀନ୍ ରଙ୍ଗର ସୂତାକନାର ବୁସ୍‌ସାର୍ଟ । ହାତରେ ଘଡ଼ିଟିଏ ବି ବନ୍ଧା ହୋଇନଥିଲା । କୌତୂହଳ ସମ୍ବରଣ କରିନପାରି ଉପର ମହଲା ମଝିଘର ଝରକାର ଫାଙ୍କ ଦେଇ ମୁଁ ଗେଟ୍ ଆଡ଼କୁ ଚାହିଁ ଠିଆ ହୋଇ ରହିଥିଲି ସିଏ ଆସିଲା ବେଳକୁ । ଗେଟ୍ ଖୋଲି, ଆମ ଦାଣ୍ଡରେ ଥିବା ନିଘଞ୍ଚ ଓ ଛାୟାପ୍ରଦ ଚମ୍ପାଗଛତଳେ ଟରଟର ଚାଲିରେ ତାଙ୍କ ପିତାଙ୍କ ପଛେ ପଛେ ଆମ ଘରେ ପଶୁଥିବା ବେଳେ, ତାଙ୍କ ପୂରନ୍ତ ଗାଲର ଚେନାଏ ମୋତେ ଦିଶିଯାଇଥିଲା ମଧ୍ୟ । ଏବଂ ତଥାକଥିତ ବଡ଼ ଚାକିରି କରୁଥିବା ଯୁବକଟିର ଏତାଦୃଶ ସାଧାରଣ ବେଶଭୂଷା ଦେଖି ମୁଁ କିଞ୍ଚିତ୍ ଆଶ୍ଚର୍ଯ୍ୟ ହୋଇଥିଲି ।

ତା' ପୂର୍ବଦିନ, ଆମେ ସବୁ ଅପେକ୍ଷା କରି ରହିଥିଲୁ ତାଙ୍କ ପାଇଁ । ତାଙ୍କ ପିତା ଚିଠି ଲେଖିଥିଲେ - ସନ୍ଧ୍ୟାରେ ପୁତ୍ରକୁ ସାଥିରେ ଧରି ଆମ ଘରକୁ ଆସିବେ ବୋଲି । ବାପାବୋଉ ବେଶ୍ ଉତ୍ତେଜନାର ସହିତ ଅପେକ୍ଷା କରି ରହିଥିଲେ ତାଙ୍କ ଆଗମନକୁ । କ୍ଷୀର ସାଗର କିଣା ହୋଇ ଆସିଥିଲା ସୁଇଟ୍ ଷ୍ଟଲ୍‌ରୁ । ବାପାବୋଉ ଓ କୁନିକୁନି ଭାଇଭଉଣୀସବୁ ବ୍ୟଗ୍ର ଆଖିରେ ଅନାଇଁ ରହିଥିଲେ ଗେଟ୍‌ଆଡ଼େ । ରାତି ଦଶଟା ପର୍ଯ୍ୟନ୍ତ । କିନ୍ତୁ ସେମାନେ ଆସିନଥିଲେ । ଉତ୍ତେଜନା ଫିକା ପଡ଼ିଯାଇଥିଲା । ମନେ ମନେ ଭାବିଥିଲି, ସାମାନ୍ୟ ବିରକ୍ତିର ସହିତ - କି ଲୋକ ଏମାନେ ! କଥାର ଠିକ୍ ନାହିଁ ।

ତା' ପରଦିନ ନିଦରୁ ଉଠିଲାବେଳକୁ ବାପା ଘରେ ନ ଥିଲେ ।

- ବୋଉ, ବାପା କୁଆଡ଼େ ଯାଇଛନ୍ତି ? ବୋଉକୁ ପଚାରିଲି ।

- ବାପା ମହାପାତ୍ରବାବୁଙ୍କ ସାଙ୍ଗରେ ଦଟକ ହୋଟେଲ୍ ଯାଇଛନ୍ତି, ବୋଉ କହିଲା । ଜାଣିଥିଲି ଆମ ପଡ଼ୋଶୀ ଶ୍ରୀ ମହାପାତ୍ର ଥିଲେ ତାଙ୍କ ପରିବାର ସହିତ ଘନିଷ୍ଠ ଭାବରେ ପରିଚିତ । ବୋଉ କଥା ଶୁଣି କିନ୍ତୁ ମୁଁ ଗୁମ୍ ହୋଇ ବସିରହିଲି । ବାପା ଆଗତୁରା ସେମାନଙ୍କ ପାଖକୁ ଯିବାଟା ମୋର ପସନ୍ଦ ହେଲାନି ।

ବୋଉ ପୁଣି କହିଲା - ମହାପାତ୍ର ବାବୁ ସେମାନଙ୍କୁ ଆମ ଘର ଠିକଣା ଦେଇଥିଲେ ତ ! ସକାଳେ ଏଇବାଟେ ଚାଲିଗଲା ବେଳେ ପଚାରିବାକୁ ଆସିଥିଲେ ସେମାନେ ଆସିଲେ ନା ନାଇଁ । କହିଲେ ନିଶ୍ଚୟ କିଛି ଅସୁବିଧା ହେଇଥିବ । ସିଏ ଜାଣନ୍ତି ସେମାନେ

କଟକ ହୋଟେଲ୍‌ରେ ରହୁଛନ୍ତି ବୋଲି । ତେଣୁ ବାପାଙ୍କୁ ସାଥିରେ ଧରି ଯାଉଛନ୍ତି ଖବର କରିବା ପାଇଁ । ହୋଟେଲ୍‌ଟା ତ ଜମାରୁ ପାଞ୍ଚ ମିନିଟର ବାଟ ଏଠୁ ।

ବୋଉ ମୁହଁରୁ କଥା ନ ସରୁଣୁ ବାପା ଆସି ପହଞ୍ଚିଗଲେ ଘରେ ।

- କଅଣ ହେଲା ? ଦେଖା ହେଲା ? ବୋଉ ଆଗ୍ରହର ସହିତ ପଚାରିଲା ।

- ହଁ, ହଁ, ଏଇଲେ ସାଙ୍ଗେ ସାଙ୍ଗେ ସେମାନେ ଆସୁଛନ୍ତି । ଏଇ ଘଣ୍ଟାକ ଭିତରେ । ବାପା ଜବାବ୍ ଦେଲେ ।

- କାଲି କଅଣ ହେଲା ? ଆସିଲେନି କାହିଁକି ? ବୋଉ ପଚାରିଲା ।

- କହୁଥିଲେ କାଲି କୁଆଡ଼େ ପୁରୀ ଯାଇଥିଲେ । ସନ୍ଧ୍ୟା ଆଗରୁ ଫେରି ଆସିବାର କଥା ଥିଲା । ଆସୁ ଆସୁ କିନ୍ତୁ ଅନେକ ରାତି ହେଇଗଲା । ଯେଉଁ ଭଦ୍ରଲୋକଙ୍କ ଘରକୁ ଯାଇଥିଲେ, ସିଏ କୁଆଡ଼େ ଜୋର କଲେ ତାଙ୍କ ଘରେ ରାତ୍ରିଭୋଜନ କରି ଆସିବା ପାଇଁ । ତାଙ୍କରି ଡ୍ରାଇଭର୍‌ଇ ରାତିରେ ଆଣି ଏମାନଙ୍କୁ କଟକରେ ଛାଡ଼ି ଦେଇଗଲା ।

- ପୁରୀ ? ପୁରୀ କାହିଁକି ଯାଇଥିଲେ ? ବୋଉ ଭ୍ରୁକୁଞ୍ଚିତ କରି ପଚାରିଲା ।
- କେଜାଣି ? ହେଲେ ମହାପାତ୍ର ବାବୁ ସନ୍ଦେହ କରୁଛନ୍ତି ବୋଧହୁଏ ଝିଅ ଦେଖିବାକୁ ଯାଇଥିଲେ ବୋଲି । ହୁଏତ ସେଠି ସମ୍ବନ୍ଧ ପଡ଼ିଥିବ । ବାପା ଉତ୍ତର ଦେଲେ ଓ ବୋଉ ଚୁପ୍ ହୋଇଗଲା । କିଛି ମାତ୍ରାରେ ଚିନ୍ତାନ୍ୱିତ ହେଲା ମଧ ।

ଏବଂ ମୁଁ ବାପାଙ୍କ ଉପରେ ରାଗିଗଲି । "ତମେ କାହିଁକି ଏତେ ସକାଳୁ ସକାଳୁ ହୋଟେଲ ଯାଉଥିଲ ଯେ ! ତୁଛାଟାରେ କାଲି ସାରା ସନ୍ଧ୍ୟା ହଇରାଣ ବି ହେଲ ।" ମୁଁ ବାପାଙ୍କୁ କହିଲି ।

- ନା, ନା କାଲି ସନ୍ଧ୍ୟାରେ ନ ଆସିପାରିଥିବା ଯୋଗୁଁ ଉଭୟ ପିତାପୁତ୍ର ବହୁତ ଦୁଃଖପ୍ରକାଶ କଲେ । ପିଲାଟି ଅତ୍ୟନ୍ତ କୁଣ୍ଠିତ ଭଙ୍ଗୀରେ ଭୁଲ୍ ହୋଇଯାଇଛି ବୋଲି କହିଲା । ଭାରି ଭଦ୍ରପିଲାଟିଏ । ଏଭଳି ଭଦ୍ର ଆଚରଣ କ୍ୱଚିତ୍ ଦେଖିବାକୁ ମିଳେ । ବାପା ବୋଉକୁ କହିଲେ ମୋତେ ଶୁଣାଇ ଶୁଣାଇ ।

ଏବଂ ବାପାଙ୍କ କଥା ପରେ ପରେଇ କଲିଙ୍ଗ୍‌ବେଲ୍‌ର ଘଣ୍ଟିବାଜିଉଠିଲା ବାହାରେ । ଆମେ କିଛିମାତ୍ରାରେ ସଚେତନ ହେଲୁ । ବାପା ପିଣ୍ଡାରୁ ଉଠି ତରବର ହୋଇ ଗଲେ ଦାଣ୍ଡଘରର କବାଟ ଫିଟାଇବା ପାଇଁ । ଏବଂ କବାଟ ବନ୍ଦ କରି ଫେରିଆସିଲେ ପ୍ରାୟ ପାଞ୍ଚମିନିଟ୍ ପରେ ।

- କିଏ ଆସିଲା ପୁଣି ? ବୋଉ ପଚାରିଲା ।

- ସେ ପିଲାଟିର ପିତା ଆସିଥିଲେ । ଫେରିଗଲେ ସାଙ୍ଗେ ସାଙ୍ଗେ । ବାପା ଜବାବ୍ ଦେଲେ ।

- ଫେରିଗଲେ ? ଆସିଥିଲେ କାହିଁକି ? ଆଉ ତାଙ୍କ ପୁଅ ? ବୋଉ ଅବାକ୍ ଆଖିରେ ପ୍ରଶ୍ନ କଲା ।

- ପୁଅକୁ ଧରିକି ଆସିବେ ଘଣ୍ଟାକ ଭିତରେ । ଗାଧୁଆ ପାଧୁଆ ସାରି । ଏବେ ଏକା ଆସିଥିଲେ । ବାପା କହିଲେ ।

- ଏକା ? କାହିଁକି ? କଅଣ ହେଲା ପୁଣି ? ବୋଉକୁ ପୂରା ଘଟଣାଟି ପ୍ରହେଳିକା ପରି ମନେହେଲା ।

- ବାପା ସାମାନ୍ୟ ହସିଲେ । ବୋଉ ଆଡ଼େ ଅନାଇଁ କହିଲେ "ମୁଁ ତମକୁ କହୁଥିଲି ନା ! ଅତ୍ୟନ୍ତ ଭଦ୍ରଲୋକ ସେମାନେ । କାଲି କଥାଦେଇ ନ ଆସି ପାରିବା ଯୋଗୁଁ ପିତାପୁତ୍ର ଦିହେଁ ଭାରି ମର୍ମାହତ ହୋଇଛନ୍ତି । ଭଦ୍ରଲୋକଙ୍କୁ ତାଙ୍କ ପୁଅ ପଠାଇଥିଲେ ଆମଘରକୁ ନିଜେ ଆସି କାଲିର ଅନୁପସ୍ଥିତି ଯୋଗୁଁ କ୍ଷମା ପ୍ରାର୍ଥନା କରିଯିବାଲାଗି । ହୋଟେଲ୍‌ଟା ଏଇଠି ପାଖରେ ତ ! ମୋ' ପଛେ ପଛେ ଚାଲିଆସିଛନ୍ତି ଭଦ୍ରଲୋକ ।

- ଆହା ! ଏଭଳି ଭଲଲୋକ ପୁଣି ଅଛନ୍ତି ପୃଥିବୀରେ ? ବୋଉ ମନକୁ ମନ କହିଲା । କହିବା ବାହୁଲ୍ୟ ଯେ ଅତିଥିଦ୍ୱୟଙ୍କର ଏତାଦୃଶ ଭବ୍ୟ ଓ ଶୋଭନ ଆଚରଣରେ ବୋଉ ମାତ୍ରାଧିକ ପରିମାଣରେ ମୁଗ୍ଧ ହେଇଥିଲା ।

ଏବଂ ଏହାର କିଛି ସମୟ ପରେଇ ଆସି ପହଞ୍ଚିଲେ ସେମାନେ - ପିତା ଓ ପୁତ୍ର । ନିରୀହ ଓ ଥଣ୍ଡାମିଜାଜ୍‌ର ବୃଦ୍ଧ ଭଦ୍ରବ୍ୟକ୍ତିଜଣକ ମୋ ପାଠକଥା ଓ କଲେଜ କଥା ପଚାରିଲେ ମୋତେ । ମୋ ଲେଖାଲେଖି କଥା ମଧ । ଶୁଣିଥିଲେ ମୁଁ କବିତା ଲେଖେ । ଓଡ଼ିଶା ଛାଡ଼ି ବାହାରକୁ କେବେ କୁଆଡ଼େ ଯାଇଛି ନା ନାହିଁ ଜାଣିବାକୁ ଚାହିଁଲେ । ଏକଥା ମଧ ଜଣାଇ ଦେଲେ ଯେ ତାଙ୍କ ପୁତ୍ରଙ୍କର ଉଚ୍ଚତର ଶିକ୍ଷା ଓ ଚାକିରି - ଉଭୟ ଓଡ଼ିଶା ବାହାରେ, ଅନ୍ୟପ୍ରଦେଶରେ ।

ତାଙ୍କର ଯୁବକ ପୁତ୍ରଜଣକ ଚୁପ୍‌ଚାପ୍ ବସିରହିଥିଲେ ଚୌକୀରେ । ମୋ ବାପାଙ୍କ ସହିତ ଟୁକ୍‌ଡ଼ା ଟୁକ୍‌ଡ଼ା କଥା ହେଉଥିଲେ ମଝିରେ ମଝିରେ । କଥା କହୁଥିଲେ ଇଂରାଜୀରେ । ବୋଧହୁଏ ବର୍ଷ ବର୍ଷ ଓଡ଼ିଶା ବାହାରେ ରହିବା ହେତୁ ଇଂରାଜୀ କହିବାଟା ଏକରକମ ଅଭ୍ୟାସରେ ପଡ଼ିଯାଇଥିଲା । ଏତିକିବେଳେ ମୋ' ସାନଭାଇ ଆସି ଗପ ଯୋଡ଼ିଦେଲା ତାଙ୍କ ସହିତ । ସ୍ୱଭାବରେ ଥିଲା ଚଗଲା ।

ଗପ କରୁକରୁ ତାଙ୍କୁ ଚିଡ଼େଇଲା - ଜାଣନ୍ତି ? ପୋଲିସ୍‌ମାନେ ହେଲେ ଅସଲ ଚୋର । ଚୋରଠୁ ବଳିକରି । ଏବଂ ଆଶ୍ଚର୍ଯ୍ୟ କଥା ସିଏ ରାଗିଲେନି । ମୃଦୁଭାବରେ ହସିଲେ ଟିକିଏ । କିଶୋର ବାଳକଟିର ବାଚାଳତାରେ କିଛିଟା କୌତୁକ ବୋଧ କରି ବୋଧହୁଏ । ଦିଆଯାଇଥିବା ଜଳଖିଆରେ ହାତ ଦେଲେନି । ଚା' କପ୍‌ରୁ ଢ଼ୋକେ ପିଇ ଆଡ଼େଇ ରଖିଲେ କପ୍‌ଟି ।

ସେମାନେ ଚାଲିଗଲା ପରେ କକେଇ ଆସି ପହଞ୍ଚିଲେ ଘରେ । ସକାଳୁ ସକାଳୁ ଥଳି ଧରି ବଜାର ଯାଇଥିଲେ ପରିବା କିଣି । ବୋଉ କହିଲା - ଦେବେନ୍ଦ୍ରବାବୁ । ତମେ ଦେଖିପାରିଲନି । ଏଇଲେ ବାପପୁଅ ଦିହେଁ ଆସିଥିଲେ ।

- କଟକ ହୋଟେଲ୍‌ରେ ଅଛନ୍ତି ନା ? ମୁଁ ଯାଉଛି ତା ହେଲେ ଦେଖା କରି ଆସିବି । ମୁଣିରୁ ଗଳ୍‌ଗଳ୍ କରି ଆଳୁ ବାଇଗଣ କୁଲାରେ ଢ଼ାଳୁ ଢ଼ାଳୁ କକେଇ ଜବାବ୍ ଦେଲେ ।

କକେଇ ହୋଟେଲ୍‌ରୁ ଫେରିଆସିଲେ ଅଧଘଣ୍ଟାଏ ପରେ ।

- କେମିତି ଦେଖିଲ ? ବୋଉ ପଚାରିଲା ।

- ଓଃ ! ଭାରି ବଢ଼ିଆ ପିଲା । ମତେ ଆମ୍‌ଲେଟ୍ ଓ କଫି ଖାଇବାକୁ ଦେଲେ । କାଲି ନ ଆସି ପାରିଥିବା ଯୋଗୁଁ ବାରମ୍ବାର କ୍ଷମା ମାଗି ଲାଗିଲେ । କକେଇ ଦିଲ୍‌ଖୁସ୍ ହସ ହସି ଭାଉଜ ସାଥିରେ ଗପ ଯୋଡ଼ିଲେ । ଡ୍‌ବଲ୍ ଆମ୍‌ଲେଟର ସ୍ୱାଦ ପାଟିରୁ ପୂରାପୂରି ନିଶ୍ଚିହ୍ନ ହେବାପର୍ଯ୍ୟନ୍ତ ।

ଏବଂ ତାର ଦୁଇଦିନ ପରେ ସିଏ ଫେରିଗଲେ ତାଙ୍କ ପିତାଙ୍କ ସହିତ । ପନ୍ଦର ଦିନ ପରେ ପୁଣି ଥରେ ଆସି ମୋତେ ସାଥିରେ ତାଙ୍କ ଘରକୁ ନେଇ ଯିବାପାଇଁ ଅଙ୍ଗୀକାରବଦ୍ଧ ହୋଇ । ବାପା ତାଙ୍କୁ ଉପହାର ଦେଲେ ସୁନାମୁଦିଟିଏ, ଆଉ ତା ସହିତ ପ୍ରଚୁର ଆଶୀର୍ବାଦ ।

ଷ୍ଟେସନ୍‌ରେ ତାଙ୍କୁ ବିଦାୟ ଜଣାଇ ବାପା ଫେରିଆସିଲେ ବେଶ୍ ରାତିରେ । ପିଣ୍ଡାରେ ଚଉଡ଼ାପିଢ଼ାରେ ବସି ଭୋଜନ କଲାବେଳେ ବୋଉ ଆସି ପାଖରେ ବସି ଶଙ୍କାକୁଳ କଣ୍ଠରେ କହିଲା - ଭାରି ଶୀଘ୍ର ସବୁକଥା ଠିକ୍ ହୋଇଗଲା । ଖବରାଖବର ତ ଭଲକରି କିଛି କରିପାରିଲେନି । ଖାଲି ଯାହା ମହାପାତ୍ରବାବୁଙ୍କଠୁ ଶୁଣିବା କଥା ସବୁ ଭଲ ବୋଲି ।

- ଚମତ୍କାର ପିଲାଟିଏ । ଯା'ଠୁ ଅଧିକା ଆଉ କଅଣ ବା ଆଶା କରିଥାଆନ୍ତେ ଆମେ ? ଉଚ୍ଚଶିକ୍ଷିତ । ସର୍ବଭାରତୀୟ ଚାକିରୀ । ବାପା କ୍ଷୀରରେ ରୁଟି ବୁଡ଼ାଇ ବୁଡ଼ାଇ ଜବାବ୍ ଦେଲେ ।

- ତେବେ ବି, କେଜାଣି କାହିଁକି ବ୍ୟସ୍ତ ଲାଗୁଛି । ହଉ, ଯାହା ମୋ ଝିଅ କପାଳରେ ଥିବ । ବୋଉ କାନ୍ଦ କାନ୍ଦ ସ୍ୱରରେ କହିଲା ।

- କାହିଁକି ବ୍ୟସ୍ତ ହେଉଚ ? ମୁଁ ଜାଣେ, ଝିଅ ଆମର ଭାରି ଭଲରେ ରହିବ । କିଛି ଅସୁବିଧା ହବନି ତାର । ମୁଁ ଜାଣେ । ବାପା କହିଲେ ।

- ତମେ ପୁଣି କେମିତି ଜାଣିଲ ଏବେଠୁ ? ବୋଉ ଉଦ୍‌ଗତ କ୍ରନ୍ଦନର କୋହକୁ ରୋକି ପଚାରିଲା ।

- ମୁଁ କହୁଛି ପରା ମୁଁ ଜାଣିଛି । ସେ ପିଲା କହିକି ଯାଇଛି ମୋତେ ।

- କହିକି ଯାଇଛି ? କଅଣ କହିଛି ? କେତେବେଳେ କହିଲା ? ମୋଉ ଏକରକମ୍ ବ୍ୟସ୍ତ ହୋଇ ପଡ଼ିଲା ।

- କହିଛି ମୋତେ । ଏଇଲେ ଷ୍ଟେସନ୍‌ରେ । ଠିକ୍ ଗାଡ଼ି ଛାଡ଼ିଲା ଆଗରୁ । ମୋତେ କହିଲା, "ଆପଣଙ୍କ ମୁହଁରୁ ଜଣାପଡୁଛି ଆପଣ ଝିଅପାଇଁ ଭାରି ଚିନ୍ତାକୁଳ ଓ ବିବ୍ରତ । ଆପଣ ମୋର ବୟୋଜ୍ୟେଷ୍ଠ । କଅଣ ବା କହିବି ? ତେବେ ବି ଆପଣଙ୍କ ମାନସିକ ସ୍ଥିତି ଦେଖି ବିନମ୍ରତାର ସହିତ କହିବାକୁ ବାଧ ହେଉଛି । ଆପଣଙ୍କ ଝିଅକୁ ଗାଡ଼ିମଟର, କୋଠାବାଡ଼ି ବା ଅଚଳାଚଳ ସଂପତ୍ତି ହୁଏତ ମୁଁ ନ ଦେଇପାରେ । କିନ୍ତୁ ସ୍ନେହମମତା ଊଣା ହେଲା ବୋଲି ଅନୁଶୋଚନା କରିବାର ସୁଯୋଗ ସିଏ ଯେ ଜୀବନରେ କେବେହେଲେ ପାଇବନି, ଏ ସଂପର୍କରେ ମୁଁ ନିଶ୍ଚିତ ।

- ଏଇଆ କହିଲା ତମକୁ ? ସତରେ ? ବୋଉ ହସହସ ମୁହଁରେ ଅବିଶ୍ୱାସ ଓ କୌତୁକର ଭଙ୍ଗୀ ଫୁଟାଇ କହିଲା । ବାପା ପୋଟଳ ଭଜା ଚୋବାଉ ଚୋବାଉ ମୁଣ୍ଡ ଟୁଙ୍ଗାରିଲେ ।

- ବାୟା ପିଲାଟିଏ । ଭାରି ସଫାମନ ଓ ଖୋଲାସ୍ୱଭାବ । ଛନ୍ଦକପଟ ଜଣାନାହିଁ । ବାତ୍ସଲ୍ୟରେ ଜୁଡୁବୁଡୁ ହୋଇଉଠିଲା ବୋଉର କଣ୍ଠ । ଏବଂ କବାଟ କଣରେ ଠିଆହୋଇ ବାପାବୋଉଙ୍କର କଥୋପକଥନ ଶୁଣୁ ଶୁଣୁ, ଆବେଗର ଉଚ୍ଛ୍ୱାସରେ, ମୋର ଅନଭିଜ୍ଞ ଓ କୋରା କିଶୋରୀହୃଦୟଟି ତାର ଛନ୍ଦ ଓ ତାଳ ଭୁଲି କ୍ଷଣକପାଇଁ ବିଛନ୍ଦ ଓ ବେତାଳ ହୋଇ ଉଠିଲା ମଧ୍ୟ ।

ଆଜିକାଲି ବେଳେବେଳେ ମୁଁ ତାଙ୍କୁ ପରିହାସ କରି କହେ - ଯାହା ସବୁ ଦେବାର କଥା ନ ଥିଲା, ସେ ସବୁ ଜିନିଷ ମତେ ଦେଇଦେଲ । ଗାଡ଼ି, ଘର ଇତ୍ୟାଦି ଇତ୍ୟାଦି । କିନ୍ତୁ ଯେଉଁ ଜିନିଷଟି ଦେବ ବୋଲି ମୋ ବାପାଙ୍କ ଆଗରେ ପ୍ରତିଜ୍ଞାବଦ୍ଧ ହେଇଥିଲ ସେଇ ଜିନିଷଟି ଗଲା କୁଆଡ଼େ ? ତମ ଭଲପାଇବା ?

ସିଏ କିଛି କହନ୍ତିନି । ପଢୁଥିବା ଖବର କାଗଜରୁ ମୁହଁ ଉଠାଇ ମୋତେ ଚାହିଁ ସାମାନ୍ୟ ହସନ୍ତି ମାତ୍ର । ହୁଏତ ଏଇଟାଇ - ଏଇ ମୁହଁ ଉଠାଇ ମୁହୂର୍ତ୍ତକପାଇଁ ମୋତେ ଚାହିଁ ଟିକିଏ ମୃଦୁଭାବରେ ହସିବାଟାଇ ଭଲପାଇବା । ତା ପୁଣି ସଂପର୍କ ଗଢିଉଠିବାର ଦୀର୍ଘ ପଇଁତିରିଶ ବର୍ଷ ପରେ ।



# ଗୋଟିଏ ମଦ୍ୟପର କାହାଣୀ

ଶହୀଦନଗରସ୍ଥିତ ସୁସଜ୍ଜିତ କଲ୍ୟାଣମଣ୍ଡପରେ, ଅଜସ୍ର ହଟ୍ଟଗୋଳ ତଥା ମଣିଷମାନଙ୍କର ଭିଡ଼ ଭିତରେ ଠିକ୍ ଯେତେବେଳେ ପିୟୁର ହାତଗଣ୍ଠି ପଡ଼ିବା ପାଇଁ ଯାଉଛି, ଠିକ୍ ସେତିକିବେଳେ, ନିଜଆଡ଼କୁ ଦୃଷ୍ଟି ଆକର୍ଷଣ କରିବା ପ୍ରୟାସରେ, ସ୍ୱ କୃଷ୍ଣକାୟ ତର୍ଜନୀଟି ବଢ଼ାଇ ମୋ' ସାମ୍ନାରେ ଠିଆ ହୋଇଥିବା ମୋ ପ୍ରୌଢ଼ଭାଇଟିର ସାର୍ଟପିନ୍ଧା ପୃଷ୍ଠଦେଶକୁ ଧନୁର୍ଦ୍ଧର ଦୁଇଥର ସନ୍ତର୍ପଣରେ ସ୍ପର୍ଶକଲା ଏବଂ ଭାଇ ପଛକୁ ଫେରି ନୀରବରେ ତା' ଆଡ଼କୁ ବଢ଼େଇ ଦେଇଥିବା କୋଡ଼ିଏଟଙ୍କିଆ ନୋଟ୍‌ଟି ଧରି ବିବାହମଣ୍ଡପରୁ ଅଚିରେ ଅନ୍ତର୍ଦ୍ଧାନ ହେଲା ।

ଧନୁର୍ଦ୍ଧରର ଏତାଦୃଶ ରହସ୍ୟମୟ କାର୍ଯ୍ୟକଳାପ ସେ ସମୟରେ ଅନ୍ୟ କାହାରି ଦୃଷ୍ଟିଗୋଚର ନ ହେଉଥିଲେ ବି ମୋ ଆଖିରେ ପଡ଼ିଥିଲା । କାରଣ ତାର ଏଇ ତର୍ଜନୀକୃତ ଇଙ୍ଗିତର ଅର୍ଥ ମୁଁ ବୁଝିଥିଲି । ବୁଝିଥିଲି ଯେ ସକାଳପହରୁ ବିନା ସୋମରସରେ ଉପାସିଆ ରହିଥିବା ଧନୁର୍ଦ୍ଧରର ଅବସ୍ଥା ବର୍ତ୍ତମାନ ସଙ୍ଗୀନ୍ ଏବଂ ତୁରନ୍ତ କୌଣସି ଦେଶୀମଦର ଆଡ୍‌ଡାସ୍ଥାନକୁ ଯାଇ ଦୁଇଚାରି ଗ୍ଲାସ୍ ମହୁଲିରସ ଉଦରସ୍ଥ ନ କଲା ପର୍ଯ୍ୟନ୍ତ, ତା'ର ଶରୀରକୁ ଫୁର୍ତ୍ତିବାଜ୍ ତଥା କ୍ରିୟାଶୀଳ ରଖିବାରେ ସେ ଅସମର୍ଥ ।

ଧନୁର୍ଦ୍ଧର ଆମ ପରିବାରର ସମସ୍ତ ଶୁଭକାର୍ଯ୍ୟରେ ସହଯୋଗ କରୁଥିବା ନାପିତପ୍ରବର । ସବା ସାନଭାଇର ବାହାଘର ପାଇଁ ବେଦୀସରଞ୍ଜାମ ଧରି ବରଯାତ୍ରୀମାନଙ୍କ ସହିତ ଆସିଥିଲା କଟକରୁ ଭୁବନେଶ୍ୱର । ଓଡ଼ିଆ ଘରର ଚଳଣୀ ଅନୁଯାୟୀ, ବିଭାଘର ହେଉ ବା ବ୍ରତଘର, ସମସ୍ତ ପ୍ରକାର ମାଙ୍ଗଳିକ କାର୍ଯ୍ୟରେ ନାପିତଟିର ଉପସ୍ଥିତି ଏକାନ୍ତ ଜରୁରୀ ।

ଧନୁର୍ଦ୍ଧରର ମଦ୍ୟପାନ ଅଭ୍ୟାସଟି ସହିତ ମୁଁ ପରିଚିତ ହୋଇଥିଲି ମାତ୍ର କେଇମାସ ପୂର୍ବରୁ । ଥରେ ଘରକୁ ଯାଇ ଦେଖେ, ଭାଇ ଧୋତିଟିଏ ପିନ୍ଧି ବରଣ୍ଡା ଖଟରେ ଅଳସ ଭଙ୍ଗୀରେ ଶୋଇଛି ଏବଂ ଚିରାଗଞ୍ଜି ପିନ୍ଧା କଂକାଳସାର, ଶୀର୍ଣ୍ଣକାୟ ମଣିଷଟିଏ ବେଶ୍ ଉତ୍‌ଫୁଲ୍ଲ ଚିତ୍ତରେ ତାର ପାଙ୍ଗେମ ଆଙ୍ଗୁଳିଚାଳନା କରି ଭାଇର ସାରା ଦେହ ମାଲିସ୍ କରିଚାଲିଛି । ଭାଇଠାରୁ ମୋ'ର ପରିଚୟ ପାଇ ଲୋକଟି ଆସି ମୃଦୁହସି ଜୁହାର ହେଲା ମତେ । କୋରଡ଼ିଆ ଆଖିଡୋଳାକୁ ଖୁସିରେ ନଚାଇ କହିଲା – ନାନୀ, ମୁଁ ଧନୁ । ତମ ଘରର ଲାଗୁଆ ଭଣ୍ଡାରୀ । ତମେ ତ ଜୀବନଯାକ ରହିଲ ବାହାରେ ବାହାରେ । ମତେ ଆଉ ଚିହ୍ନିବ କୁଆଡୁ ?

ଭାଇକି ପଚାରିଲି - ଇଏ ଏମିତି ସକାଳୁ ସକାଳୁ ଆସି ତତେ ଘଷିମୋଡ଼ି ଲାଗିଚି ଯେ !

- ତୁ ଜାଣିନୁ କି ନାନୀ ? ସିଏ ହେଲା ଅସଲ ଢ଼େଙ୍କ ମଦୁଆ । ଯେତେବେଳେ ମଦ ପିଇବାକୁ ତା' ପାଖରେ ପଇସା ନ ଥିବ, ଆସିକରି ପହଞ୍ଚିଯିବ ମୋ' ପାଖେ । ଦେହମୁଣ୍ଡ ମାଲିସ କରିବା ବାହାନାରେ ଦଶପନ୍ଦରଟଙ୍କା ଝଡ଼େଇବ ମୋ'ଠୁ । ଆଉ ଯାଇକି ସେଇ ପଇସାରେ ମଦ ପିଇବ ।

- କଅଣ ଧନୁ, ଭାଇ ଯାହା କହୁଛି ସତ ? ମୁଁ କୌତୁକ କରି ପଚାରିଲି ।

ସରମରେ ତଳକୁ ଚାହିଁ ଧନୁ କହିଲା - ବାବୁ ମତେ ଭାରି ସୁଖ ପାଆନ୍ତି ନାନୀ । ଦରକାର ବେଳେ ପଇସାପତ୍ର ଦିଅନ୍ତି । ମିଛ କାହିଁକି କହିବେ ?

- ବୁଝିଲୁ ନାନୀ ! ମଦ ପିଇ ପିଇ ତା' ଶରୀର ଏବେ ପୂରାପୂରି ଅସାର । ଆରବର୍ଷ ମରୁ ମରୁ ବଞ୍ଚିଲା । ଦି' ମାସ କାଳ ହସ୍‌ପିଟାଲ୍‌ରେ ପଡ଼ିକି ଫେରିଛି । ଡ଼ାକ୍ତର କହିଛନ୍ତି ମଦ ତା' ପାଇଁ ଜହର ସଦୃଶ । ଡ଼ରିକି ମଝିରେ କଅଣ ଦି ଚାରିମାସ ଛାଡ଼ି ଦେଇଥିଲା । ପୁଣି ଧଇଲାଣି । ସକାଳୁ ଉଠିଲେ କିଏ ପାଣି ମନ୍ଦାକରେ କୁଳିକରେ । ଧନୁ କୁଳିକରେ ମଦରେ । ଭୋର୍‌ରୁ ଉଠି ଢ଼କ୍‌ଢ଼କ୍ କରି ଦି' ଗ୍ଲାସ୍ ଠର୍‌ରା ପିଏ । ନିଶା ନ ହେଲେ ମଗଜ କାମ କରେନି ତା'ର ।

ଭାଇକଥା ଶୁଣି ଲୋକଟିକୁ ନିରେଖି ଦେଖିଲି । ରୋଗଗ୍ରସ୍ତ ଦୁର୍ବଳ ଚେହେରା । ସାରା ଦେହ ତାର କୋରି ଆଣିଲେ ପଳେ ମାଂସ ବାହାରିବ କି ନାଇଁ ସନ୍ଦେହ । ଅଭିବ୍ୟକ୍ତିଟି କିନ୍ତୁ ଭାରି ନିରୀହ । ଆଖିର ତାରାରେ ଓ ମୁହଁର ହସରେ ନିଷ୍କପଟ ସାରଲ୍ୟର ଝଲକ ।

ମୋ' ମନକଥା ବୁଝିପାରିଲା ପରି ଭାଇ କହିଲା - ଲୋକଟା କିନ୍ତୁ ଭାରି ସତ୍ ଓ ସଚ୍ଚୋଟ୍ । ନିପଟ ବୋକାଟାଏ ମଧ୍ୟ । ଏତିକି କହି ଭାଇ ବେଶ୍ ଉଚ୍ଛଳଭାବରେ ହସିବାକୁ ଆରମ୍ଭ କଲା । କଅଣ ହେଲା ? ଏତେ ହସୁଚୁ ଯେ' ! ଉତ୍କଣ୍ଠିତ ହେଇ ପଚାରିଲି । ଉତ୍ତରରେ ଭାଇ ସଦ୍ୟ ଘଟିଥିବା ଏବଂ ଧନୁର୍ଦ୍ଧରର ବୋକାମି ସାବ୍ୟସ୍ତ କରୁଥିବା ଚମତ୍କାର ଉପାଖ୍ୟାନଟିଏ ଶୁଣାଇଥିଲା ମୋତେ ।

କେଇମାସ ତଳର ଘଟଣା । କୌଣସି ଏକ କେସ୍‌ରେ ସାକ୍ଷୀସ୍ୱରୂପ ଏସ୍.ଡ଼ି.ଜେ.ଏମ୍‌ଙ୍କ କୋର୍ଟରେ ଉପସ୍ଥିତ ରହିବା ପାଇଁ ଡ଼ାକରେ ଚିଠିଟିଏ ଆସିଥିଲା ଧନୁପାଖକୁ । ଇଂରାଜୀ ଭାଷାରେ ଲେଖା ଚିଠିଟି ଓଡ଼ିଆରେ ତର୍ଜମା କରି ବୁଝେଇଦେବା ଲାଗି ଭାଇପାଖକୁ ଆସିଥିଲା ଧନୁର୍ଦ୍ଧର । କୋର୍ଟରେ ଯାଇ ହାଜିରା ଦେବା କଥା ଭାଇ

ତାକୁ ବୁଝେଇଦେଲା ମଧ୍ୟ । ଧନୁ କିନ୍ତୁ ଯା' ପରେ ପରେ ବେଶ୍ ଚିନ୍ତାଶୀଳ ହେଇପଡ଼ିଲା । ଭାଇକି ପଚାରିଲା - ଆଜ୍ଞା, ମତେ ଭାରି ଡ଼ର ଲାଗୁଛି । ହଠାତ୍ ହାକିମ କାହିଁକି ଡ଼ାକିଲେ ମତେ ? ମୋ' ଭଳିଆ ଛାର ଲୋକପାଖରେ କଅଣ ବା ତାଙ୍କର କାମ ?

ଭାଇ କୌତୁକ କାରିବାର ଲୋଭ ସମ୍ବରଣ କରି ନ ପାରି କହିଲା - ତମ ପାଖରେ ଆଉ କାହାର କଅଣ କାମ ? ତମ କାମତ କ୍ଷିଅର କରିବା । ସେଇଆ ହେଇଥିବ ଅବା ।

ବୋକା ଧନୁର୍ଦ୍ଧର କିନ୍ତୁ ଭାଇକଥାର ଅନ୍ତର୍ନିହିତ ପରିହାସର ସ୍ୱରଟିକୁ ଧରିପାରିନଥିଲା । ନିର୍ଦ୍ଦିଷ୍ଟ ତାରିଖରେ ଏବଂ ନିର୍ଦ୍ଦିଷ୍ଟ ଦପ୍ତରରେ ଯାଇ ହାଜିର୍ ହେଇଥିଲା ସ୍ୱ ଭଣ୍ଡାରୀମୁଠିଟି ହାତରେ ଧରି । ଉପସ୍ଥିତ ସମସ୍ତ କର୍ମଚାରୀଙ୍କୁ ତାର ଆସିବାର ଅଭିପ୍ରାୟଟି ମଧ୍ୟ ପ୍ରାଞ୍ଜଳ ଭାବରେ ବୁଝାଇ' ଦେଇଥିଲା ।

- ଧନୁ, ସତରେ ଏଇଆ କରିଥିଲ ? କଅଣ କହିଲେ ସେଠା କର୍ମଚାରୀମାନେ ? ମୁଁ ହସି ହସି ପଚାରିଲି ।

- କଅଣ ଆଉ କହିବେ ନାନୀ ? ତମେ ଯେମିତି ହସୁଚ, ସେଇମିତି ସବୁ ହସିଲେ । ସେଦିନ କିନ୍ତୁ ଶୁଣାଣି ହେଲାନି । ହାକିମ ଆଉ ଗୋଟେ ତାରିଖ ପକେଇଲେ । ଲେଉଟି ଆସିଲି ।

ଆମର ଏଇ କଥୋପକଥନ ଭିତରେ, ଧନୁର ମାଲିସ୍ ପର୍ବଟି ଶେଷ ହେଇ ଯାଇଥିଲା । ଭାଇଠାରୁ ପନ୍ଦରଟି ଟଙ୍କା ନେଇ ଧନୁ ଯିବାକୁ ବାହାରିଛି, ମୁଁ ତାକୁ କହିଲି - ଧନୁ, ମୁଁ ଗୋଟିଏ ଖବର କାଗଜରେ ପ୍ରତି ରବିବାର ଦିନ ଗୋଟିଏ ଲେଖାଁଏ ଲେଖା ଲେଖେ । ଆସନ୍ତା ଲେଖାଟି ତମକୁ ନେଇ ଲେଖିବି ବୋଲି ଭାବୁଛି । ହେଲେ ମୁଁ ତ ତମ ବିଷୟରେ କିଛି ଜାଣେନି । ତମ କାହାଣୀ ମୂଳଠୁ କହିବ ମତେ ? ଚମତ୍କାର ଗପଟିଏ କିନ୍ତୁ ହବ ତମ ବିଷୟରେ ଲେଖିଲେ ।

ଧନୁ ଯାହା ଯିବାଲାଗି ଉଦ୍ୟତ ହେଉଥିଲା, ମୋ' କଥା ଶୁଣି ଚଟାଣରେ ବସିପଡ଼ିଲା ଚକାମାଡ଼ି । ତାକୁ ନାୟକ କରି ଯେ ଗୋଟିଏ ଗପ ଲେଖାଯାଇପାରେ, ଏ ପ୍ରସ୍ତାବଟି ଥିଲା ତା ପାଇଁ ବେଶ୍ ଉତ୍ତେଜନାପୂର୍ଣ୍ଣ । ମୁହଁକୁ ଖୁସିରେ ଝଲମଲ୍ କରି ପଚାରିଲା - ସତରେ ନାନୀ ? ଗପ ଲେଖିବ ମତେ ନେଇ ? ଛପା ହେଲେ ବହୁତ ଲୋକତ ପଢ଼ିବେ ସେ ଗପ !

- ନିଶ୍ଚୟ । ମୁଁ ଉତ୍ତର ଦେଲି ।

- ଯାହାହେଉ । ଭାଗ୍ୟକୁ ତମ ସାଥିରେ ଆଜି ଦେଖାହେଲା ବୋଲି ସିନା । ନାନୀ, ତମେ କାଗଜ କଲମ ନେଇଆସ । ମୁଁ ଯାହା କହୁଛି ସବୁ ଟିପି ରଖ । ନ ହେଲେ ଭୁଲିଯିବ । ଭଲକି ଲେଖିବ ମୋ କଥା ।

ମୁଁ କାଗଜ କଲମ ଆଣିଲି ଓ ମୋ ସାମ୍ନାରେ ବସି ପରମ ଆଗ୍ରହରେ ଧନୁ ବଖାଣିଲାଗିଲା ତା ଜୀବନଚରିତ । ଏକ ଅନାମଧେୟ ମଦ୍ୟପର କାରୁଣ୍ୟଭରା ଜୀବନଚରିତ । ଯଦିଓ କାହାଣୀଟି କହିଲା ବେଳେ କାରୁଣ୍ୟର ଲେଶମାତ୍ର ଛାପ ନ ଥିଲା ଧନୁ ମୁହଁରେ । ହସି ହସି ଏକ ରୂପକଥାର କାହାଣୀ ଶୁଣାଇଲା ପରି ତା ଜୀବନକାହାଣୀ ଶୁଣାଇଥିଲା ମତେ ।

ଧନୁର ଶୈଶବ ଥିଲା ମଧୁର ଓ ଶଙ୍କାହୀନ । ମା' ବାପା ଓ ସାନବଡ଼ ଦୁଇଭାଇ । ଧନୁର ବଡ଼ଭାଇ ଥିଲା ଧନୁଠାରୁ ଆଠବର୍ଷ ବଡ଼ । ଦିନ କଟୁଥିଲା ସୁରୁଖୁରୁରେ - ହସିଖେଳି ।

ଧନୁକୁ ଛଅବର୍ଷ ବେଳେ ତା ପିତାଙ୍କର ମୃତ୍ୟୁ । ଦୁଇବର୍ଷ ପରେ ମା'ଙ୍କର ସ୍ୱର୍ଗବାସ । ଭାଇଟି ବଡ଼ ହେଇଯାଇଥିଲା ସେତେବେଳକୁ । ଧରିଲା ବାପର ବେଉସା । ଦି' ପଇସା ରୋଜଗାର ବି କଲା । ଠିକ୍‌ଠାକ୍ ଚାଲିଲା ଦୁଇ ଭାଇଙ୍କର ସ୍ନେହଡ଼ୋରରେ ବନ୍ଧା ସାନ ସୁଖୀ ସଂସାର । ବଡ଼ଭାଇର ବାହାଘର ପରେ କିନ୍ତୁ ସେ ଡ଼ୋରର ଗ୍ରନ୍ଥି ହେଇଆସିଲା ଶିଥିଳ । ଭାଉଜ ମନାକଲା ପାଠ ପଢ଼େଇବାକୁ । ପେଟପୂରିଲା ପରି ଭାତମୁଠେ ବି ଖାଇବାକୁ ଦେବାଲାଗି ହେଲା ନାମଙ୍ଗ ।

- ଜାଣିଚ ନାନୀ ! ଭାଉଜ ତବତ ଭାତସାଥିରେ ନିଇତି ନିଜେ ଖାଇବ ଶୁଖୁଆ ଭଜା । ଆଉ ମତେ ଦି ଦିନର ବାସୀ ପଖାଳ ସାଥିରେ ଦବ ଏତିକି ଟିକିଏ ଆଳୁ ଚକଟା । ହାତରେ ଆଳୁଚକଟାର ପରିମାଣ ଦେଖାଇ ଧନୁ କହିଲା ।

ଭାଇ ଚୁପ୍‌ଚୁପ୍ ମତେ କହିଲା - ଦେଖୁଚୁ ନାନୀ ! ସାମାନ୍ୟ ଟିକିଏ ଶୁଖୁଆଭଜା କେଡ଼େ ମୂଲ୍ୟବାନ୍ ଓ ଲୋଭନୀୟ ଥିଲା ସେତେବେଳର ସେଇ ସାନଛୁଆଟି ପାଇଁ !

ଧନୁ ପଚାରିଲା - ବାବୁ କଅଣ କହୁଛନ୍ତି ?

ମୁଁ କହିଲି - କିଛି ନାଇଁ । ତମେ ତମ କଥା କୁହ ।

ଧନୁ କହିଲା - ଭାଉଜ ଦୁରବସ୍ଥା କଲାରୁ ପାଠ ଛାଡ଼ି ବାଧ ହେଇ ଯାଇ କାମ ଖୋଜିଲି । କେଇଦିନ ପରେ କାମ ପାଇଗଲି ଗୋଟିଏ କମାରଶାଳର ଭାଟିରେ । ଦିନକୁ ମିଳେ ଟଙ୍କେ ଚାରଣା । ସେଇ ପଇସାରେ ଜଳଖିଆ ପତ୍ର କରେ । ଧୀରେ ଧୀରେ ଜଣେ ସାଙ୍ଗଠାରୁ କ୍ଷିଅର କାମ ଶିଖିଲି । ପଇସା ଜମେଇ ମୁଠି ତିଆରି କଲି । ବାପାଙ୍କ ପୁରୁଣା ବାକ୍ସ ସଜାଡ଼ିଲି । ଧରିଲି ବାପାଙ୍କ ବେଉସା ।

- ତମର ପ୍ରଥମ ଗରାଖ କିଏ ମନେ ଅଛି ତମର ?

- ପ୍ରଥମ ଗରାଖ ଥିଲା କନ୍ହେଇ ବିଶ୍ୱାଳ । ଦରଜୀଟୋକା । ଆଠଣା ପଇସା ଦେଇଥିଲା ମତେ । ପ୍ରଥମ ଦିନ ରୋଜଗାର କଲି ସାଢ଼େ ତିନିଟଙ୍କା । ପଇସାତକ ଆଣି ଭାଉଜ ହାତକୁ ଦେଲି । କାଳେ ପେଟପୂରା ଖାଇବାକୁ ଦେବ ବୋଲି ।

- ସବୁତକ ପଇସା ଦେଇଦେଲ ?

- ଖାଲି ସେଦିନ ନୁହଁ ନାନୀ, ବର୍ଷେକାଳ ସବୁ ରୋଜଗାର ଭାଉଜ ହାତକୁ ବଢ଼େଇ ଦେଇଛି । ଧୀରେ ଧୀରେ କାମରେ ହାତ ପାକଳ ହେଲା । ଦିନକୁ ରୋଜଗାର ହେଲା ସତୁରି ଅଶି ଟଙ୍କା । ସବୁ କିନ୍ତୁ ଦେଇଛି ଭାଉଜକୁ । ବର୍ଷକ ପରେ ଥରଟେ କଅଣ ଗୋଟେ ଖର୍ଚ୍ଚପାଇଁ ଭାଉଜକୁ ପଇସା ମାଗିଲି । ଭାଉଜ କହିଲା, ତୋ ଭାଇତ ଘରକୁ ଗୋଟିଏ ପଇସା ଦିଏନି । ଘର ଚଳେ ତୋ'ରି ପଇସାରେ । ବଳକା ପଇସା କାଇଁ ଯେ ତତେ ଦେବି ? ସେଦିନ ହେଇଥାଏ ଭାତ ଆଉ ଖାସି ମାଉଁସ ଝୋଳ । ଦି' ଭାଇ ଖାଇବସିଥିଲୁ । ମୁଁ ରାଗରେ ଅଧାଖିଆ ହୋଇ ଉଠିଗଲି । ଆଉ ଭାଉଜ କାହିଁକି ସତକଥା କହିଦେଲା ବୋଲି ଭାଇ ଉଠିକି ଏମିତି ଛେଚିଲା ଭାଉଜକୁ ଯେ ସିଏ ପୂରା ବେହୋସ ।

- ତା' ପରେ ? ତା' ପରେ କଅଣ କଲ ?

- କଅଣ ଆଉ କରିବି ? ସେଦିନ ଥାଏ ଛାଡ଼ଖାଇ । ବଜାରରେ ବୁଲି ବୁଲି କାର୍ତ୍ତିକେଶ୍ୱର ମେଢ଼ଉଠା ଦେଖିଲି । ଘରେ ଯାଇଁକି ପହଞ୍ଚିଲି ଭୋର୍‌ବେଳକୁ । ସେଇଦିନଠୁ ଭାଇ ଭାଉଜଙ୍କୁ ଆଉ ପଇସା ଦେଲିନାହିଁ । ବଖରେ ଘରେ ଅଲଗା ରହେ । ବେକାର୍ ଦାଦିପୁଅ ଭାଇଟିଏ ଥିଲା । ତାକୁଇ ପଇସା ଦେଲେ ସିଏ ରାନ୍ଧିବାଢ଼ି ଦିଏ ।

- ଆହା ! ତମେ ତ ଖାଲି ତମ ଭାଇଭାଉଜଙ୍କ କାହାଣୀ କହିଲାଗିଲ । ତମ ନିଶାଖିଆ କାହାଣୀକୁ ପୂରାପୂରି ବାଦ୍ ଦେଇଦେଲ ଯେ ! ମଦପିଆ ଆରମ୍ଭ କଲ କେମିତି ? ମୁଁ ପଚାରିଲି ।

- ମଦ ଧରିଛି ନିହାତି ପିଲାବେଳୁ । ଲାଜକୁଳା ହସ ହସି ଧନୁ କହିଲା । ଆମ ବସ୍ତିର କୃଷ୍ଣ ଭାଇ କରୁଥିଲା ମଦବେପାର । ସୁଲେମାନ୍ ମିଆଁଠାରୁ ମାଲ୍ ଆଣେ । ବୋତଲକୁ ଟଙ୍କେ । ମତେ ସେତେବେଳେ ନଅ ଦଶବର୍ଷ । ଦଶପନ୍ଦର ବୋତଲ ମତେ ଦିଏ ସାହିରେ ବିକ୍ରି କରିବାକୁ । ସେଇ ବିକୁ ବିକୁ ପ୍ରଥମେ ମଦ ଚାଖିଲି ।

- ଏତେ ପିଲାଦିନରୁ ନିଶାପାଣି କରିବା ଶିଖିଗଲ ?

- ହଁ ନାନୀ । ପ୍ରଥମେ ଯେଉଁଦିନ ପିଇଲି ମୁଣ୍ଡ ଝାଙ୍କିଦେଲା । ଘରକୁ ଆସି ଥାଳିକ ଢାଗାରେ ଦିଥାଳି ଭାତ ଖାଇଲି ନିଶାଘୋର୍‌ରେ । ମଜା ଲାଗିଲା । ତା' ପରଦିନ ବି ପିଇଲି । ତା' ପରଦିନ । ତା' ପରଦିନ । ଏଇମିତି ଟିକିଏ ଟିକିଏ ଚାଖୁ ଚାଖୁ ଅଭ୍ୟାସ ହେଇଗଲା ।

- ତା' ପରେ ।

- କୃଷ୍ଣଭାଇଠୁ ଖୁଚୁରା ଆଣି ବସ୍ତିରେ ବିକ୍ରି କଲି ଆଠଦଶ ବର୍ଷ । ତା' ଭିତରେ ମୋ ବାହାଘର ସରିଥାଏ । ପିଲାକନିଆ । ବୋହୂ ଆସିନଥାଏ ଘରକୁ । ମୋର ଢଣେ ଲେଖାଯୋଖା ଶଳା ମଦବେପାର କରୁଥାଏ । ଆଠଗଡ଼ରୁ ମାଲ୍ ଆସେ - ପଚାଶ ଟିଣ । ପହଞ୍ଚେ ଭୋର୍ ବେଳକୁ । ରାସ୍ତାରେ ଅବକାରୀବାଲା ହଜାରେ ଟଙ୍କା ନେଇ ଛାଡ଼ିଦିଅନ୍ତି । ଶଳା ମତେ ସେଥିରୁ ଦି ଚାରି ଟିଣ ଦିଏ । ଗୋଟିଏ ଟିଣର ଦାମ୍ ଦୁଇଶ କୋଡ଼ିଏ ଟଙ୍କା । ପାଣି ମିଶେଇ ବିକ୍ରି ହୁଏ ଚାରିଶ ଅଶି ଟଙ୍କାରେ । ଟିଣ ପିଛା ଦୁଇଶ ଷାଠିଏ ଟଙ୍କା ଲାଭ । ବେଉସା ଢମିଗଲା । ବେପାରରେ ସାହାଯ୍ୟ କରିବାପାଇଁ ଚାକର ଟୋକାଟିଏ ବି ରଖିଲି । ଦିନରେ କ୍ଷିଅର କାମ । ରାତିରେ ମଦବିକ୍ରି । ଘରେ ଇ ଦୋକାନ । ସଂଢହେଲେ ବସ୍ତିବାଲାଙ୍କ ଭିଡ଼ । ବଡ଼ ଗିଲାସ ଛଟଙ୍କା, ସାନ ଗିଲାସ ଚାରିଟଙ୍କା । ପଇସା ପ୍ରଚୁର । ହେଲେ ଦି ବର୍ଷ ପରେ ସେ ଦୋକାନ ବନ୍ଦ କରିବାକୁ ପଡ଼ିଲା ।

- କାହିଁକି ? ଅସୁବିଧା କଅଣ ହେଲା ? ମୁଁ ପଚାରିଲି ।

- ସେଇ ବଡ଼ଭାଇ ଯୋଗୁଁ ନାନୀ । ମୋ ଟଙ୍କା ରୋଢଗାର ଦେଖି ସହିପାରିଲାନି । ବଡ଼ଭାଇ ନିଇତି ବିକ୍ରି କରିବା ପାଇଁ ଖୁଚୁରା ଆଠଦଶ ବୋତଲ ମୋ'ଠୁ ନିଏ । ହେଲେ ମତେ ପୂରା ପଇସା ଦିଏନି । ନିଢେ ପିଇଦେଇ କହେ ଦି ବୋତଲର ଠିପି ଖୋଲାଥିଲା, ତଳେ ପଡ଼ିଗଲା । ଏଇମିତି ଏଇମିତି ତା ଉପରେ ବାକି ରହିଲା ଆଠଶ ଅଶିଟଙ୍କା । ତାକୁ ଆଉ ବୋତଲ ଦେଲିନି । ସେଠୁ ଦିନେ ରାଗିକରି କହିଲା, ଘରେ ମୁଁ ଆଉ ତତେ ଦୋକାନ କରିବାକୁ ଦେବିନି । ମହା କଳିତକରାଳ । ବାଧ ହେଇ ଦୋକାନ ବନ୍ଦ କରିଦେଲି ।

- ତା ହେଲେ ତମ ମହୁଲି ପିଆ ଆଉ ମଦ ବେଉସାରେ ପୂର୍ଣ୍ଣଚ୍ଛେଦ ପଡ଼ିଗଲା ଏଇଠୁ ।

- ତା' କାହିଁକି ହବ ନାନୀ ? କେଇମାସ ପରେ ବସ୍ତିରେ ଅଲଗା ଘର ନେଇ ଦୋକାନ କଲି । ସେ ଦୋକାନ ଆହୁରି ବଢ଼ିଆ ଚାଲିଲା । ଚୌଧୁରୀବଢାରରୁ

କେଲା ସେଣ୍ଟ କିଣେ – ଶିଶିକି ଚାଳିଶ ଟଙ୍କା । ମହୁଲିରେ ସେଇ ସେଣ୍ଟ୍ ମିଶେଇ ବିକ୍ରିକରେ । ସେଣ୍ଟ୍ ମିଶା ମହୁଲି ପିଇଲେ ମୁହଁରୁ ବେଶୀ ଗନ୍ଧ ବାହାରେନି । ଖୁଣ୍‌ବୁ ବି ବଢ଼ିଆ । ବହୁତ କାଟ୍‌ତି ହେଲା ।

ରାତି ଚାରିଟାରେ ମାଲ୍ ଆସିକି ପହଞ୍ଚେ । ସେତିକିବେଳେ ଉଠିକି ଗରମ ପାଣି ପୂରେଇ ମଦଭାଙ୍ଗେ । ଭାଙ୍ଗୁ ଭାଙ୍ଗୁ ନିଜେ ବି ଦି' ଗିଲାସ ପିଏ । ଦିନରେ କ୍ଷିଅର କାମ ସାରି ଘରକୁ ଫେରିଲାବେଳେ ସାଙ୍ଗରେ କିଣିକି ନେଇଯାଏ ପୋଦିନାପତ୍ର, ତେନ୍ତୁଳି ଆଉ କଞ୍ଚାଲଙ୍କା । ରାତି ବାରଟାଯାଏ ସରଗରମ୍ ଦୋକାନ । ଯିଏ ପିଇବାକୁ ଆସେ ତାକୁ ଶାଳୁଆ ପତ୍ରରେ ମେଞ୍ଚେ ଚଟଣୀ ଧରେଇ ଦିଏ । ଚଟଣୀ ଚାଟୁଥିବେ ଆଉ ପିଉଥିବେ ।

– ଏତେ ଚଟଣୀ ବାଟେ କିଏ ? ତମ ସ୍ତ୍ରୀ ?

– ଆରେ ବାପ୍‌ରେ ! ସ୍ତ୍ରୀ ମୋର ମହୁଲି ନାଁ ଶୁଣିଲେ ରଣଚଣ୍ଡୀ ମୂର୍ତ୍ତି ଧରେ । ମୋ' ଦୋକାନ ଆଗରେ ଗୋଟିଏ ବରହମ୍‌ପୁରିଆଣୀ ଭଡ଼ାରେ ରହୁଥାଏ । ଟଙ୍କାଟିଏ ନିଏ ଆଉ ଚଟଣୀତକ ବାଟିଦିଏ । ଚଟଣୀ ସାଥିରେ ମାଲ୍‌ପିଆ ଢମେ ଭଲ । ଦି ଚାରି ଗିଲାସ ମୁଁ ବି ଆରାମରେ ଟାଣେ ।

– ଭାଇ କହୁଥିଲା ଏଇ ପିଆପିଇ ଯୋଗୁଁ ଦେହ କୁଆଡ଼େ ତମର ଭାରି ଖରାପ ଥିଲା । ମରୁ ମରୁ ବଞ୍ଚିଲ । ତେବେ ବି ଏ ନିଶାକୁ ଛାଡ଼ିପାରୁନ ? କେଉଁଦିନ ପ୍ରାଣ ଯିବ ଯେ ! ମୁଁ କହିଲି ।

– କଅଣ କରିବି ନାନୀ ? ଏତେ ବର୍ଷର ଅଭ୍ୟାସ । ମୁଁ ତାକୁ ଛାଡ଼ିଲେ ବି ସିଏ ମତେ ଛାଡୁନି । ଏବେ ବୟସ ହେଲାଣି । ଦୋକାନ ପାଟ ଧନ୍ଦା କେବେଠୁ ବନ୍ଦ ହେଇଗଲାଣି । ବସ୍ତି ଭିତରେ ଅନ୍ୟ ଲୋକ ବିକୁଛନ୍ତି । ତାଙ୍କରି ଠୁ କିଣିକି ପିଉଛି । ମୁହଁରେ ଦୋଷୀ ଦୋଷୀ ଭାବ ଆଣି କାନ କୁଣ୍ଡାଉ କୁଣ୍ଡାଉ ଧନୁ କହିଲା ।

– କେତେବେଳେ ପିଉଚ ? ଦିନରେ ନା ରାତିରେ ?

– ସକାଳେ ଦି ଗିଲାସ ପିଏ । ଚାରିଟଙ୍କାର ପକୁଡ଼ି ସାଥିରେ । ଖରାବେଳକୁ ନିଶା ଉତୁରିଯାଏ । ଦିହ କମମସ ଲାଗେ । ଦି ଗିଲାସେ ନ ହେଲେ ନ ଚଳେ । ରାତିକି ଆଉ ଦି ଚାରି ଗିଲସ । ରାତି ବାରଟାରେ ଘରକୁ ଫେରି ଭାତ, ଶୁଖୁଆ ଚଟଣୀ ଆଉ ଦି'ଟା ସିଝା ଅଣ୍ଡା ଖାଇ ଆରାମରେ ଶୋଇପଡ଼େ ସକାଳ ପର୍ଯ୍ୟନ୍ତ । ହେଲେ ନାନୀ ଆଜିକାଲି ଆଉ ମହୁଲିରସ ଦିହରେ ଯାଉନି ।

– କାହିଁକି ? ଦେହ ପୁଣି ଖରାପ ହେଲାଣି କି ?

- ନାଇଁ ଦେହ କିଛି ହେଉନି ଯେ, ତେବେ ଅଧେଦିନ ରାତିରେ ନିଶାଘୋର୍‌ରେ ଚେତାବୁଡ଼ି ରାସ୍ତା କଡ଼ରେ ପଡ଼ିରହୁଛି । ଘରକୁ ଯାଉଛି ନିଶା ଉତୁରିଲେ । ମୋ ସ୍ତ୍ରୀତ ମଦ ନାଆଁକୁ ନିଆଁ । ପୁଅ ବି ଦି ଚାରିଥର ହାତ ଉଠେଇକି ବାଡ଼େଇଲାଣି ଏଇ ନିଶାପାଣି ଅଭ୍ୟସ ଯୋଗୁଁ । ରାଗିକି ମୋ ଭାତ ଖାଇବା ବନ୍ଦ କରିଦେଉଛି । ହେଲେ ମୋ ଝିଅଟି ଭାରି ଭଲପାଏ ମୋତେ । ଲୁଚେଇକି ଭାତ ଅଣ୍ଡାଭଜା ବାଢ଼ିଦିଏ ।

- ପଇସା କେଉଁଠୁ ଆଣୁଚ ପିଇବା ପାଇଁ ?

- ଦିନ ବେଳେ ରାସ୍ତାକଡ଼ରେ ବସି କ୍ଷିଅର କରେ । ବଡ଼ଲୋକଙ୍କ ବାଳ କାଟିଲେ ଦଶଟଙ୍କା, ସାନପିଲାଙ୍କର ପାଞ୍ଚଟଙ୍କା । ଆଉ ନିଶ କାଟିଲେ ତିନିଟଙ୍କା । ସବୁ ପଇସା ଏଇ ମହୁଲିପିଆରେ ଖର୍ଚ୍ଚ ହେଇଯାଉଛି । ଘରକୁ ପଇସାଟିଏ ବି ଦେଇହେଉନି । ତା' ଛଡ଼ା ମୋର ମାଉଁସ, ଅଣ୍ଡା ଖର୍ଚ୍ଚ ବି ଅଛି । ଏବେ ପୁଅ ଦି'ଜଣ ଯାକ ସେଲୁନ୍ କରିଛନ୍ତି । ଭଲ ରୋଜଗାର । ତାଙ୍କରି ପଇସାରେ ଘର ଚଳୁଛି ।

ମୋ ଟିପାଖାତା ବନ୍ଦ କରି ମୁଁ କହିଲି - ଧନୁ, ତମର ଫଟ ଅଛି ? ମତେ ଫଟଟିଏ ଦେଇପାରିବ ? ମୋ ଲେଖା ସହିତ ତୁମର ଫଟଟିଏ ଛପାହେଲେ ଆହୁରି ବଢ଼ିଆ ହୁଅନ୍ତା ।

ଖବରକାଗଜରେ ତା ଫଟ ଛପାହେବା ଭଳି ଅବିଶ୍ୱସନୀୟ ତଥା ଆନନ୍ଦମୟ ପ୍ରସ୍ତାବଟିରେ ରୀତିମତ ଉତ୍ତେଜିତ ହେଇ ଧନୁ କହିଲା - ଘରେ ଫଟ ଅଛି ନାନୀ । ମୁଁ ଏବେ ଦୌଡ଼ିକି ଯାଇ ନେଇଆସିବି । ଘଣ୍ଟାକ ଭିତରେ । ତମେ ପଳେଇବନିତ ?

- ମୁଁ ଏବେ ଚାରିପାଞ୍ଚ ଘଣ୍ଟା ଘରେ ଅଛି । ତମେ ଆରାମରେ ଯାଅ । ମୁଁ କହିଲି ଏବଂ ପରମ ଉତ୍ସାହରେ ଧନୁ କ୍ଷିପ୍ର ପଦପାତରେ ତା ଘର ଆଡ଼େ ମୁହାଁଇଲା । ଫେରିଆସିଲା ଯଥା ସମୟରେ ମଧ । କିନ୍ତୁ ସିଏ ଆଣିଥିବା ଫଟଟି ଦେଖି ଉଭୟ ଭାଇ ଓ ମୁଁ ହାସ୍ୟ ସମ୍ବରଣ ନ କରି ରହିପାରିଲୁନି । ଫଟଟି ଥିଲା ଧନୁ ଏବଂ ତା ପତ୍ନୀର ଷ୍ଟୁଡ଼ିଓରେ ଉଠା ବିବାହୋତ୍ତର ଫଟଟିଏ । ବିରାଟକାୟ ଏବଂ କାଚଫ୍ରେମରେ ବନ୍ଧା । ରୁଗ୍‌ଣ, ଅସ୍ଥିସାର ମଣିଷଟି ପୂରା ଭିନ୍ନ ଦିଶୁଥିଲା ସେ ଫଟରେ । ପୂରନ୍ତ ଗାଲ ଓ ଘଞ୍ଚବାଳ । ଇସ୍ତ୍ରୀକରା ଜାମା ଓ ଧୋତିପିନ୍ଧା ଯୌବନଦୀପ୍ତ ଧନୁର୍ଦ୍ଧର ମୁହଁରେ ମୃଦୁ ହସର ପ୍ରଲେପ ବୋଳି ବଡ଼ ବଡ଼ ଆଖିରେ ସିଧାସଳଖ ଅନେଇ ରହିଛି କ୍ୟାମେରାକୁ । ପାଖରେ ଅବଗୁଣ୍ଠନବତୀ ସନ୍ତ୍ରସ୍ତନୟନା ସୁକୁମାରୀ ବଧୂଟିଏ ।

ମୁଁ କହିଲି - ଧନୁ, ସାନ ଫଟଟିଏ ହେଇଥିଲେ ନେଇଥାଆନ୍ତି । ଏଡ଼େ ବଡ଼ ଫଟ କିଛି କାମରେ ଲାଗିବନି । ଯାକୁ ବରଂ ତମେ ନେଇ ଘରେ ଯେଉଁଠି ଟଙ୍ଗା ହେଇଥିଲା ସେଇଠି ଟାଙ୍ଗିଦିଅ ।

ଫଟଛପା ନ ହେଇବାର ଦୁଃଖରେ ଧନୁ ବେଶ୍ ମ୍ରିୟମାଣ ହେଇପଡ଼ିଲା । ତାକୁ ସାନ୍ତ୍ୱନା ଦେଇ କହିଲି - ଧନୁ, ତମେ ବ୍ୟସ୍ତ ହୁଅନା । ମୁଁ ଏତେ ବଢ଼ିଆ କରି ତମ କାହାଣୀ ଲେଖିବି ଯେ ଯିଏ ପଢ଼ିବ ସିଏ ଖୁସି ହେଇଯିବ । ଲେଖାଛପା ହେଲେ ତମକୁ ଆଣିକି ଦେଖେଇବି । ତମେ ତ ଓଡ଼ିଆ ପଢ଼ିଜାଣିଚ । ଦେଖିବ କି ଚମତ୍କାର ଲେଖା ହବ ତମକୁ ନେଇ । ମୁଗ୍ଧ ହୋଇ ପଢ଼ିବେ ପାଠକମାନେ ।

ଧନୁର ବିଷନ୍ନ ମୁହଁରେ କିଛିଟା ପ୍ରସନ୍ନତା ଫେରିଆସିଲା ମୋ କଥାଶୁଣି । ଧନୁ ଓ ତା' ପତ୍ନୀର ଯୁଗଳ ଫଟଟିକୁ ଚାହିଁ କହିଲି - ଧନୁ, ତୁମ ସ୍ତ୍ରୀ ତ ଭାରି ସୁନ୍ଦର ଦେଖିବାକୁ । ନୂଆ ନୂଆ ଯେତେବେଳେ ବାହା ହେଲ, ମଦ ପିଇ ଘରକୁ ଗଲେ ତମ ସ୍ତ୍ରୀ ତମ ସାଥିରେ କଳିକଜିଆ କରୁନଥିଲା ?

- କରୁନଥିଲା ପୁଣି ! ବୁଝିଲ ନାନୀ, ସ୍ତ୍ରୀ ଆସିବାର ପ୍ରାୟ ବର୍ଷକଯାଏ ରାତି ପିଆ ବନ୍ଦ କରିଦେଇଥିଲି । ଯାହା ପିଏ ବାହାରେ ବାହାରେ, ଦିନବେଳେ । ଦିନେ ଆଉ ସମ୍ଭାଳିପାରିଲିନି । ପିଇ ଦେଲି ଅଧବୋତଲେ ହବ ମହୁଲି । ଆଉ ପିଇସାରି ଯେତେବେଳେ ତା' ପାଖକୁ ଯାଏ

- କଅଣ ହେଲା ? ତମ ସ୍ତ୍ରୀ ପାଟିତୁଣ୍ଡ କଲା ବହୁତ ? ସାଇପଡ଼ିଶା ଜମା ହେଇଗଲେ ?

- ନାଇଁ ସେସବୁ କିଛି ନୁହଁ, ଧନୁ ଧୀର ସ୍ୱରରେ ଜବାବ୍ ଦେଲା ।

- ଆଉ ତା ହେଲେ କଅଣ ? ମୁଁ ପଚାରିଲି ।

ସାମାନ୍ୟ ନୀରବ ରହି ଓ କିଶୋର ସୁଲଭ ଲଜ୍ଜାରେ ମୁହଁକୁ ଲାଲ୍ କରି ମୃଦୁ ସ୍ୱରରେ ଧନୁ କହିଲା - ମାନ ଭାଙ୍ଗୁ ଭାଙ୍ଗୁ ରାତି ପାହିଗଲା ସେଦିନ ।

ଧନୁକଥା ଶୁଣି ଆଶ୍ଚର୍ଯ୍ୟ ହେଇ ଚାହିଁରହିଲି ତା' ମୁହଁକୁ । ରୁକ୍ଷ, ପରିପକ୍ୱ ମୁହଁଟି ତାର ଦିଶୁଥିଲା ଭାରି କୋମଳ, ଭାରି ଶ୍ରୀମୟ । ଆଖିର ତାରା ଚକ୍‌ଚକ୍ କରୁଥିଲା ସୁଦୂର ଅତୀତର ଏକ ଅନୁରାଗୀ ନିଶୀଥର ମଧୁରତମ ସ୍ମୃତିରେ । ବୁଝିପାରିଲି, ବର୍ଷବର୍ଷର ମହୁଲି ନିଶା ମିଶି ବି ଏ ଯାବତ୍ ମ୍ଳାନ କରିପାରିନି ତାର ସେ ପ୍ରଥମ ପ୍ରଣୟର ଅଭିମାନୀ ରାତିର ସ୍ମୃତିକୁ ।



# ପରିବର୍ତ୍ତନ

ତାଙ୍କର ସାମାନ୍ୟ ଟିକିଏ ତୀର୍ଯ୍ୟକ୍ ଚାହାଣୀରେ ମୁଁ କଂପୁଥିଲି ଠକ୍‌ଠକ୍ ହୋଇ । ମେରୁଦଣ୍ଡ ଭିତର ଦେଇ ତରଳ ଭୟର ସ୍ରୋତଟିଏ ପ୍ରସରି ଯାଉଥିଲା ଅବା । ଗାମ୍ଭୀର୍ଯ୍ୟମୟ ବ୍ୟକ୍ତିତ୍ୱ ଥିଲା ତାଙ୍କର । ଥିଲେ ମିତଭାଷୀ । ଦରକାରଠାରୁ ପଦଟିଏ ଅଧିକା କଥା କହୁନଥିଲେ । ଏବଂ ଯାହା କହୁଥିଲେ ସେ କଥାଟି ଥିଲା ଓଜନ୍‌ଦାର । ସେ କଥାର ହେରଫେର୍ ହେବାର ପ୍ରଶ୍ନ ନଥିଲା ।

ସାବନରଂଗର ଗୋଲ୍‌ଗାଲ୍ ଚେହେରାର ନିହାତି ସାନ ମଣିଷଟିଏ । ଶକ୍ତି କିନ୍ତୁ ଥିଲା ଅଫୁରନ୍ତ । କାମ କରୁଥିଲେ ପାହାନ୍ତି ପ୍ରହରରୁ ରାତି ପର୍ଯ୍ୟନ୍ତ । ଭାତ ରନ୍ଧାରୁ ଲୁଗାକଚା ଯାଏ । ଘରସଫାରୁ ଗାଈଦୁହାଁଯାଏ । ଗୁହାଳଭର୍ତ୍ତି ଗାଈ ବାଛୁରୀ । ସେମାନଙ୍କର ରକ୍ଷଣାବେକ୍ଷଣ ବି କରୁଥିଲେ ନିଜେ । ଧେନୁପଲ ଥିଲେ ତାଙ୍କର ସନ୍ତାନବତ୍ । ଚମତ୍କାର ହାତରନ୍ଧା ଥିଲା ତାଙ୍କର । ତାଙ୍କ ହାତ ତିଆରି ପଣସ ତରକାରୀ, ଆଳୁଦମ୍ ଓ ଜହ୍ନିପୋସ୍ତର ସ୍ୱାଦ ଏପର୍ଯ୍ୟନ୍ତ ଆଉ କେଉଁଠି ପାଇନି । ସାମାନ୍ୟ ତେଲମସଲା ଦେଇ ବ୍ୟଞ୍ଜନ ରାନ୍ଧୁଥିଲେ । ସାଧାରଣ ଓଡ଼ିଆ ଘରର ନିତିଦିନିଆ ରାନ୍ଧଣା । ତାଙ୍କ ହାତସ୍ପର୍ଶରେ ସେ ବ୍ୟଞ୍ଜନସବୁ ହୋଇ ଉଠୁଥିଲା ଅତୁଳନୀୟ । ସ୍ୱାଭାବିକ୍ ଭାବରେ, ସିଧା କଲେଜରୁ ବାହାରିଥିବା ଓ ଗୃହକାର୍ଯ୍ୟରେ ପାରଙ୍ଗମ ନଥିବା ମୋ'ପରି ଗୋଟିଏ ପୁତ୍ରବଧୂର କାର୍ଯ୍ୟକଳାପ ଅନେକ ସମୟରେ ତାଙ୍କର ମନ୍‌ପସନ୍ଦ୍ ହେଉନଥିଲା । ଭାତରୁ ପେଜ କେମିତି ଗାଳନ୍ତି ଜାଣିନଥିଲି ।

ଥିଲେ ସାଧାରଣ ମଧ୍ୟବିତ୍ତ ସଂସାରର ଗୃହିଣୀ । ସଚ୍ଚୋଟ୍ ମାଜିଷ୍ଟ୍ରେଟ୍ ସ୍ୱାମୀଙ୍କର ସୀମିତ ଆୟଭିତରେ ଅଯଥା ବ୍ୟୟବହୁଳ ହେବାର ସୁଯୋଗ ଜ ନ ଥିଲା । ତେବେ ବି ତାଙ୍କ ଲକ୍ଷ୍ମୀହାତର ସ୍ପର୍ଶରେ ଘରେ ଅଭାବ ନ ଥିଲା । ବାସଗୃହ ଥିଲା ତାଙ୍କର ନିଚିପଡ଼ । ନିଜେ ବି ରହୁଥିଲେ ପରିଚ୍ଛନ୍ନ । ଦୁଇଓଳି ସ୍ନାନକରି ଲୁଗା ବଦଳିବା ଥିଲା ନିତ୍ୟନୈମିତ୍ତିକ ବ୍ୟାପାର । ସକାଳେ ଗାଧୁଆସାରି କୁନିଦର୍ପଣଟିରେ ମୁହଁଦେଖି ମୁଣ୍ଡକୁଣ୍ଡାଇ ଲୁହାକଣ୍ଟା ମୂନରେ ସିନ୍ଥିରେ ଲଗାଉଥିଲେ ସିନ୍ଦୂର । କପାଳରେ ଚାରିଣି ଆକାରର ଟିପା । ପ୍ରସାଧନ ବୋଇଲେ ସେତିକି ।

ଥିଲେ ଅତ୍ୟନ୍ତ ନିୟମନିଷ୍ଠ ଓ ସମୟାନୁବର୍ତ୍ତୀ । ତାଙ୍କର ସବୁକାମ ଏକ ନିର୍ଦ୍ଦିଷ୍ଟ ସମୟରେ ନିର୍ଦ୍ଦିଷ୍ଟ ଭାବରେ ଇ ହେଉଥିଲା । ଭାତରାନ୍ଧିବାଠାରୁ ନିଦ୍ରାଯିବା ପର୍ଯ୍ୟନ୍ତ । ବୈବାହିକ ଜୀବନସଂପର୍କରେ ତାଙ୍କର ମତାମତ ଥିଲା ବେଶ୍ ସିଧାସଳଖ । ସ୍ୱାମୀର କାମ ଅର୍ଥଉପାର୍ଜ୍ଜନ କରିବା ଓ ସ୍ତ୍ରୀର କାମ ସଂସାର ଚଳାଇବା । ଉଭୟଙ୍କର କର୍ମର ପରିସର ଭିନ୍ନ ଭିନ୍ନ । ପରସ୍ପର ଭିତରେ ଠୋକର୍ ଲାଗିବାର ପ୍ରଶ୍ନ ଇ ଉଠେନି ।

କଳିତକରାଳ ହେବ ବା କାହିଁକି ? 'ଭଲପାଇବା' ଶବ୍ଦଟି ଉପରେ କୌଣସି ଗୁରୁତ୍ୱ ଦେଉନଥିଲେ ସିଏ । ତାଙ୍କ ଅଭିଧାନରେ ସେ ଶବ୍ଦଟି ନ ଥିଲା । ଥରେ କୌଣସି ଏକ ଆଲୋଚନା ପ୍ରସଙ୍ଗରେ 'ଭଲପାଇବା' ଶବ୍ଦଟି ଉଚ୍ଚାରଣ କରିଥିବାରୁ ମୋତେ କହିଥିଲେ "ଏ ଘରକୁ ସେ ଶବ୍ଦ ଆସିଲା କେଉଁଠୁ ? କଣ ବା ସେ ଶବ୍ଦର ମାନେ ?"

ଶିକ୍ଷାପ୍ରତି ଏବଂ ଶିକ୍ଷିତ ଝିଅମାନଙ୍କ ପ୍ରତି ଥିଲେ ବୀତରାଗ ଓ ନିସ୍ପୃହ । ବିନୟଙ୍କର ଜଣେ ବନ୍ଧୁ ଥରେ ଆସି ତାଙ୍କୁ କହିଥିଲେ ଯେ ଏମ୍.ଏ ପଢୁଥିବା ଗୋଟିଏ ଝିଅ ସହିତ ତାଙ୍କର ବିଭାଘର ପ୍ରସ୍ତାବ ପଡ଼ିଛି । ତାଙ୍କପାଇଁ ଜଙ୍ଘିଆ ବାଢୁ ବାଢୁ କହିଥିଲେ "ମୋଟେ ନୁହେଁ, ମୋଟେ ନୁହେଁ । ଏମ୍.ଏ ପଢୁଆ ଝିଅ ଆଣି କଅଣ କରିବ ? ବରଂ ଏମିତିଆ ଝିଅଟିଏ ଦେଖ ଯିଏ କି ରନ୍ଧାବଢ଼ା କରିବ, ଘର ସମ୍ଭାଳିବ ।" ହୁଏତ ପରୋକ୍ଷଭାବରେ ମୋତେ ଇଙ୍ଗିତ କରି ଏକଥା କହୁଛନ୍ତି ବୋଲି ଭାବି ସେତେବେଳେ ମୁଁ ବ୍ୟଥିତ ହୋଇଥିଲି ।

ତାଙ୍କ ମତରେ ସ୍ତ୍ରୀଲୋକମାନଙ୍କର ଇଲାକା ଥିଲା କେବଳ ଘରର ଚାରିକାନ୍ଥ ଭିତରେ । ଘରୁ ବାହାରକୁ ସେମାନେ ବାହାରିବେ ବା କାହିଁକି ? ଦାଣ୍ଡଘାଟରେ ଝିଅମାନେ ଘୂରିବୁଲିବା ତାଙ୍କର ନାପସନ୍ଦ ଥିଲା । ସାଇବୁଲା, ବଜାରବୁଲା, ବନ୍ଧୁଘର, ବଣଭୋଜି, ଭ୍ରମଣ, ସିନେମାଥିଏଟର ସବୁକିଛି ତାଙ୍କପାଇଁ ଥିଲା ନିଷିଦ୍ଧ । ଏଇସବୁ କଥାରେ ଥିଲେ ପୂରାପୂରି ପ୍ରାଚୀନପନ୍ଥୀ । ମୁଁ ବାହାଘର ପରେ ପ୍ରଥମଥର ତାଙ୍କଘରକୁ ଗଲାବେଳକୁ ମୋର ବାରବର୍ଷର ସାନଭାଇଟି ମୋ ସହିତ ଯାଇଥିଲା । ପରଦିନ ଫେରିଆସିଲାବେଳକୁ କେଜାଣି କାହିଁକି ମୋତେ କୁଣ୍ଢାଇଧରି ଅତ୍ୟନ୍ତ ବିକଳ ଭାବରେ କାନ୍ଦିବାକୁ ଲାଗିଲା । ତା' ସହିତ କାନ୍ଦିକାନ୍ଦି ମୁଁ ମଧ୍ୟ ଦାଣ୍ଡପିଣ୍ଡାଯାଏ ଚାଲି ଆସିଥିଲି । କଥାଟି ତାଙ୍କୁ ଭଲଲାଗିନଥିଲା । ପରେ ଏଥିପାଇଁ ବିରକ୍ତି ପ୍ରକାଶ କରିଥିଲେ ।

ସିଏ ସ୍ୱୟଂ ବି ବାହାରକୁ ବିଶେଷ ବାହାରୁନଥିଲେ । ବାହାରିବାର ପ୍ରୟୋଜନ ଅନୁଭବ କରୁନଥିଲେ । ସ୍ତ୍ରୀ ସ୍ୱାଧୀନତା ତଥ୍ୟଟି ତାଙ୍କ ମୁଣ୍ଡଭିତରେ ଇ ପଶିନଥିଲା । ଅବଶ୍ୟ ଏସବୁ କଥା ଭାବିବାକୁ କିମ୍ବା ମଉଜମସ୍ତି କରିବାକୁ ତାଙ୍କର ସମୟ ନ ଥିଲା । ଘରସଂସାର ଚଳାଇ, ସ୍ୱାମୀ ଓ ପାଞ୍ଚୋଟି ସନ୍ତାନଙ୍କର ପରିଚର୍ଯ୍ୟା ଏକା ଏକା କରିସାରିଲା ପରେ, ଅଫୁରନ୍ତ ଛୁଟିର ସମୟ ଆସନ୍ତା ବା କୁଆଡୁ ? ଏବଂ ଆଶ୍ଚର୍ଯ୍ୟ କଥା, ଏଇଭଳି ଗୃହବନ୍ଦୀ ହୋଇ ଜୀବନକଟାଇବାରେ ସିଏ ଭାରି ସନ୍ତୁଷ୍ଟ ଥିଲେ । ତାଙ୍କପାଇଁ ଗୋଟିଏ ନାରୀ ଜୀବନର ସାର୍ଥକତା କହିଲେ ଏଇଆ ଇ ବୁଝାଉଥିଲା । ନାରୀ ଓ ପୁରୁଷର ଯେ ସମାଜରେ ଓ ସଂସାରରେ ସମାନ ଅଧିକାର, ଏ କଥାଟି ମସ୍ତିଷ୍କ ଗ୍ରହଣ କରୁନଥିଲା ତାଙ୍କର । ଯେମିତି ବୁଝିପାରୁନଥିଲା ଭଲପାଇବା ବା ପ୍ରେମର ଅନ୍ତର୍ନିହିତ ଅର୍ଥ ବା ମାଧୁର୍ଯ୍ୟ । ତାଙ୍କପାଇଁ ଜୀବନଥିଲା କେବଳ ଦାୟିତ୍ୱବୋଧ ଓ କର୍ତ୍ତବ୍ୟର ଏକ ଦୀର୍ଘ ଅନ୍ତହୀନ ଶୃଙ୍ଖଳା ।

ଇଏ ସବୁ ଅବଶ୍ୟ ବହୁବର୍ଷ ତଳର କଥା ।

ଶେଷବେଳକୁ କିନ୍ତୁ ସେ ଜବରଦସ୍ତ ବ୍ୟକ୍ତିତ୍ୱର ଅବସାନ ଘଟିଥିଲା । ଜୀବନର ଅପରାହ୍ନରେ ପହଞ୍ଚି ସାରିଥିବା ଓ ଅନ୍ୟର ଦୟାଉପରେ ନିର୍ଭରକରୁଥିବା ସେ ପକ୍‌କେଶିନୀ, ଲୋଳଚର୍ମ ବୃଦ୍ଧା ଜନନୀଙ୍କୁ ଦେଖିଲେ ଅନେକ ସମୟରେ ମୋ' ମନରେ ମମତା ଓ କରୁଣାର ଉଦ୍ରେକ ହେଉଥିଲା । କାରଣ ତାଙ୍କ ଜୀବନର ମଧ୍ୟାହ୍ନବେଳର ଦୀପ୍ତ ଓ ସଶକ୍ତ ରୂପ ମୁଁ ଏକଦା ଦେଖିଛି । ଜୀବନସନ୍ଧ୍ୟାରେ ପହଞ୍ଚିସାରିଲା ପରେ ତାଙ୍କର ସେ ପୂର୍ବର ସିଂହୀସଦୃଶ ଶକ୍ତି, ସାହସ ତଥା ନିର୍ଭୀକତା, ସବୁ କୁଆଡ଼େ ଅଚାନକ୍ ଉଭେଇ ଯାଇଥିଲା ଯେମିତି । ପରିବର୍ତ୍ତନ ହେଇଥିଲା କେବଳ ଶାରୀରିକ ସ୍ତରରେ ନୁହେଁ, ମାନସିକ ସ୍ତରରେ ମଧ୍ୟ ।

ସିଏ ନିଜେ ବେଶୀ ପାଠ ନ ପଢ଼ିଥିଲେ ସୁଦ୍ଧା, ତାଙ୍କର ସନ୍ତାନମାନେ ସମସ୍ତେ ଈଶ୍ୱରଙ୍କ କୃପାରୁ ଉଚ୍ଚଶିକ୍ଷିତ ଓ ସୁପ୍ରତିଷ୍ଠିତ ହୋଇପାରିଥିଲେ । କିନ୍ତୁ ତାଙ୍କର ପୌତ୍ରପୌତ୍ରୀମାନେ ବଡ଼ ହେଲାପରେ ସିଏ ହୃଦୟଙ୍ଗମ କରିଥିଲେ ଯେ ଗୋଟିଏ ନାରୀପାଇଁ ଭାତରାନ୍ଧିବା ଯେତିକି ଜରୁରୀ, ସ୍ୱସନ୍ତାନମାନଙ୍କର ଶିକ୍ଷାର ଭାର ଗ୍ରହଣ କରିବା ମଧ୍ୟ ସେତିକି ଜରୁରୀ । ଏବଂ ତାହା ସମ୍ଭବ କେବଳ ନାରୀଟିଏ ଶିକ୍ଷିତା ହେଲେ ।

ସେଇ ହେତୁରୁ, ତାଙ୍କ ମୁଣ୍ଡରେ ଗାଦିମାଡ଼ି ବସିଥିବା ଧାରଣା, ଯେ ଗୋଟିଏ ଜନନୀର କର୍ତ୍ତବ୍ୟର ସୀମାରେଖା କେବଳ ଗୃହକର୍ମ ଭିତରେ ହିଁ ସୀମାବଦ୍ଧ, ତାଙ୍କୁ ନିଜକୁ ହିଁ ଭୁଲ୍ ବୋଲି ପ୍ରତିଭାତ ହୋଇଥିଲା । ସିଏ ବୁଝିପାରିଥିଲେ ଯେ ସଂସାରରେ ପୁରୁଷ ସହିତ କାନ୍ଧମିଳାଇ ସ୍ତ୍ରୀକୁ ମଧ୍ୟ ସମତାଳରେ ଚାଲିବାକୁ ହେବ ଏବଂ ତାହା ହେଇପାରିବ କେବଳ ସ୍ତ୍ରୀ ଶିକ୍ଷିତା ହେଲେ ।

ଫଳସ୍ୱରୂପ, ଯେଉଁ ମଣିଷଟି ମୁଁ ଦାଣ୍ଡଘରକୁ ବାହାରି ଆସିଥିଲି ବୋଲି ଦିନେ ମୋ' ଉପରେ ରୁଷ୍ଟ ହୋଇଥିଲେ, ପରେ ପରେ ଘରକୁ କୌଣସି ଅତିଥି ଆସିଲେ ମୋତେ ନିଜେଇ ଡ଼ାକି ପଠାଇ ଦେ.ଥିଲେ ଦାଣ୍ଡଘରକୁ - ସେମାନଙ୍କ ସହିତ ଆଳାପ କରିବାପାଇଁ । ଏବଂ ଏହା ବ୍ୟଗ୍ରଭାବରେ କରୁଥିଲେ ଯଦି ଅତିଥିଜଣକ ଦୈବାତ୍ ଥିଲେ ଅଣଓଡ଼ିଆ ଏବଂ ତାଙ୍କ ସହିତ ଇଂରାଜୀରେ କଥୋପକଥନ କରିବା ଜରୁରୀ ଥିଲା । ଯେଉଁ ମଣିଷଟି ରନ୍ଧାବଢ଼ା ଜାଣିନଥିଲି ବୋଲି ଏକଦା ପରୋକ୍ଷରେ ବକ୍ରୋକ୍ତି କରିବାକୁ ପଶ୍ଚାଦ୍‌ପଦ ହେଉନଥିଲେ, ପରେ ପରେ ମୋ ରନ୍ଧାବଢ଼ା ଉପରେ କୌଣସି ପ୍ରାଧାନ୍ୟ ହିଁ ଦେଲେନି । ସାରା ପରିବାର, କୌଣସି ପର୍ବପର୍ବାଣୀ ବା ସାମାଜିକ ଉତ୍ସବରେ ଏକାଠି ହେଲେ ସନ୍ଧ୍ୟାବେଳେ ମୋତେ କହୁଥିଲେ "ତୁ ରାନ୍ଧିବା ଦରକାର ନାହିଁ । ବରଂ ବସିକି ପିଲାମାନଙ୍କ ପଢ଼ାପଢ଼ି ଦେଖ୍ ।" ଏବଂ ସାନସାନ ଝିଅାରୀପୁତୁରା ମାନଙ୍କୁ ମୁଁ ପାଠପଢ଼ାଇଲେ କେବଳ ଯେ ମୁଗ୍ଧଆଖିରେ ସେ ଦୃଶ୍ୟ ଉପଭୋଗ

କରୁଥିଲେ ତାହା ନୁହେଁ, ମୋ ପାଇଁ ମଝିରେ ମଝିରେ ପଢ଼ାଘରକୁ ଚା' ଜଳଖିଆ ସରବରାହ କରୁଥିଲେ ମଧ୍ୟ ।

ଦୁଇବର୍ଷ ତଳର କଥା । ତାଙ୍କର ମୃତ୍ୟୁର ପ୍ରାୟ ବର୍ଷେ ଆଗର ଘଟଣା । ତାଙ୍କୁ ଦେଖିବାକୁ ବିନୟ ଓ ମୁଁ ଘରକୁ ଯାଇଥିଲୁ । ସେଦିନ ସନ୍ଧ୍ୟାରେ ପରିବାରର ସଭିଏଁ ମଉଜକରି ହୋଟେଲ୍‌କୁ ଖାଇବାପାଇଁ ଯିବାର କାର୍ଯ୍ୟକ୍ରମଟିଏ ତିଆରିକରି ପକାଇଲେ । ରାତି ଆଠଟାରେ ବେଶଭୂଷା ହୋଇ ହୁଲୁସ୍ଥୁଲ୍ ଭାବରେ ସଭିଏଁ ବାହାରି ଗଲେ ମଧ୍ୟ ଘରୁ । ରହିଗଲୁ କେବଳ ସିଏ ଓ ମୁଁ । ଦୁର୍ବଳ ଶରୀର ନେଇ ସିଏ ଯାଇପାରିବେନି ଓ ଶାକାହାରୀ ମୋ' ପାଇଁ ହୋଟେଲ ତିଆରି ଖାଦ୍ୟ ପୂରାପୂରି ଆକର୍ଷଣ ବିହୀନ ।

ଘର ବିଲ୍‌କୁଲ୍ ନିଃଶବ୍ଦ । ଅଗଣାରେ ଜହ୍ନରାତି । ପିଣ୍ଡାରେ ସିଢ଼ିତଳେ ପଡ଼ିଥିବା ଦଉଡ଼ିଆ ଖଟଟିରେ ସିଏ ଏବଂ ତଳେ ନାଲି ଚଟାଣରେ ମୁଁ । ଦୀର୍ଘ ତିନିଘଣ୍ଟା ଏକାସାଥିରେ ଥିଲୁ ଏବଂ ଦୀର୍ଘ ତିନିଘଣ୍ଟାଯାକ ତାଙ୍କ ଜୀବନର ଅନେକ କାହାଣୀ କହିଗଲେ ସିଏ । ପିଲାଦିନୁ ମାତୃହୀନା ହୋଇ ମାଉସୀ କୋଳରେ ମଣିଷ ହେବା, କିଶୋରୀ ବୟସରେ ବଧୂବେଶରେ ଆସି ବୃଦ୍ଧ ଶ୍ୱଶୁର ତଥା ଦିଅରଙ୍କୁ ନେଇ ସ୍ୱାମୀଙ୍କର ସଂସାର ସଜାଡ଼ିବା, ସିଏ ପଢ଼ିଥିବା ଅଜସ୍ର ଜଙ୍ଗଲାବହିର ଗପ, ପାଞ୍ଚୋଟି ସନ୍ତାନଙ୍କର ଜନ୍ମର ଗପ - ଖେଦହୀନ ଭାବରେ ମାଡ଼ିଚାଲିଲା ତାଙ୍କର କଥାସରିତ୍ ସାଗର ।

ରାତି ବଢୁଥିଲା । ଦୁଇଜଣଙ୍କପାଇଁ ପୁରୀ ତରକାରୀ ବାଢ଼ି ଆଣିଲି । କହିଲେ- ଜାଣ ? ମୋ ବାପା ସଂସ୍କୃତରେ ଭାରି ବଡ଼ ପଣ୍ଡିତ ଥିଲେ ।

- ସତରେ ?

- ପିଲାଦିନେ ମତେ କେତେ ସଂସ୍କୃତ ପଢ଼େଇଛନ୍ତି । ଚାଣକ୍ୟ ଓ ଭର୍ତ୍ତୃହରିଙ୍କ ଶ୍ଳୋକଃ ସବୁ ମୁଖସ୍ଥ କରାଇଥିଲେ । ଏବେ ବି ମୋର ମନେ ଅଛି । ଶୁଣିବ ? କହିଲେ ଏବଂ ମୋତେ ଆଶ୍ଚର୍ଯ୍ୟ ଏବଂ ଅଭିଭୂତ କରି ଅନେକଗୁଡ଼ିଏ ଚାଣକ୍ୟ ଶ୍ଳୋକଃ ଆବୃତ୍ତି କଲେ । ଚମତ୍କାର ଆବୃତ୍ତି, ପୂରାପୂରି ସ୍ପଷ୍ଟ ଉଚ୍ଚାରଣରେ ।

ନିର୍ବାକ୍ ହୋଇ ମୁଁ ତାଙ୍କ ମୁହଁକୁ ଚାହିଁରହିଲି । କେତୋଟି ମୁହୂର୍ତ୍ତପାଇଁ ସିଏ ମଧ୍ୟ ନିର୍ବାକ୍ ହୋଇ ବସି ରହିଲେ । କେମିତି ଅନ୍ୟମନସ୍କ ଭାବରେ ।

ତା' ପରେ ତାଙ୍କ ଥାଳିରୁ ଦୁଇଟି ପୁରୀ କାଢ଼ି ସ୍ନେହମୟ ଭଙ୍ଗୀରେ ମୋ ଥାଳୀରେ ରଖୁ ରଖୁ ମୃଦୁ ସ୍ୱରରେ କହିଲେ - "ଜୀବନଟା ସତରେ ବୃଥା ଗଲା । ଆଉ ଟିକିଏ ପାଠ ପଢ଼ିଥାଆନ୍ତି ହେଲେ !"

●●●

# "ପ୍ରଥମ ଯାତ୍ରା: ଗାଁ'କୁ"

ଗାଁ'କୁ ପ୍ରଥମେ ଯାଇଥିଲି ଛ' ବର୍ଷ ବେଳେ । ଶଗଡ଼ ଗାଡ଼ିରେ ବସି ।

ସରକାରୀ ବୃତ୍ତି ପାଇ, ପି.ଏଚ୍.ଡ଼ି କରିବାକୁ ବାପା ଗଲେ ଲଣ୍ଡନ୍ । କୁନି କୁନି ଚାରୋଟି ଛୁଆ ଧରି କଟକରେ ଏକାରହିବା ବୋଉ ପକ୍ଷରେ ଥିଲା କଷ୍ଟସାଧ । ମୁରବୀ କେହି ନ ଥିଲେ ପାଖରେ । ବୋଉର ବୟସ ଥିଲା ବି କମ୍ । ଠିକ୍ ହେଲା ଗାଁରେ ଯାଇ ରହିବୁ ଜେଜେବାପା, ଜେଜେମା'ଙ୍କ ପାଖରେ । ମୋ'ର ବୟସ ସେତେବେଳେ ଛଅ । ମୋ ତଳଭାଇଟି ଚାରିବର୍ଷର । ତା' ତଳ ଭଉଣୀ ଦୁଇ ଓ କୁନିଭାଇଟି ନିହାତି ଶିଶୁ - ଆଠମାସର । କଟକ ସହରରେ ଜନ୍ମ । ଆଗରୁ କେବେ ଗାଁ ଦେଖିନଥିଲୁ । ଗାଁ ଜିନିଷଟି ଠିକ୍ କଅଣ ସେ ବିଷୟରେ ଧାରଣାଇ ନ ଥିଲା । ବେଶ୍ ଉତ୍ତେଜନା ହେଲା ମନରେ ।

ଆମ ଗାଁଟି ଥିଲା କଟକ ସହରଠାରୁ ବେଶ୍ ଦୂରରେ । ଗାଁକୁ ଯିବାପାଇଁ ବସ୍ ବା ଟ୍ରେନ୍ ନ ଥିଲା । ଖୋର୍ଦ୍ଧା ଯାଏ ଯିବାକୁ ପଡୁଥିଲା ଟ୍ରେନ୍‌ରେ । ଟ୍ରେନ୍‌ରୁ ଓହ୍ଲାଇ ବାକିତକ ରାସ୍ତା ଶଗଡ଼ଗାଡ଼ିରେ ।

ନିର୍ଦ୍ଦିଷ୍ଟ ଦିନ କଟକରୁ ଗଲୁ ଖୋର୍ଦ୍ଧା । ସାଥିରେ କକେଇ । ଷ୍ଟେସନ୍ ବାହାରେ ଶଗଡ଼ଗାଡ଼ି ଅପେକ୍ଷା କରୁଥିଲା ଆମ ପାଇଁ । ଗାଁକୁ ଆଗରୁ ଚିଠି ଲେଖା ହେଇଥିଲା । ନିର୍ଦ୍ଧାରିତ ଟ୍ରେନ୍ ସମୟକୁ ଦେଖି, ଜେଜେବାପା ଶଗଡ଼ଗାଡ଼ି ପଠେଇ ଦେଇଥିଲେ ।

ଜେଜେବାପା ଥିଲେ ଖଣ୍ଡମଣ୍ଡଳର ଜମିଦାର ଓ ବେଶ୍ ବିତ୍ତବାନ୍ । ସ୍ୱଭାବତଃ ଅନେକଗୁଡ଼ିଏ ଶଗଡ଼ ଗାଡ଼ି ଥିଲା ତାଙ୍କର - ଟାଟ ଶଗଡ଼ ଓ ଲୋଦର ଶଗଡ଼ । ଲୋଦର ଶଗଡ଼ରେ ଶସ୍ୟ, ପିଡ଼ିଆ ଇତ୍ୟାଦି ବୁହା ହେଉଥିଲା । ଟାଟ ଶଗଡ଼ଗୁଡ଼ିକ ଥିଲା ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବାପାଇଁ ଉଦ୍ଦିଷ୍ଟ । ଟାଟ ଶଗଡ଼ ଉପରେ ଗୋଲେଇ ହେଇ ଅର୍ଦ୍ଧବୃତ୍ତାକାର ଟାଟିଟିଏ ବୁଲି ଆସିଥିଲା । ଭିତରେ ବସିଲେ, ଖରା ବର୍ଷା ଲାଗୁନଥିଲା ଦେହରେ । ବୋହୂ, ଭୁଆସୁଣୀମାନେ ତା' ଭିତରେ ବସିଲେ, ପଥଚାରୀ ଦର୍ଶକମାନଙ୍କର ଦୃଷ୍ଟି ଆଢୁଆଳରେ ରହୁଥିଲେ ।

ଶଗଡ଼ ସାଥିରେ ଆସିଥିଲେ ବଳଦ ଅଡ଼େଇବାପାଇଁ ଶଗଡ଼ିଆ ଓ ଘରର ବୟୋବୃଦ୍ଧ ହଳିଆ ସାରଥ । ସାରଥ ଆଗରୁ ଥରେ ଦୁଇଥର କଟକ ଯାଇଥିଲା ଓ ଆମେ ତାକୁ ଚିହ୍ନିଥିଲୁ । ମୁରୁଗୁଡ଼ିଆ ଓ କୋରଡ଼ ଆଖିଆ, ବାମନଠାରୁ ସାମାନ୍ୟ ବେଶୀ ଉଚ୍ଚର ମଣିଷଟିଏ । ତଳ ଦାନ୍ତମାଢ଼ିପାଖରେ ଧୂଆଁପତ୍ର ଟେଳେ ଝାକିଦେଇ ଅନବରତ ଗୋଳିଆ ଗୋଳିଆ ପିକ କାଇଦା କରି ପିଚ୍‌କାରୀ ମାରିଲା ଭଳିଆ

ଫିଙ୍ଗୁଥିଲା ବାହାରକୁ । କଥା କହୁଥିଲା କମ୍ ଓ କହୁଥିଲା ବେଶ୍ ଓଜନ୍‌ଦାର୍ ଭାବରେ । ସାନବେଳୁ କାମକରି, ଘରର ଭଲମନ୍ଦରେ ପୂରା ସାମିଲ୍ ହେଇଯାଇଥିଲା ସିଏ । ବେଳପଡ଼ିଲେ ଧମ୍‌କେଇ ଦେଉଥିଲା ଘରର ସଦସ୍ୟମାନଙ୍କୁ । ଥିଲା କିନ୍ତୁ ଏକାନ୍ତଭାବରେ ବଶମ୍ୱଦ ।

ଆମେ ଆଗେ କେବେ ଶଗଡ଼ଗାଡ଼ିରେ ଚଢ଼ିନଥିଲୁ । ଏରୋପ୍ଳେନ୍‌ରେ ଚଢ଼ିବାର ଉତ୍ତେଜନା ନେଇ ନଇଁ ନଇଁ ପଶିଲୁ ଡାଟ ଶଗଡ଼ ଭିତରେ । ଠିଆ ହେଲେ ଡାଟର ଛାତ ବାଜୁଥିଲା ମୁଣ୍ଡରେ । ତଳେ ସଉପ ପରା ହୋଇଥିଲା । ବୋଉ ସହିତ ଜାକିଜୁକି ହୋଇ ବସି ସ୍ଥାନ କରିନେଲୁ ନିଜ ନିଜ ପାଇଁ । କକେଇ ବସିଲେ ସାମ୍‌ନାରେ ଶଗଡ଼ିଆ ପାଖରେ । ଶଗଡ଼ପଛରେ ଦଣ୍ଡା ଧରି ଚାଲିଲା ସାରଥ ।

ଶଗଡ଼ ଆଗେଇ ଚାଲିଲା ଧୀରେ ଧୀରେ, ବିଲମଝିରେ ଶଗଡ଼ଗୁଳାରେ, ବିଭିନ୍ନ ସାନବଡ଼ ଗାଁ ଦାଣ୍ଡରେ ଓ ପାହାଡ଼ ତଳି ମାଟି ରାସ୍ତାରେ । ଚାରିପଟର ଦୃଶ୍ୟାବଳୀ ଆମ ପାଇଁ ଥିଲା ଅଭିନବ । ଗାଁ ମାନଙ୍କୁ ଘେରି ଘଞ୍ଚ ଶୀତଳ ଆମ୍ବତୋଟା, ତାଳବଣ, ପଙ୍କିଳପାଣିର କଇଁଫୁଲ ଭର୍ତ୍ତି ସାନ ସାନ ଚୂଆ ଓ ହିଡ଼ବନ୍ଧା ଅପ୍ରଶସ୍ତ ଧାନକିଆରୀ । ରାସ୍ତାକଡ଼ରେ ଉଲଗ୍ନ, କ୍ରୀଡ଼ାମଗ୍ନ ଶିଶୁ, ବିଲଆଡ଼େ ପଲାଉଥିବା କରିଆ ପିନ୍ଧା ଚଷାପୁଅ ଓ କାଖରେ ଗରା ରଖିଥିବା କୂଅଫେରନ୍ତା ନବବଧୂଙ୍କର ଦଳ - ସଭିଏଁ ଦଣ୍ଡେ ଅଟକି, ଆମ ସହରୀ ଚେହେରା ଦେଖିନେଉଥିଲେ ଆଶ୍ଚର୍ଯ୍ୟାନ୍ୱିତ ଆଖିରେ ।

ଜଙ୍ଗଲିଆ ରାସ୍ତାକଡ଼ରେ ହଠାତ୍ ଆବିଷ୍କାର କଲୁ ସାରି ସାରି ନାଁ' ନଜଣା କୋଳିଗଛ । ସାରଥ କହିଲା କଣ୍ଟେଇ କୋଳି । ତୋଳି ବି ଆଣିଦେଲା ଆମପାଇଁ । କି ମାଦକତା ଥିଲା ସେ ଖଟାମିଠା ଦରପାଚିଲା କୋଳିର ସ୍ୱାଦରେ !

ମଝିରେ ମଝିରେ ବଳଦମାନଙ୍କର ଗତି ସାମାନ୍ୟ ଧିମେଇ ଯାଉଥିଲା । ସେମାନଙ୍କ ଲାଞ୍ଜପାଖରେ ପାଞ୍ଚଣ ଗେଞ୍ଜି ଶଗଡ଼ିଆ କହୁଥିଲା - 'ଇଃ, ଟ, ଟ,' । ଆଉ ତା' ପରେ ବେକବନ୍ଧା ଘଣ୍ଟିଘାଗୁଡ଼ିକୁ ସଜୋରେ ନିନାଦିତ କରି କିଛି ସମୟ ପାଇଁ ସେମାନେ ଦୌଡ଼ିବାକୁ ଆରମ୍ଭ କରିଦେଉଥିଲେ । ସେମାନଙ୍କ କ୍ଷୁରାର ଆଘାତରେ ମାଟିରାସ୍ତାରୁ ରେଣୁ ରେଣୁ ଧୂଳିକଣା ଉଡ଼ି ଜମା ହେଉଥିଲା ଅମ ମୁଣ୍ଡବାଳରେ, ଆଖିପତାରେ ।

ବାହାରେ ଉତ୍ତରମଧ୍ୟାହ୍ନ ଖରାର ତାପ । ଶଗଡ଼ର ଉଠ୍‌ପଡ୍ ଭିତରେ କେତେବେଳେ ନିଦ ଲାଗିଯାଇଥିଲା । ନିଦ ଭାଙ୍ଗିଲାବେଳକୁ ଦେଖେ ସୂର୍ଯ୍ୟ ଠିକ୍ ବୁଡ଼ିଯାଉଛନ୍ତି ପାହାଡ଼ ପଛପଟେ - ସାରା ପଶ୍ଚିମ ଆକାଶକୁ ପାଚିଲା କମଳା ଲେମ୍ବୁ ରଙ୍ଗରେ ବିପର୍ଯ୍ୟସ୍ତ କରି । ସେ ରଙ୍ଗର ଆଭା ପ୍ରତିଫଳିତ ପୃଥିବୀର ବନବିଲ ଓ ଗଛଲତାରେ । ଚଉଦିଗ ନାଲି ଟହଟହ । ଆଉ ଏଇ ରଙ୍ଗର କୁଆର ଭିତରେ, ଆମ ଶଗଡ଼ଗାଡ଼ିଟି ନିଶ୍ଚଳ ହୋଇ ଠିଆହେଇରହିଛି ଏକ କର୍ଦ୍ଦମାକ୍ତ ବିଲ ଭିତରେ ।

ଆମ ଶଗଡ଼ଟି ଚାଲୁଥିଲା କ୍ଷେତ ଭିତରେ ଥିବା ଶଗଡ଼ଗୁଳାରେ । ଦୁଇଦିନ ପୂର୍ବରୁ ପ୍ରଚୁର ବର୍ଷା ହେଉଥିଲା । ବିଲର ଚିକିଟା ମାଟି ସେ ବର୍ଷାରେ ହେଉଉଠିଥିଲା ନରମ୍ ପୁତ୍‌ପୁତ୍ । ଶଗଡ଼ଚକ ଅଟକିଯାଉଥିଲା ସେଇଭଳି ଏକ ଚିକିଟା ମାଟିର ଗର୍ତ୍ତରେ । ଚକ ଯେତେ ବୁଲୁଥିଲା, ସେ କର୍ଦ୍ଦମାକ୍ତ ମାଟି ମନ୍ଥି ହେଇ ଗାତଟି ହୋଇଉଠୁଥିଲା ଆହୁରି ଗଭୀର, ଆହୁରି ପଙ୍କିଳ । ବଦଳ ଦୁଇଟି ଶଗଡ଼କୁ ଟାଣି ଟାଣି ପୂରାମାତ୍ରାରେ ଅବସନ୍ନ ହୋଇ ପଡ଼ିଥିଲେ । ଶଗଡ଼ଚକଟି କିନ୍ତୁ ଲାଖିରହିଥିଲା ଅଧାଅଧି କାଦୁଅ ଭିତରେ ।

ଉକ୍ତସ୍ଥାନରୁ, ଆମ ଗାଁଟି ଥିଲା ପ୍ରାୟ ଏକ କିଲୋମିଟର ଦୂର । ଠିକ୍‌ହେଲା ଆମେ ସବୁ ଶଗଡ଼ରୁ ଓହ୍ଲାଇ ପଦବ୍ରଜରେ ଗାଁକୁ ଚାଲିଯିବୁ । ବାଟ କଢ଼େଇବ ସାରଥ । ଶଗଡ଼ିଆ ରହିବ ଗାଡ଼ିଜଗି । ପରେ ଅନ୍ୟ ହଳିଆମାନେ ଆସି ଶଗଡ଼ଟିକୁ ପଙ୍କରୁ ଉଦ୍ଧାର କରିବେ ।

କୌଣସିମତେ ବଳାଗଣ୍ଠିପର୍ଯ୍ୟନ୍ତ କାଦୁଅରେ ବୁଡି ଶଗଡ଼ରୁ ଓହ୍ଲାଇଲୁ । ସାରଥ, କକେଇ ଓ ବୋଉ ଧରିଲେ ସାନ ସାନ ପିଲା ତିନୋଟିଙ୍କୁ । ମୁଁ ଚାଲି ଚାଲି ଆସିଲି ସେମାନଙ୍କ ସହିତ ।

କିଛିବାଟ ଆସିଲାପରେ ପଡ଼ିଲା ବାଲିଗରଡ଼ା ଭର୍ତ୍ତି ପାଦେପାଣିର କୁନି ଝରଣାଟିଏ । ସାରଥ କହିଲା ଝରଣାଟି କୁଆଡ଼େ ବହିଯାଇଛି ଆମ ବାରିକୁଛୁଇଁ । ଝରଣାରେ ପଶି ଆଗେଇଲେ ଅପେକ୍ଷାକୃତ ଶୀଘ୍ର ପହଞ୍ଚିଯିବୁ ଘରେ । ବିଲବାଟରେ ଗାଁଟି ଦୂରପଡ଼ିବ । ଯୋଜନାଟି ଥିଲା ଚମତ୍କାର । ଦରଶୁଖିଲା ଝରଣା ଭିତରେ ରଙ୍ଗବେରଙ୍ଗୀ ବାଲିଗରଡ଼ା ଗୋଟାଉ ଗୋଟାଉ ମୁଁ ମନଖୁସିରେ ଦୌଡ଼ିଲାଗିଲି ।

ଘରେ ପହଞ୍ଚିଲା ବେଳକୁ ମୁହଁସଂଜ । ନୂଆ ଓ ଅଚିହ୍ନା ମାଟି ଘରଟିରୁ ଉପୁଚି ପଡୁଥିଇା ପାଚିଲା ଧାନର ବାସ୍ନା ଓ ଗୋବରର ଗନ୍ଧ । ଘର, ଦ୍ୱାର, ମଣିଷ ସବୁ ଥିଲେ ଅପରିଚିତ । ବୁଢ଼ାବାପାଙ୍କୁ ଆଗରୁ ଥରେ ଦୁଇଥର କଟକ ଯିବା ସମୟରେ ଦେଖିଥିଲୁ । ବାକୀ ବୁଢ଼ୀମା, ଦଦେଇ ଓ ଦେଠେଇଙ୍କ ଚେହେରା ଆମ ପାଇଁ ଥିଲା ସଂପୂର୍ଣ୍ଣ ରୂପେ ନୂଆ । କଳରବ ବନ୍ଦ୍ କରି ଆମେ ସବୁ ଅଚାନକ୍ ଚୁପ୍ ହେଇଗଲୁ ।

ଦପ୍‌ଦପ୍ କୋଇଲା ଭର୍ତ୍ତିହେଇଥିବା ଚୁଲୀଠାରୁ ସାମାନ୍ୟ ଦୂରରେ ବସାଇ ଦେଠେଇ ବାଢ଼ିଦେଲେ ବାମ୍ଫଉଠା ଗରମ ଭାତ, ବାଇଗଣ ସନ୍ତୁଳା ଓ ଗିନାଭର୍ତ୍ତି ସରଲଗା କ୍ଷୀର ।

ଆଶ୍ଚର୍ଯ୍ୟ କଥା - ସେ କାଠ କୋଇଲାର ଉଷ୍ଣତା, ସେ ବାଇଗଣ ସନ୍ତୁଳାର ସ୍ୱାଦ ଏବଂ ସେ ବହଳିଆ କ୍ଷୀରର ସୁଗନ୍ଧି, ଏତେବର୍ଷ ପରେ ବି ମନେପଡ଼ିଯାଏ ବେଳେ ବେଳେ ।

●●●

# ବାପାମାନଙ୍କ ପାଇଁ

ମୋ'ର ଜଣେ ନିକଟ ଆତ୍ମୀୟ କେଜାଣି କାହିଁକି ମୋ' ଉପରେ ଭାରି ଅସନ୍ତୁଷ୍ଟ । ତାଙ୍କ ମତରେ, ପ୍ରତ୍ୟେକ ମଣିଷପାଖରେ ଈଶ୍ୱରପ୍ରଦତ୍ତ କିଛି ନା କିଛି ଗୋଟିଏ ଭଲଗୁଣ ଥାଏ । ମାତ୍ର ମୁଁ ଏହି ନିୟମର ସଂପୂର୍ଣ୍ଣ ବ୍ୟତିକ୍ରମ ।

ହୁଏତ ତାଙ୍କ କଥା ଇ ଠିକ୍ । ହୁଏତ ମୁଁ ନିହାତି ନିର୍ବୋଧ ଓ ମନ୍ଦବୁଦ୍ଧିର ମଣିଷଟିଏ । କିନ୍ତୁ କେଜାଣି କାହିଁକି ଯେତେବେଳେ ସିଏ ଏଇକଥାଟି କହନ୍ତି, ମୋର ମୋ ବାପାଙ୍କ କଥା ମନେପଡ଼େ । କାରଣ ମୋ ସଂପର୍କରେ ମୋ ବାପାଙ୍କର ଧାରଣା ଥିଲା, ଏଇ ଉକ୍ତିର ସଂପୂର୍ଣ୍ଣ ବିପରୀତ ।

ଏବଂ ମଜାର କଥା, ମୋର ତୀକ୍ଷ୍ଣମେଧା ଓ ବୁଦ୍ଧିମତାର ପରିଚୟ କୁଆଡ଼େ ମୋର ଶୈଶବରୁ ଇ ତାଙ୍କୁ ମିଳିଥିଲା । ଅନ୍ତତଃ ତାଙ୍କ କହିବା କଥା ଅନୁସାରେ ।

ଜନ୍ମ ହେଇଥିଲି ଅଦିନରେ - ଆଠମାସରେ । ସେତେବେଳେ ସାରାରାତି ପ୍ରସାରିତ ଗୋଡ଼ ଭିତରେ ମତେ ଝୁଲାଇ ଝୁଲାଇ ଓ ନାନାବାୟା ଗୀତ ଗାଇ ବାପା ମତେ ଶୁଆଉଥିଲେ । ଗୋଡ଼ ଝୁଲଣାରେ ଆରାମ୍‌ରେ ନିଦ୍ରା ଯାଉଥିଲି । କିନ୍ତୁ ବାପା କୋଳରୁ ଉଠାଇ ତଳେ ଶୁଆଇଦେବାମାତ୍ରେ ଉଠିପଡ଼ି ତାରସ୍ୱରରେ କ୍ରନ୍ଦନ କରୁଥିଲି । ସାରାଜୀବନ ବାପାଙ୍କଠୁ ଶୁଣିଆସିଛି - କାନନବୁଢ଼ୀର ଜନ୍ମରୁ ଇ ବହୁତ ବୁଦ୍ଧି । ଏଡ଼ିକି ଟିକିଏ ଛୁଆ ! କେମିତି ଯେ ଜାଣିବ ବାପା ଗୋଡ଼ରୁ ନେଇ ବିଛଣାରେ ଶୁଆଇଦେଲେ, ସାଙ୍ଗେ ସାଙ୍ଗେ ଉଠିପଡ଼ି କାନ୍ଦିବ । ଅବେଳରେ ଜନ୍ମିଥିବା ରୁଗ୍ଣ ଓ ଦୁର୍ବଳ ଶିଶୁଟିଏ ଯେ ସ୍ୱାଭାବିକ୍ ଭାବରେ ବାପକୋଳର ଉଷ୍ଣତା ଏବଂ ରବରକନାର ଶୀତଳତା ଭିତରେ ପାର୍ଥକ୍ୟ ବାରିପାରିବ, ଏହା ନିହାତି ସାଧାରଣ କଥା । କିନ୍ତୁ ଏଇ ସାଧାରଣ ଘଟଣାଟି ଭିତରେ ମୋ ବାପା ସେତେବେଳେ ମୋର ଅପରିସୀମ ମେଧା ଶକ୍ତିର ପରିଚୟ ପାଇଥିଲେ । କେବଳ ବାପାମାନେ ଇ ବୋଧହୁଏ ଏହା ପାରନ୍ତି । କେବଳ ବାପାମାନେ ।

ବଡ଼ହେଇ ସ୍କୁଲ ଓ କଲେଜରେ ପାଠ ପଢ଼ିଲାବେଳେ କବିତା ଲେଖିଲି । କୈଶୋରରେ ଲେଖା ସେ ସବୁ କବିତା ପାଠକୀୟ ସ୍ୱୀକୃତି ଲାଭକଲା ମଧ । ଦଶମ ବିଷୁବ ମିଳନରେ ଶିଶୁସାହିତ୍ୟିକା ହିସାବରେ ପାଇଥିବା ପୁରସ୍କାରଟି ଆଣିବା ପାଇଁ ବାପାଙ୍କୁ ସାଥିରେ ନେଇଯାଇଥିଲି । ମୋ ଅପେକ୍ଷା ବେଶୀ ଉଲ୍ଲସିତ ହେଇଥିଲେ ବାପା । "ତମର ମନେ ନାହିଁ ? ସେ ନଡ଼ିଆ ତେଲ ଶିଶି କଥା ! ଏତେ କୁନି

ବୟସରେ ବି କି ଚମତ୍କାର ବାକ୍ୟଗଠନ କରି କଥା କହିଥିଲା !" ବାପା ବାରମ୍ବାର ବୋଉକୁ ମନେ ପକାଇ ଦେଉଥିଲେ । ବାପା ସୂଚନା ଦେଉଥିବା ନଡ଼ିଆ ତେଲ ଶିଶି ସଂପର୍କୀୟ ଘଟଣାଟି ଏଇଭଳି । ଅଜସ୍ର ଥର ବାପାଙ୍କ ମୁହଁରୁ ଶୁଣିଛି ।

ମୋ'ର ଖୁବ୍ ସାନବେଳର କଥା । ଦୁଇବର୍ଷ ହେଇ ବି ନ ଥିଲା । ସେତେବେଳେ ମୋର ପ୍ରିୟ ଖେଳିବାସ୍ଥାନଟି ଥିଲା ସିଡ଼ିପାହାଚ । ଉପରମହଲାକୁ ଉଠିଯାଉଥିବା ସିଡ଼ିର କେତୋଟି ପାହାଚ ଚଢ଼ିଯାଇ ସେଇଠି ବସି ପ୍ରାୟ ସମୟ ଖେଳୁଥିଲି । ସିଡ଼ିର ତୃତୀୟ ପାହାଚ ପାଖରେ ଥିବା ଥାକରେ ସଦାସର୍ବଦା ନଡ଼ିଆ ତେଲର ଶିଶିଟିଏ ରଖାଯାଉଥିଲା । ବାପାଙ୍କର ଅଭ୍ୟାସ ଥିଲା ପ୍ରାତଃସ୍ନାନ ପୂର୍ବରୁ ଦେହରେ ନଡ଼ିଆ ତେଲ ଲଗାଇବା । ଶିଶିର ଠିପିଟି ଥିଲା ସୋଲର । ସେଦିନ କେହି ଜଣେ ଠିପିଟି ଶିଶିରୁ କାଢ଼ି ଦେଇଥିଲା ଏବଂ ତେଲ ଜରଜର ଠିପିଟି ପଡ଼ିରହିଥିଲା ଶିଶିଠାରୁ ଅଲଗାହେଇ । ସ୍ୱାଭାବିକ୍ ଭାବରେ ତହିଁରେ କେତୋଟି ପିମ୍ପୁଡ଼ି ଲାଗିଯାଇଥିଲେ । ମୁଁ ସିଡ଼ି ପାହାଚରେ ବସି ଖେଳିବା ସମୟରେ ଠିପିଟି ମୋ ନଜର୍‌ରେ ପଡ଼ିଥିଲା ଓ ତାହା ନେଇ ମୁଁ ପାଟିରେ ଭର୍ତ୍ତି କରିଦେଇଥିଲି । ଏହା ସର୍ବଜନବିଦିତ ଯେ ସାନପିଲାମାନେ କେଜାଣି କାହିଁକି ସବୁଜିନିଷ ଆଗ ପାଟିରେ ଇ ପୂରାନ୍ତି । ମୋର ଏତାଦୃଶ ଅଶାଳୀନ କାର୍ଯ୍ୟରେ ଉତ୍ୟକ୍ତ ହୋଇ ପିମ୍ପୁଡ଼ି ମାନେ ମତେ ଦଂଶନ କରିଥିଲେ ମୋ କାନ୍ଦଶୁଣି ବାପାବୋଉ ଘରୁ ବାହାରି ଆସିଥିଲେ - ବାପା ତାଙ୍କ ପଢ଼ାଘରୁ ଏବଂ ବୋଉ ରୋଷେଇ ଶାଳରୁ । ବୋଉ ମୋ ମୁହଁରୁ ପିମ୍ପୁଡ଼ି କେତୋଟି ଛଡ଼େଇ ଦେଇ ମୋର ଦୁଷ୍ଟାମି ପାଇଁ ମତେ ଚେତାବନୀ ଦେବା ଉଦ୍ଦେଶ୍ୟରେ ଚପେଟାଘାତ କରିବା ଭଙ୍ଗୀରେ ତା ହାତଟି ଉଠାଇଥିଲା । ମୁଁ କୁଆଡ଼େ ସେତେବେଳେ ବୋଉ ହାତଟି ଧରିପକାଇ ତାକୁ କହିଥିଲି - ଭୁଲ୍ ହେଇଯାଇଛି । ମତେ କ୍ଷମାକର । ଆଉ ଏମିତି କାମ କରିବିନି । ଏଣିକି ତମେ କାମ କରୁଥିବ କି ...... ମୁଁ ମନକୁ ମନ ଭଲପିଲା ହେଇ ଖେଳୁଥିବି । ବାପା ବୋଉ କୁଆଡ଼େ ସେତେବେଳେ ମୋର ଶବ୍ଦଜ୍ଞାନ ତଥା ବ୍ୟାକରଣଶୁଦ୍ଧ ବାକ୍ୟଯୋଜନା ଦେଖି ଅବାକ୍ ହେଇଯାଇଥିଲେ ।

ଏ ଘଟଣାଟିରେ ଏତେ ବେଶୀ ପ୍ରାଧାନ୍ୟ ଦେଲାପରି ଅବଶ୍ୟ ମୁଁ କୌଣସି କାରଣ ଖୋଜି ପାଏନି । ମୋ' ଜୀବନରେ ଶୀଘ୍ର ପାଟି ଫିଟିବାର ଅନେକ ଶିଶୁ ମୁଁ ଦେଖିଛି । ଦୁଇବର୍ଷ ବେଳକୁ ଚମତ୍କାର କଥା କହୁଥିବା ଶିଶୁ ମଧ୍ୟ । ମୋର ପୁତ୍ର ତାକୁ ଦୁଇବର୍ଷ ହେଲାବେଳକୁ ଅଜସ୍ର ନର୍ସରୀ ରାଇମ୍ ମୋ ସହିତ ଗାଇ ଗାଇ ମୁଖସ୍ଥ କରିସାରିଥିଲା । ମୋର ଆମେରିକାରେ ରହୁଥିବା ପୌତ୍ରଟି ତାକୁ ଦୁଇବର୍ଷ ହେଲାବେଳେ ତାର ବାର୍ତ୍ତାଳାପରେ ଅନେକ ଦୂରୁହ ଇଂରାଜୀ ଶବ୍ଦର ପ୍ରୟୋଗ କରିବାର ମୁଁ ଦେଖିଛି । ଗୋଟିଏ ଶିଶୁର ମସ୍ତିଷ୍କ ଚଟ୍‌କା ବ୍ଲଟିଙ୍ଗ୍ ପେପର ସଦୃଶ । ଯାହା ଯେଉଁଠାରୁ ଶୁଣେ

ତାହା ଶୋଷିନେବାପାଇଁ ଉତ୍ସୁକ । ତେଣୁ ଗୋଟିଏ ଶିଶୁ ଶୀଘ୍ର କଥା କହିଛି ବୋଲି ଯେ ଭବିଷ୍ୟତରେ ତାର ଭାଷା ଉପରେ ସଂପୂର୍ଣ୍ଣ ନିୟନ୍ତ୍ରଣ ଆସିଯିବ, ଏଭଳି ଭାବିବାର କୌଣସି କାରଣ ନାହିଁ । କିନ୍ତୁ ମୋର ଶୈଶବର କଥନଶୈଳୀକୁ ଭିତ୍ତିକରି ଭବିଷ୍ୟତରେ ମୁଁ ଜଣେ ଲେଖିକା ହେବାର ସମ୍ଭାବନା ରହିଛି ବୋଲି ମୋ ବାପା ଜାଣିପାରିଥିଲେ । କେବଳ ବାପାମାନେ ହିଁ ବୋଧହୁଏ ଏହା ପାରନ୍ତି । କେବଳ ବାପାମାନେ ।

ସ୍କୁଲରେ ପାଠ ପଢ଼ିଲାବେଳେ ବିଭିନ୍ନ ଡ଼ିବେଟ୍ ପ୍ରତିଯୋଗିତାରେ ଆମ ସ୍କୁଲ୍‌କୁ ପ୍ରତିନିଧିତ୍ୱ କରୁଥିଲି । ସଦାସର୍ବଦା ପ୍ରଥମ ସ୍ଥାନ ଅଧିକାର କରୁଥିଲି ମଧ୍ୟ । ଏବେ ବି ପୁରୁଣା ସ୍କୁଲ୍‌ସାଥିଟିଏ କେଉଁଠି କେମିତି ଦେଖାହେଲେ, ସିଏ ସେଇକଥାଟି ହିଁ ମନେପକେଇ ଦିଏ । ଦଶମଶ୍ରେଣୀରେ ପଢ଼ିଲାବେଳେ ଗୋଟିଏ ସମ୍ମାନଜନକ ଆନ୍ତଃସ୍କୁଲ ବକ୍ତୃତା ପ୍ରତିଯୋଗିତାକୁ ଯାଇଥିଲି । ସଭାଟି ଅନୁଷ୍ଠିତ ହେଉଥିଲା କଟକର ଶ୍ରୀରାମଚନ୍ଦ୍ର ଭବନରେ - ଅନେକ ଗଣ୍ୟମାଣ୍ୟ ବ୍ୟକ୍ତିଙ୍କ ଉପସ୍ଥିତିରେ । ବିଷୟବସ୍ତୁଟି ଥିଲା - ଗାନ୍ଧିଜୀ କେବଳ ଭାରତର ନେତା ନୁହଁନ୍ତି, ସମଗ୍ର ପୃଥିବୀର ନେତା ଓ ବିଷୟଟି ଛାତ୍ରଛାତ୍ରୀମାନଙ୍କୁ ପୂର୍ବରୁ ନଜଣାଇ ଉକ୍ତ ସଭାରେ ହିଁ ଘୋଷଣା କରାଯାଇଥିଲା । ପୂର୍ବପ୍ରସ୍ତୁତିର କୌଣସି ସୁଯୋଗ ନ ଥିଲା । ଉକ୍ତ ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରି ଗୋଟିଏ ଶିଲ୍ଡ୍ ଲାଭ କରିଥିଲି । ମୋ' ବକ୍ତୃତାରେ ଉତ୍ସାହୀ ମୋ ବାପାବୋଉ ଗୋଟିଏ ରିକ୍ସାରେ ଯାଇ ସଭାଗୃହର ଶେଷଆଡକୁ ଚୁପ୍‌ଚାପ୍ ବସି ଝିଅର ବକ୍ତୃତା ଶୁଣିଥିଲେ ଓ ମୁଁ ଶିଲଡଟି ଆଣିଲାବେଳେ ହାତତାଳି ମାରିଥିଲେ ।

ଘରକୁ ଫେରି ବାପା ମୋତେ କହିଥିଲେ ଯେ ମୁଁ କୁଆଡ଼େ ବେଶ୍ ତାର୍କିକ ଓ ଯୁକ୍ତିଯୁକ୍ତ ଭାବରେ ବିଷୟବସ୍ତୁଟିର ଅବତାରଣା କରିବାରେ ସକ୍ଷମ ହେଉଥିଲି । ଏବଂ ତର୍କପ୍ରଣାଳୀରେ ମୋର ଏଇ ତତ୍ପରତା ସିଏ କୁଆଡ଼େ ପିଲାଦିନୁ ହିଁ ମୋ ପାଖରେ ଲକ୍ଷ୍ୟ କରିଥିଲେ । ଉଦାହରଣ ସ୍ୱରୂପ ମୋ ଶୈଶବର ଗୋଟିଏ ସାନ ଘଟଣା ବର୍ଣ୍ଣନା କରିଥିଲେ ମଧ୍ୟ ।

ମୋର ଖୁବ୍ ସାନବେଳର କଥା - ସେଇ ଦୁଇବର୍ଷ ପାଖାପାଖି ବେଳର । ଆମ ଘରପାଖ ବସ୍ତିରେ ଗୋଟିଏ ଫେରିବାଲା ରହୁଥିଲା । ମସ୍ତକରେ ଗୁମ୍ଫିତ ବିରାଟକାୟ ଠେକାଉପରେ ପ୍ରକାଣ୍ଡ ବେତଝୁଡ଼ିରେ ବିଭିନ୍ନ ଭୋଜ୍ୟ ବସ୍ତୁ - ରାଶିଲଡୁ, ମୁଆଁ, ବୁଟଭଜା, ବାଦାମଭଜା ଇତ୍ୟାଦି ଧରି ଘର ଘର ଫେରି କରୁଥିଲା । କେବେ କେମିତି ଆମ ଘରକୁ ଆସିଲେ ବୋଉ ତା' ଠାରୁ ଲଡୁ ଓ ବାଦାମଭଜା କିଣୁଥିବାର ଦେଖୁଥିଲି ଓ ପଇସା ବଦଳରେ ମୁଆଁମିଳେ - ଏଇ ତତ୍ତ୍ୱଟି ଜାଣିଯାଇଥିଲି ।

ସେତେବେଳେ ଟଙ୍କାକୁ ଥିଲା ଚଉଷଠି ପଇସା ଏବଂ ଏକପଇସାଟି ଥିଲା ମଝିରେ କଣାଥିବା ଗୋଟିଏ ବର୍ତ୍ତୁଳାକାର ତାମ୍ରମୁଦ୍ରା । ସେଇଭଳି ମୁଦ୍ରାଟିଏ କେବେ

କେଉଁଠି ମତେ ମିଳିଯାଇଥିଲା ଓ ତାହା ସାଇତି ରଖିଥିଲି । ପରଦିନ ଫେରିବାଲାଟି ଆସିଲାବେଳକୁ, ତାମ୍ରମୁଦ୍ରାଟି ତାକୁ ଦେଇ ଏବଂ ମୋର କୁନି ନାଲିରଙ୍ଗର ବେତଟୋପିଟି ତା' ସାମ୍ନାରେ ପ୍ରସାରିତକରି ସର୍ବପ୍ରକାର ଭୋଜ୍ୟବସ୍ତୁରୁ କିଛି କିଛି ମତେ ଦେବାପାଇଁ ତାକୁ ଅନୁରୋଧ କରିଥିଲି । ଫେରିବାଲାଟି ମତେ ବୁଝାଇଥିଲା ଯେ ଗୋଟିଏ କଣାପଇସା ବଦଳରେ ଏତେ କିଛି ଜିନିଷ ମିଳିବା ଅସମ୍ଭବ । ମୁଁ କିନ୍ତୁ ଥିଲି ମୋ ଯୁକ୍ତିରେ ଅଟଳ । ମୁଁ ଯେ ହକ୍ ପଇସା ଦେଇଛି । ବୋଉ ଯଦି ପଇସା ବଦଳରେ ସବୁ ଜିନିଷ ପାଇପାରେ, ମୁଁ ବା କାହିଁକି ନ ପାଇବି ? କୁନିଛୁଆଟିର ଯୁକ୍ତିରେ ଫେରିବାଲାଟି ବେଶ୍ କୌତୁକ ବୋଧ କରିଥିଲା, ଶେଷପର୍ଯ୍ୟନ୍ତ ସମସ୍ତ ଭୋଜ୍ୟବସ୍ତୁ ମୋ ଟୋପିରେ କିଛି କିଛି ପକାଇ ଦେଇଥିଲା ଏବଂ ବାପାଙ୍କୁ ଚାହିଁ ମତବ୍ୟକ୍ତ କରିଥିଲା - ଏ ଛୁଆ ବଡ଼ହେଲେ କଥାରେ ତାକୁ କେହି ପାରିବେନି । ପାଖ ଆରାମ ଚୌକୀରେ ବସି ମୋର ତର୍କକୁ ଉପଭୋଗ କରୁଥିବା ମୋର ଗୁଣମୁଗ୍ଧ ବାପା ଫେରିବାଲାଟିର ମନ୍ତବ୍ୟରେ ଏକମତ ହେଇଥିଲେ । ମୁଁ କିଣିଥିବା ଲଡୁମୁଆଁର ଯଥାଯଥ ମୂଲ୍ୟ ତାହାକୁ ପ୍ରଦାନ କରିଥିଲେ ମଧ ।

ଘଟଣାଟି ନିହାତି ସାଧାରଣ । କିନ୍ତୁ ଏଇ ସାଧାରଣ ଘଟଣାଟିରୁ, ବଡ଼ ହେଇ ମୁଁ ଯେ କେବେ ବକ୍ତୃତା ପ୍ରତିଯୋଗିତାରେ ପ୍ରଥମସ୍ଥାନ ଲାଭ କରିବି, ତାହାର ସମ୍ଭାବ୍ୟ ସୂଚନା ମୋ ବାପାଙ୍କୁ ମିଳିଥିଲା । ଉପପାଦ୍ୟଟି ହାସ୍ୟାସ୍ପଦ ନିଶ୍ଚୟ । କିନ୍ତୁ ଏକଥା ବି ସତ ଯେ କେବଳ ବାପାମାନେ ଇ ଏଇଭଳି ଭାବିପାରନ୍ତି । କେବଳ ବାପାମାନେ ।

ମୋ ବାହାଘର ପରେ ଯେତେବେଳେ ମୁଁ ବିଦା ହେଇ ଶାଶୁଘରକୁ ଆସେ, ବାପା ଅତ୍ୟନ୍ତ ଶୋକାକୁଳ ହେଇପଡ଼ିଥିଲେ । ହାତରେ ମୋର ଆଞ୍ଜୁଳି ଚାଉଳ, କାନ୍ଧରେ ଗଇଁଠାଳ । ଦୁଆର ବନ୍ଧ ଡ଼େଇଁଲାବେଳକୁ ଛାତିକୁ ଆଉଜେଇ ନେଇ ଅଘୋର୍ କାନ୍ଦିଥିଲେ ବାପା । 'ଅଭିଜ୍ଞାନଶକୁନ୍ତଳମ୍'ର ଗୋଟିଏ ଶ୍ଳୋକଃ ଅତ୍ୟନ୍ତ ପ୍ରିୟ ଥିଲା ବାପାଙ୍କର - ସେଇ ଶ୍ଳୋକଃଟି ଯେଉଁଠୁ ଶକୁନ୍ତଳାଙ୍କୁ ପତିଗୃହକୁ ବିଦା କଲାବେଳେ କଣ୍ୱମୁନି କହୁଛନ୍ତି "ମୁଁ ଜଣେ ବନବାସୀ ସନ୍ନ୍ୟାସୀ ହୋଇଥିଲେ ସୁଦ୍ଧା, ସଂସାରର ମୋହମାୟାକୁ ଅନେକ ଦିନ ହେଲା ତ୍ୟାଗ କରିଥିଲେ ସୁଦ୍ଧା, ଶକୁନ୍ତଳାର ବିଛେଦରେ ମୋ ନୟନ ଏଭଳି ବାଷ୍ପାକୁଳ ହେଇଉଠୁଛି । ଗୃହୀ ମଣିଷଟିଏ ଯେତେବେଳେ ତା ଝିଅଟିକୁ ଶାଶୁଘରକୁ ପଠାଇଦେଉଥିବ, କି ଦୁଃସହ କ୍ଳେଶ ଓ ମର୍ମାନ୍ତିକ ବେଦନାର ଶିକାର ସିଏ ହେଉନଥିବ ସତେ !

ବାହାଘରର କେଇଦିନ ପରେ ବିନୟଙ୍କ ସହିତ ଆସାମ ଆସିବାର ଥାଏ । ଯିବାପୂର୍ବରୁ ଗଲି ବାପାବୋଉଙ୍କ ସାଥିରେ ଦେଖା କରିବାକୁ । ମତେ ଦେଖୁ ଦେଖୁ

ବୋଉ କହିଲା "ତୁ ଗଲାଦିନଠୁ ବାପା ଖାଲି କାନ୍ଦୁଛନ୍ତି, କହୁଛନ୍ତି ମୋ ଝିଅର ବହୁତ ପ୍ରତିଭା ଥିଲା । ତାକୁ ଶୀଘ୍ର ବାହା କରିଦେଇ ଭୁଲ୍ କଲି ବୋଧେ । ବୋଉ ଏକଥା ମଧ ଜଣାଇଲା ଯେ ମୁଁ ଶାଶୁଘରକୁ ଯିବାର କେଇଦିନପରେ ଅଚାନକ୍ ଆମର ଦୁଗ୍ଧବତୀ ଗାଭୀଟି ମୃତ୍ୟୁମୁଖରେ ପଡ଼ିଥିଲା । ବାପା କୁଆଡ଼େ ଯା ପରେ କହିଥିଲେ "ମୋ ଝିଅ ସହିତ ମୋ ଘରୁ ଲକ୍ଷ୍ମୀ ବି ବିଦା ହେଇଗଲେ । ନ ହେଲେ ହଠାତ୍ ଗାଇଟି ମରିଯାଇଥାଆନ୍ତା କାହିଁକି ?"

ମୁଁ ଜାଣେ ଯେ ମୁଁ ଗୋଟିଏ ନିହାତି ନଗଣ୍ୟ ମଣିଷ - ସାଧାରଣ ଭାବରେ ଗୁଣ ଏବଂ ଅବଗୁଣ ମିଶା । ସେଭଳି କୌଣସି ପ୍ରତିଭାର ସ୍ଫୁରଣ କେବେ ବି ମୋ'ଠାରେ ଦେଖାଦେଇନି । ଏକଥା ବି ଜାଣେ ଯେ ଆମଘରେ ଗାଇଟିର ମୃତ୍ୟୁ କୌଣସି ଏକ ଅସୁସ୍ଥତା ବଶତଃ ହେଇଥିଲା । ମୋର ଘରୁ ବିଦାହେବା ଏବଂ ଗାଇଟିର ମୃତ୍ୟୁ - ଦୁଇଟିଯାକ ଘଟଣା ଥିଲା ସଂପୂର୍ଣ୍ଣରୂପେ ଯୋଗସୂତ୍ର ବିହୀନ । ଏହା ଭିତରେ ଏକ ଯୌକ୍ତିକ ସଂଯୋଗ, ନିହାତି ଅଯୌକ୍ତିକ ଭାବରେ ମୋ ସ୍ନେହାନ୍ଧ ପିତା ଇ କରି ବସିଥିଲେ ।

ବୋଧହୁଏ କେବଳ ବାପାମାନେ ହିଁ ଏହା କରିପାରନ୍ତି । କେବଳ ବାପା ମାନେ ।



# ସେଇ ଝିଅଟି

ବେଳେ ବେଳେ ଭାରି ମନେପଡ଼େ ସେ ଝିଅଟି ।

ସୁକେଶିନୀ ଶ୍ୟାମାଙ୍ଗୀ ଝିଅ ସ୍କୁଲ୍ ପଢ଼ିଆରେ ଟରଟର ଭଙ୍ଗୀରେ ଚାଲିକି ଯାଉ ଯାଉ ବାରମ୍ବାର ମୋତେ ଫେରିଚାହୁଁଥିବା ଦୃଶ୍ୟଟି ଏବେ ବି ଶୈଶବର ଧୂଆଁଳିଆଁ ସ୍ମୃତିପଟରେ ବେଶ୍ ସ୍ପଷ୍ଟଭାବରେ ମୁଁ ଦେଖିପାରେ । ଗୋଟିଏ ଗୋଟିଏ ମୁହଁ କେମିତି ଯେ ନିଜ ଅଜାଣତରେ ଖୋଦେଇ ହୋଇ ରହିଯାଆନ୍ତି ମନ ଭିତରେ !

ଝିଅଟି ସହିତ ମୋର ଆଳାପ ହୋଇଥିଲା ନୂଆକରି ହାଇସ୍କୁଲ୍‌ରେ ଦାଖଲ ହେବା ପରେ ପରେ ଏବଂ ଗୋଟିଏ ମଜ୍ଜାଦାର ଘଟଣାରୁ ।

ନାଁ ଲେଖା ହୋଇଥିଲା ଚତୁର୍ଥ ଶ୍ରେଣୀରେ । ନାଳ କୂଳେ କୂଳେ, ସାନ ସାନ ଅପରିଚ୍ଛନ୍ନ ବସ୍ତି, ପ୍ରାଚୀନ ଶିବମନ୍ଦିର ଓ କୁଣ୍ଡଳୀକୃତ ଅଜଗର ସଦୃଶ ମୋଟା ମୋଟା ଚେର ପକାଇଥିବା ବୟୋବୃଦ୍ଧ ବରଗଛଟି ଟପି ଓଦା, ସନ୍ତସନ୍ତିଆ ସାହି ଭିତର ରାସ୍ତା ଦେଇ ଚାଲି ଚାଲି ଯାଉଥିଲୁ ସ୍କୁଲ୍ ।

ସ୍କୁଲଟି ଥିଲା ସେ ଇଲାକାର ଏକମାତ୍ର ହାଇସ୍କୁଲ୍ । ପ୍ରାଇଭେଟ୍ ସ୍କୁଲ୍ । ସାମାନ୍ୟତମ ପୁଞ୍ଜି । ଦେଖିବାକୁ ସେଭଳି ସୁଦୃଶ୍ୟ ନ ଥିଲା । କୋଠାବାଡ଼ି ତିଆରି ହେଉଥିଲା ଧୀରେ ଧୀରେ । ସ୍କୁଲର ଶେଷ ଆଡ଼କୁ, ଶିଉଳିଲଗା ପାଚେରୀକୁ ଲାଗିକରି ଥିବା ଚାଳଛପର ଘରଟିରେ ଥିଲା ଚତୁର୍ଥଶ୍ରେଣୀ । ବଖରାଟିର କାନ୍ଥ ଥିଲା ମାତ୍ର ଅଣ୍ଟେ ଉଞ୍ଚର । ବାହାରଟି ଦେଖାଯାଉଥିଲା ପୂରାପୂରି । ପାଚିରୀରେ ମାଡ଼ିଥିବା ଗୁଚ୍ଛ ଗୁଚ୍ଛ ସରୁ ଲାଲ୍‌ଫୁଲ ଫୁଟୁଥିବା ବଣୁଆ ଲତାଟି ମଧ୍ୟ ।

ସ୍କୁଲ ଆରମ୍ଭ ହେବାର ସପ୍ତାହକପରେ ଶ୍ରେଣୀଶିକ୍ଷକ ଦେଲେ ପାଠ୍ୟବହିର ତାଲିକା । ସାର ଉପସ୍ଥିତି ନେଇ ସାରି ବ୍ଲାକ୍‌ବୋର୍ଡ ପାଖରେ ଠିଆହୋଇ ଗୋଟି ଗୋଟି କରି ବହିର ନାଁ ଓ ଲେଖକଙ୍କର ନାଁ ଡ଼ାକିବାକୁ ଲାଗିଲେ ଓ ଆମେସବୁ ତାହା ଖାତାରେ ଟିପିବାକୁ ଲାଗିଲୁ । ସାହିତ୍ୟ, ଭୂଗୋଳ, ଇତିହାସ ଓ ସ୍ୱାସ୍ଥ୍ୟରକ୍ଷା ପରେ ସବାଶେଷକୁ ଆସିଲା ଗଣିତବହି । ଲେଖକଙ୍କର ନାଁ ଥିଲା ଶ୍ରୀଯୁକ୍ତ ରହମତ୍ ଅଲି, କିନ୍ତୁ ସାର୍ ଯେଉଁଭଳି ଭାବରେ ନାମଟି ଉଚ୍ଚାରଣ କରିଥିଲେ, ତାହା ମୋର ଆଠବର୍ଷର ଶ୍ରବଣେନ୍ଦ୍ରିୟ ଠିକ୍ ରୂପେ ଧରିପାରିନଥିଲା । ନାଁଟି ମୋତେ ଶୁଭିଥିଲା ରାମତେଲୀ ପରି ଏବଂ ତାହା ହିଁ ଖାତାରେ ଟିପିରଖିଥିଲି ।

ଠିକ୍ ଆମ ଶ୍ରେଣୀକୁ ଲାଗିକରି ଥିଲା ସ୍କୁଲ୍‌ର ମିଠାପାଣିର କୂଅଟି । କୂଅ ଚାରିପଟେ ସିମେଣ୍ଟ୍‌ର ପଲ୍ଲାଟଟାଣ, ପାଖରେ କତା ଦଉଡ଼ି ବନ୍ଧା ସାନ ଆଲୁମିନିୟମ୍ ବାଲ୍‌ଟିଟିଏ । ଖେଳଛୁଟିବେଳେ ଏକାଦଶ ଶ୍ରେଣୀର ଝିଅମାନେ ଆସି ସେଇ ବାଲ୍‌ଟିରେ କୂଅରୁ ପାଣିକାଢ଼ି ତହିଁରେ ତୃଷା ମେଣ୍ଟାଉଥିଲେ । ଶିକ୍ଷକମାନଙ୍କ କମନ୍‌ରୁମ୍ ଆଗରେ ଗୋଟିଏ ବଡ଼ ଡ୍ରମ୍‌ରେ ପିଇବା ପାଣି ରଖାହେଉଥିଲା ଅବଶ୍ୟ । କିନ୍ତୁ କେଜାଣି କାହିଁକି ଝିଅମାନେ କୂଅପାଣି ପିଇବାକୁ ବେଶୀ ପସନ୍ଦ କରୁଥିଲେ । ହୁଏତ କୂଅରୁ ପାଣିକାଢ଼ିବାକୁ ସେମାନଙ୍କୁ ମଜା ଲାଗୁଥିଲା । ହୁଏତ ଡ୍ରମର ଆବଦ୍ଧଜଳ ଅପେକ୍ଷା କୂପଜଳ ସୁସ୍ୱାଦୁଥିଲା ।

ଯାହାହେଉ, ଝିଅମାନେ ପାଣି ପିଇସାରି ପ୍ରତିଦିନ ବିଲ୍‌କୁଲ୍ କୂଅପାଖକୁ ଲାଗିକରି ଥିବା ଆମ ଶ୍ରେଣୀକୁ ଆସୁଥିଲେ ଓ ଆମ୍ଭମାନଙ୍କ ସହିତ ଖୁସିଗପ କରୁଥିଲେ । ସାନ ସାନ ପିଲାମାନଙ୍କର କଥାବାର୍ତ୍ତା ସେମାନଙ୍କୁ କିଛିଟା କୌତୁକମୟ ମନେହେଉଥିଲା ନିଶ୍ଚୟ ।

ପ୍ରାତ୍ୟହିକ ରୁଟିନ୍ ମାଫିକ୍ ବହି ତାଲିକା ବାହାରିବା ଦିନ ମଧ୍ୟ ଝିଅମାନେ ପାଣି ପିଇସାରି ଆସିଲେ ଆମ କ୍ଲାସ୍‌କୁ । ସେମାନଙ୍କୁ ଦେଖୁ ଦେଖୁ ବେଶ୍ ଉତ୍‌ଫୁଲ୍ଲ ଚିତ୍ତରେ ଏବଂ ଉତ୍ତେଜନାମୟ ଗଳାରେ ଆମ ଶ୍ରେଣୀର ଦୁଇଟି ଝିଅ ଆମର ବହି ତାଲିକା ବାହାରିବା କଥାଟି ସେମାନଙ୍କୁ ଅବଗତ କରାଇ ଦେଲେ ।

– ସତରେ ! ଦେଖି, ଦେଖି । କଅଣ ସବୁ ବହି ଚଳୁଛି ତମ ଶ୍ରେଣୀରେ ? ସେମାନଙ୍କ ଭିତରୁ ସରୁ ଧଡ଼ିଆ ଫିନ୍‌ଫିନ୍ ଧଳାଶାଢ଼ୀ ପିନ୍ଧିଥିବା ଝିଅଟି ବେଶ୍ ଉତ୍ସୁକତାର ସହିତ ପଚାରିବସିଲା । ଝିଅଟି ଥିଲା ଶ୍ୟାମଳୀ କିନ୍ତୁ ଶ୍ରୀମୟୀ । ଗୋଲ୍ ମୁହଁ, ସେ ମୁହଁ ଚାରିପଟେ ଢ଼େଉଢ଼େଉକା ଘଞ୍ଚ କୁଞ୍ଚୁକୁଞ୍ଚିଆ ବାଳ । ସତେ ଅବା ଜହ୍ନମାମୁଁକୁ ଘେରି ଥାକ ଥାକ ଶ୍ରାବଣୀ ବାଦଲର ସାଜ ।

ବହି ତଥା ଲେଖକମାନଙ୍କର ନାଁ ମୋର ମନେଥିଲା । ଗଡ୍‌ଗଡ୍ କରି ବିନା ବିରତିରେ କହିଲାଗିଲି । କିନ୍ତୁ ମୋ ଠାରୁ ଗଣିତବହି ଲେଖକଙ୍କର ନାଁଟି ଶୁଣି ସାରିଲାପରେ ଝିଅଟି ବେଶ୍ ଆଶ୍ଚର୍ଯ୍ୟାନ୍ୱିତ ମନେହେଲା । ବିସ୍ମୟରେ ଭ୍ରୂକୁ କୁଞ୍ଚିତ କରି ମୋତେ ପଚାରିଲା – କଅଣ କଅଣ ? ଆଉଥରେ କହତ ନାଁଟି । ଏବଂ ଉତ୍ତରରେ ମୁଁ ଆଉଥରେ ରାମତେଲୀ ଶବ୍ଦଟି ଦୋହରାଇଥିଲି ।

ମୋ କଥା ଶୁଣି ଝିଅଟି ହସିବାକୁ ଲାଗିଲା । ବେଶ୍ ଉଚ୍ଛୃଙ୍ଖଳଭାବରେ । ତାର ଡ଼ାଳିମ୍ବ ମଞ୍ଜି ପରି ସରୁ ସରୁ ସମାନିଆ ଉଜ୍ଜ୍ୱଳ ଦାନ୍ତତକ ଝଟକି ଉଠିଲା ସେ ହସରେ । ହସ ବନ୍ଦ କରି ଝିଅଟି କହିଲା – ଯାଃ ! ରାମ ତେଲୀ ନୁହେଁ । ଗଣିତ ବହିର

ଲେଖକ ହେଉଛନ୍ତି ରହମତ୍ ଅଲ୍ଲୀ । ବେଶ୍ ବଡ଼ ଗଣିତଜ୍ଞ । ସ୍କୁଲପିଲାଙ୍କ ଅଙ୍କବହି ସବୁ ପ୍ରାୟ ସିଏ ଇ ଲେଖନ୍ତି । ଆମେ ବି ତାଙ୍କ ବହି ପଢ଼ିଛୁ । ଏଡ଼େ ବୋକୀ ଟେ ତୁ ? ରହମତ୍ ଅଲୀକୁ ଶେଷକୁ ରାମତେଲୀ ବନେଇ ଦେଲୁ ?

ଏଥରକ ଥିଲା ମୋ' ପାଇଁ ଅପରିସୀମ ଲଜ୍ଜ୍ୟାରେ ମାଟିରେ ମିଶିଯିବାର ପାଳି । ଏତେ ବଡ଼ ଗଣିତଶିକ୍ଷକଙ୍କ ନାଁଟି ଠିକ୍ ଧରି ନ ପାରି ଅଜାଣତରେ ତାଙ୍କୁ 'ରାମ' ନାମଧାରୀ ଏକ ତେଲ ବେପାରୀରେ ପରିଣତ କରି ଦେଇଥିବା ହେତୁ ।

ଏବଂ ଠିକ୍ ସେଇଦିନୁ ସେଇ ଶ୍ୟାମଳୀ ଝିଅଟି ସହିତ ମୋର ନିବିଡ଼ ଅନ୍ତରଙ୍ଗତା ହୋଇଗଲା । ଝିଅଟି କେଜାଣି କାହିଁକି ଧୀରେ ଧୀରେ ଅତ୍ୟନ୍ତ ସ୍ନେହଶୀଳ ହୋଇପଡ଼ିଲା ମୋ' ପ୍ରତି । ପ୍ରତ୍ୟେକ ଦିନ ଖେଳଛୁଟିରେ ଆସି ଗପ କରୁଥିଲା ମୋ' ସହିତ । ପାଠପଢ଼ା କଥା, ଘରକଥା, ଭାଇ ଭଉଣୀଙ୍କ କଥା । ମୋ ବିଷୟରେ ତାର ଉତ୍ସୁକତାର ଅନ୍ତ ନ ଥିଲା ଯେମିତି ଏବଂ ପ୍ରତ୍ୟେକ ଦିନ ତା କ୍ଲାସକୁ ଫେରିଯିବା ଆଗରୁ ମୋତେ ପଚାରୁଥିଲା ସେଇ ଗୋଟିଏ ପ୍ରଶ୍ନ-ଗଣିତବହିର ଲେଖକ କିଏ କହତ ! ଲେଖକଙ୍କର ନାଁଟି ସେତେବେଳକ ମୁଁ ଜାଣି ଯାଇଥିଲେ ସୁଦ୍ଧା, ଏକଦା ତାଙ୍କପ୍ରତି କରିଥିବା ଚରମ ଅପରାଧର ବୋଝରେ ନତମସ୍ତକ ହୋଇ ନିରୁତ୍ତର ଭାବରେ ଠିଆହୋଇ ରହୁଥିଲି । ନାଁଟି ଉଚ୍ଚାରଣ କରିବା ପାଇଁ ସାହସ ହେଉନଥିଲା ମୋର ।

ପ୍ରାୟ ମାସକ ପରେ ।

ସେଦିନ ଖେଳଛୁଟିରେ ଝିଅଟି ମୋ' ପାଖକୁ ଆସିଲାବେଳକୁ ତା ମୁହଁଟି ବେଶ୍ ବିଷନ୍ନ ଦିଶୁଥିଲା । ଦୁଃଖଦ ସ୍ୱରରେ ଝିଅଟି ମୋତେ ଜଣାଇଲା ଯେ ତା ପିତାମାତାଙ୍କର ଏ ସହରରୁ ଅନ୍ୟତ୍ର ବଦଳି ହୋଇଯାଇଛି ଏବଂ ସିଏ ଆଉ ସ୍କୁଲ ଆସିବନି । ଏକଥା ମଧ୍ୟ ଜଣାଇଦେଲା ଯେ ସେ ଅନ୍ୟ ଜାଗାକୁ ଗଲେ ସୁଦ୍ଧା, ପୁରୁଣା ସ୍କୁଲ୍‌କଥା, ସାଙ୍ଗ ସାଥିମାନଙ୍କ କଥା ଏବଂ ବିଶେଷକରି ମୋ' କଥା ତାର ଖୁବ୍ ମନେପଡ଼ିବ । ଏବଂ ସତକୁ ସତ ଝିଅଟି ତା' ପରଦିନ ସ୍କୁଲ୍ ଆସିଲାନି । ଏବଂ ସେଇହେତୁରୁ ଖେଳଛୁଟିଟି ମତେ ଦୀର୍ଘତର ଜଣାପଡ଼ିଲା ମଧ୍ୟ ।

ପ୍ରାୟ ଦୁଇମାସ ପରେ ପୁଣି ଥରେ ଅପ୍ରତ୍ୟାଶିତ ଭାବରେ ଦେଖାହେଲା ଝିଅଟି ସହିତ ।

ଦିନେ ଆମର ଭୂଗୋଳ କ୍ଲାସ ଚାଲିଥିବା ସମୟରେ ସ୍କୁଲ୍ ପିଅନଟି ଆମ ଶ୍ରେଣୀକୁ ପଶିଆସି ଏବଂ ମୋ' ନାଁଟି କହି ବାହାରେ କେହିଜଣେ ମୋ ପାଇଁ ଅପେକ୍ଷା କରୁଛନ୍ତି ବୋଲି ଶ୍ରେଣୀଶିକ୍ଷକଙ୍କୁ ଜଣାଇଥିଲା । ଶିକ୍ଷକଙ୍କଠାରୁ ଅନୁମତି ଆଣି ବାହାରକୁ ଆସି ଦେଖିଲି - ସ୍କୁଲପଡ଼ିଆରେ କଡ଼ିକିଆ ହୋଇ ବଢ଼ିଥିବା ଘଞ୍ଚ ପଣସଗଛଟିର

ଛାଇରେ ଠିଆ ହୋଇଛି ସେଇ ଶ୍ୟାମଳୀ, କୁଞ୍ଚିତ କେଶା ଝିଅଟି । ମୋତେ ଦେଖି ଭାରି ସ୍ନିଗ୍ଧ ଭାବରେ ହସିଲା ସିଏ ।

- ତମେ କଅଣ କଟକ ପଳେଇ ଆସିଲଣିକି ? ମୁଁ ପଚାରିଲି

- ନା, ନା, ଝିଅଟି ଉତ୍ତର ଦେଲା ।

- ଆଉ ସ୍କୁଲକୁ ଆସିଚ ଯେ ।

- ବାପା ମା' କୌଣସି କାମରେ କଟକ ଆସିଛନ୍ତି । ମୁଁ ବି ଆସିଛି ତାଙ୍କ ସାଥିରେ । ଆଉ ସ୍କୁଲକୁ ଆସିଛି କେବଳ ତତେ ଦେଖିବାପାଇଁ ।

ଝିଅଟିର ଉତ୍ତର ଶୁଣି ଆଶ୍ଚର୍ଯ୍ୟ ହେଲି । ଏତେ ଭଲପାଏ ମୋତେ ଝିଅଟି ? ଏତେ ହଇରାଣ ହୋଇ ଆସିଛି କେବଳ ମୋତେ ଦେଖିବା ପାଇଁ ? ଘଟଣାଟି ବିଶ୍ୱାସ କରିବା ମୋ' ପାଇଁ ଥିଲା କଷ୍ଟକର ।

କ୍ଲାସ୍ ଚାଲିଥିଲା, ଝିଅଟି ଅଳ୍ପ ସମୟ ମୋ' ସହିତ ଗପକରି ଯିବାପାଇଁ ଉଦ୍ୟତ ହେଲା । ଏବଂ ଯିବାପୂର୍ବରୁ ସବୁଥର ପରି ମୋ ଗାଲ ଚିପିଦେଇ ପଚାରିଲା ତା'ର ସେଇ ଚିରାଚରିତ ପ୍ରଶ୍ନଟି - ଗଣିତ ବହିର ଲେଖକ କିଏ କହତ ! ଏବଂ ସବୁଥରକ ପରି, ନାଁ ଟି ଜାଣିଥିଲେ ସୁଦ୍ଧା ତୀବ୍ର ଏକ ଅପରାଧବୋଧର ଭାରରେ ପୀଡ଼ିତ ହୋଇ ଏଥରକ ମଧ୍ୟ ମୁଁ ନୀରବ ରହିଲି ।

ଝିଅଟି ତରତର ହୋଇ ମୁହାଁଇଲା ସ୍କୁଲ୍‌ଗେଟ୍‌ଆଡ଼େ । ଯିବାପୂର୍ବରୁ ବୁଲିପଡ଼ି ମୃଦୁହସି ମନେପକାଇ ଦେଲା - ମୋତେ ଭୁଲିବୁନି । ଆଉ ଗଣିତବହି ଲେଖକର ନାଁଟି ମଧ୍ୟ ମନେ ରଖିବୁ । ସେ ନାଁଟି ମୁଁ ଇ ତତେ ବତେଇଥିଲି ।

ମୁଁ ସେ ଝିଅଟିକୁ ଆଜି ପର୍ଯ୍ୟନ୍ତ ଭୁଲିନି, ଏବଂ ତା' ସହିତ ଗଣିତ ବହିର ଲେଖକଙ୍କର ନାଁଟି ମଧ୍ୟ ।



# ଶୈଶବ

ଘର ସାମ୍ନାରେ ଥିଲା ଘଞ୍ଚ ନାଗୁଆରି ବଣ । କଣ୍ଟାଳିଆ ମଟ୍‌କା ଡ଼ାଳ । ପତ୍ରତକ ଟାଆଁସା ଓ ଗୁମ୍‌ଗୁମିଆ । ବୁଦାତକ କାମ ଦେଉଥିଲା ପାଚିରୀର । କଣ୍ଟାବାଡ଼ ଡେଇଁ ଚଟ୍‌କି କେହି ହତାଭିତରେ ପ୍ରବେଶ କରିପାରୁନଥିଲେ । ଆଉ ଅଜସ୍ର ଫୁଲ ଫୁଟୁଥିଲା ସେ ନାଗୁଆରି ଗଛରେ । ସାଦା, ଗୋଲାପି ପାଖୁଡ଼ା ମିଶା କୁନି କୁନି ଫୁଲ । ଫୁଟୁଥିଲା ପେନ୍ଥି ପେନ୍ଥି ହୋଇ । ବୃନ୍ତଯାକ ମହୁରେ ଟୁଲ୍‌ଟୁଲ୍ । ଫୁଲ ଝଡ଼ିଗଲେ, ସେ ଜାଗାରେ ଜନ୍ମ ନେଉଥିଲେ ଗୁଚ୍ଛଟିଏ ବୁଟ ଆକାରର ସବୁଜରଙ୍ଗର ଫଳ । ସେ ଫଳ ପାଚିଲେ ରଙ୍ଗ ଧରୁଥିଲା ଜାମୁକୋଳିର । ପାଚିଲେ ତା ରସ ଲାଗୁଥିଲା ନବାତ ପରି ।

ମହୁ ପିଇବାକୁ ଅଜସ୍ର କକି ଆସି ବସୁଥିଲେ ସେ ମଧୁସ୍ରାବୀ ଫୁଲ ଉପରେ । ଫିକା ସାବ୍‌ଜା ଡ଼େଣାର ଅସ୍ଥିର କକିମାନେ । ଭାରି ସ୍ୱଚ୍ଛ ଥିଲା ସେମାନଙ୍କର ଡ଼େଣା । ତା ଦେହରେ ଅଙ୍କା ହୋଇଥିବା ସରୁ ସରୁ ରେଖାଚିତ୍ର ସବୁ ବାରି ହୋଇପଡୁଥିଲା ସହଜରେ । ଫୁଲରେ ବସିଲାବେଳେ ବଡ଼ ଡ଼େଣା ଯୋଡ଼ିକ ଯୋଖି ଦେଉଥିଲେ ସେମାନେ । ଛପି ଛପି ଯାଇ ଏକାଗ୍ରତାଚିତ୍ତରେ ରସାସ୍ୱାଦନ କରୁଥିବା ସେ କକିର ଡ଼େଣାକୁ ଦୁଇ ଆଙ୍ଗୁଠିରେ ଜାବୁଡ଼ି ଧରିପକାଉଥିଲୁ । କକି ଦେହରେ ସୂତାଟିଏ ବାନ୍ଧି ଛାଡ଼ିଦେଉଥିଲୁ ଉପରକୁ । ଲମ୍ବସୂତାର ଗୋଟିଏ ପଟ ଆମହାତରେ । ଆଉ ପଟେ ଫର୍‌ଫର୍ ହୋଇ କକି ଉଡୁଥିଲା ଶୂନ୍ୟରେ ।

ଘର ଆଗଦେଇ ବହିଯାଉଥିବା ନାଳକୂଳେ ଥିଲା ଗଇଣଫୁଲର ଆସର । କ୍ଷୁଦ୍ର ପେଣ୍ଡୁ ଆକାରର ମଞ୍ଜରୀ ଭିତରେ ସାନ ସାନ ଦୁଧସାଦା ଗଇଣଫୁଲ । ସେ ଫୁଲର ନାଡ଼ ଥିଲା ସରୁ । ଗୋଟିଏ ଫୁଲର ନାଡ ଭିତରେ ଆଉ ଗୋଟିଏ ଫୁଲର ନାଡ ପଶି ଯାଉଥିଲା । ନାଡରେ ନାଡକୁ ଯୋଖି ତିଆରି କରୁଥିଲୁ ମଥମାରେ ପିନ୍ଧିପାରିଲା ଭଳି ମୁଦିଟିଏ । ଘରପାଖ କାଦୁଆ ଖାଲି ଜମିଟିରେ ଥିଲା ଅପର୍ଯ୍ୟାପ୍ତ ଚାକୁଣ୍ଡା ବୁଦା । ତାର ଟୁକ୍ ଟୁକ୍ ହଳଦିଆ ଫୁଲଉପରେ ସେଇ ରଙ୍ଗର ଅଜସ୍ର ପ୍ରଜାପତି ଉଡ଼ିବୁଲୁଥିଲେ ସାରା ଦିନ । ରଙ୍ଗିନ୍ କାଗଜର ସାନ ସାନ ଟୁକ୍‌ଡ଼ା ପରି ଦିଶୁଥିଲେ ସେମାନେ । କକି ଧରିବାରେ ମନ ଭରିଗଲେ ଦୌଡ଼ି ଦୌଡ଼ି ଧରୁଥିଲୁ ପ୍ରଜାପତି ।

ଏଇ କର୍ଦ୍ଦମାକ୍ତ ଚାକୁଣ୍ଡାବଣଟି ଥିଲା ଶୂକରମାନଙ୍କର ପ୍ରିୟ । ମଝିରେ ମଝିରେ ବିରାଟ ଘୁଷୁରିପଲ୍ଲ ନେଇ ଚରେଇବାକୁ ଆସୁଥିଲେ ଘୁଷୁରିଆମାନେ । ସେ ଘୁଷୁରିସବୁ ପଡ଼ିଆରୁ ମଇଳା ଖୋଜି ଖାଇ ଓ କାଦୁଅରେ ସାରା ଦେହ ଲଟ୍‌ପଟ୍‌କରି ବେଶ୍ କିଛି ସମୟ ଧରି କୌତୁକ କରିଯାଉଥିଲେ ସେଠି ।

ଅପରାହ୍ଣରେ କଙ୍କି ଓ ପ୍ରଜାପତି ଧରିବା ବ୍ୟତୀତ, ଅନ୍ୟ ଦୁଇଟି ଖେଳ ଖେଳୁଥିଲୁ ନିୟମିତ ରୂପେ । କିତ୍‌କିତ୍ ଓ ବୋହୂଚୋରି । ଘରସାମ୍ନା କଚା ନାଲିଗୋଡ଼ିର ରାସ୍ତାରେ । ଟ୍ରାଫିକ୍‌ର ସମସ୍ୟା ନ ଥିଲା । ଥିଲା ହାତଟଣା ରିକ୍ସାର ଯୁଗ । କଦବା କେମିତି ଖେଳ ମସ୍‌ଗୁଲ୍ ଦେହ ଯାଇ ଧକ୍‌କା ଖାଉଥିଲା ପଥଚାରୀ ସାଇକେଲ୍ ଚଢ଼ାଳୀ ସହିତ । କିନ୍ତୁ ସେଥିପାଇଁ ପରୁଆ ନ ଥିଲା । ବାଡ୍‌ମିଣ୍ଟନ୍ ବା କ୍ରିକେଟ୍‌ର ନାଁ ଶୁଣିନଥିଲୁ ସେତେବେଳେ ।

ମନୋରଞ୍ଜନର ଅନ୍ୟ ଏକ ସାଧନ ଥିଲା ସାପଖେଳ ଦେଖିବା । ଅନେକ ସାପୁଆକେଳା ଆସୁଥିଲେ କଲୋନୀକୁ । ବଡା ଭାରରେ ସାନବଡ଼ ଚାରୋଟି ପେଡ଼ି ଓହଳାଇ । ପେଡ଼ି ଭିତରେ ଭଳି ଭଳି ଚିତ୍ରବିଚିତ୍ର ସାପ । ବୋଉ ପାଖରେ ଅଳିକରି ପଇସା ଆଣି ସାପୁଆକେଳାକୁ ଡ଼ାକୁଥିଲୁ ପିଣ୍ଡାପାଖକୁ । କଉଡ଼ିଖଞ୍ଜା ପେଟୁଆ ମହୁରୀ ବଜାଇ ସୁରେଲା କଣ୍ଠରେ ଗୀତ ଗାଉଥିଲା ସାପୁଆ କେଳା - "ଇନ୍ଦ୍ରର ଘରଣୀ ଚନ୍ଦ୍ରାବତୀ ରାଣୀ ସେ କଲା ଧନିତିରୀ ଓଷା, ଲକ୍ଷେ ଭାର ପଦ୍ମ ଦେବୁରେ କହ୍ନାଇ ନ ଥିବ ପାଖୁଡ଼ା ମିଶା କି ଗୋବିନ୍ଦ ହରି" । ଭୟାବହ ନାଗ ଓ ଗୋଖୁର ସାମ୍ନାରେ ଆଣ୍ଠୁଟି ହଲାଇ ହଲାଇ କେଳା ଗାଉଥିଲା ପଦ୍ମତୋଳା । ମଝିରେ ମଝିରେ ଧିମେଇ ପଡିଥିବା ସାପକୁ ଉତ୍ତେଜିତ କରିବାପାଇଁ ତା' ଲାଞ୍ଜରେ ଟିକିଏ ହାତମାରି ଦେଉଥିଲା । ଭୂଇଁଉପରକୁ ମୁଠୁଣିଏ ଉଠି, ପାଦୁକା ଚିହ୍ନଥିବା ଚିତ୍ରିତ ଫଣାକୁ ଯଥାସାଧ୍ୟ ବିସ୍ତାର କରି ମଦ୍ୟପର ଭଙ୍ଗୀରେ ଦୋହଲୁଥିଲା ସେ ସାପ, ଏପଟରୁ ସେପଟ । ମଣିପରି ଝଟକୁଥିବା ତା ଆଖିରେ ସମ୍ମୋହିତ କରୁଥିଲା ଦର୍ଶକମାନଙ୍କୁ ।

ଥରଟେ, ଆମ ଘର୍‌ରେ ଖେଳ ଦେଖାଇବା ସମୟରେ, ଆମ ନାଗୁଆରି ବଣ କରରେ ସର୍‌ସର୍ ହେଇ ଚାଲିଯାଉଥିବା ଗୋଟିଏ ବିଷଧର ସାପକୁ ଜନୈକ ସାପୁଆକେଳା ଧରିଥିଲା । ସର୍ପଟି କିନ୍ତୁ ଦଂଶନ କରିଥିଲା ତାକୁ । କେଳାଟି ତାର ମୁଣିରୁ ଆଟମଞ୍ଜି ସଦୃଶ ଦିଶୁଥିବା ଜାରମହୁରାଟିଏ କାଢ଼ି ଲଗେଇଦେଲା ତା କ୍ଷତ ସ୍ଥାନରେ । ଟେଳାଏ ଗଦ ଓ ଅନ୍ୟ କିଛି ଔଷଧ ପାଟିରେ ପୂରାଇ ନିସ୍ତେଜ ପ୍ରାୟ ପଡ଼ିରହିଲା ଭୂଇଁରେ ଅନେକ ସମୟ ଧରି । ଓଠ ସନ୍ଧିରୁ ଧାର ଧାର ହେଇ ବହିଗଲା ଫେଣ ଓ ଗରଳର ଧାର । ସାପର ଫଣାଟି କିନ୍ତୁ କେଳା ତା ଡ଼ାହାଣ ହାତ ମୁଠାରେ ଚିପି ଧରିଥିଲା ସାରାକ୍ଷଣ । କିଛି ସମୟ ପରେ ସାଷ୍ଟାମ ହେଲା ଲୋକଟି । ସାନ ହତିଆରଟିଏ ଥଳିରୁ କାଢ଼ି ନିପୁଣ ହାତରେ ଉପାଡ଼ି ଦେଲା ସାପର ବିଷଦାନ୍ତ । ଜମାହୋଇଥିବା ଅବାକ୍ ଜନତା ସାମ୍ନାରେ ନୂଆ ସାପଟିକୁ ଖେଳାଇ ବିଦାୟ ନେଇଥିଲା ସେଦିନ ।

ସାପୁଆକେଲା ସାପସହିତ ଗୋଟିଏ ସାନ ପେଡ଼ିରେ ଆଣୁଥିଲା ଗୋବିନ୍ଦି ମୂଷା । ବେଶ୍ ବଡ଼ ଆକାରର ଦୀର୍ଘ ଲୋମଯୁକ୍ତ ଚତୁର ମୂଷିକଟିଏ । ଟ୍ରେନିଂ ପାଇ ଚମତ୍କାର ଖେଳ ଦେଖାଉଥିଲା ସେ ମୂଷା । ଗୋଟିଏ ଲମ୍ବ ଦଉଡ଼ିରେ ଚଢ଼ି । ଦେଢ଼ଶୁର ଆସିଲେ କିପରି କୂଅରୁ ପାଣି କାଢ଼ିବ କହିଲେ ସୁସ୍ଥିର ଭାବରେ ଚାଲି ଏବଂ ଏପଟ ସେପଟକୁ ତରକି ଅନାଇଁ, ଧୀରେ ଧୀରେ ଦଉଡ଼ି ଟାଣୁଥିଲା ହାତରେ ।

ଆଉ ଆସୁଥିଲା ମାଙ୍କଡ଼ନଚା । ସାନ ଡ଼ମ୍ବରୁଟିଏ ବଜାଇ । ସେ ଡ଼ମ୍ବରୁର ନାଦରୁ ଆମେ ତାର ଆସିବାର ଖବର ପାଇଯାଉଥିଲୁ । ସାଥିରେ ଆଣୁଥିଲା ରାମଦାସ୍ ନାମଧାରୀ ଶୀର୍ଣ୍ଣକାୟ, ପ୍ରାୟ ଲୋମଶୂନ୍ୟ ଗୋଲାପିମୁହାଁ ବାନରଟିଏ । ବାନରଟିର ଦେହରେ ମସିଆ ଛିଟକନାର କୁଞ୍ଚଲଗା ଜାକେଟ୍ । ପାଦରେ ଘୁଙ୍ଗୁର । ବୃତ୍ତାକାରରେ ବୁଲି ବୁଲି ଓ ମାଟିଉପରେ ମାଙ୍କଡ଼ଚିତ୍ ମାରି ଛାତିଛାତିକା ଖେଳ ଦେଖାଉଥିଲା ରାମଦାସ୍ । ସାନବାଡ଼ିଟିଏ କାନ୍ଧଉପରେ ସ୍ଥାପିତ କରି, ବେଶ୍ ଗାମ୍ଭୀର୍ଯ୍ୟମୟ ନବାବୀ ଠାଣୀରେ ଜୋଇଁ ସାଜି ଶ୍ୱଶୁର ଘରକୁ ଯିବାର ଭଙ୍ଗୀ ଅନୁକରଣ କରୁଥିଲା ଆମ ସାମ୍ନାରେ ।

ଶୈଶବର ସବୁଠୁ ମନୋହର ଋତୁଥିଲା ବର୍ଷାଋତୁ । କାରଣ ବର୍ଷାଋତୁ ଥିଲା ଇନ୍ଦ୍ରଧନୁର ଋତୁ । ଝିରିଝିରି ବୁନ୍ଦା ପଡ଼ିଲେ, ସମ୍ମୁଖସ୍ଥ କଲେଜହତାରେ ଥିବା ସାରିବନ୍ଧ, ଉଚ୍ଚ ଦେବଦାରୁମାନଙ୍କ ପଛପଟେ ନୀଳମେଦୁର ଆକାଶକୁ ମୋହମୟ କରି ଅଚାନକ୍ ଶୂନ୍ୟରେ ଝୁଲିପଡୁଥିଲେ ଯୋଡ଼ିଏ ଇନ୍ଦ୍ରଧନୁ - ଗୋଟିଏ ଗାଢ଼ରଙ୍ଗର ଏବଂ ତା ଉପରଟି ଫିକା ରଙ୍ଗର । ବର୍ଷାଦିନେଇ ବାହାରୁଥିଲା ଲାଲ୍‌ଟୁକ୍‌ଟୁକ୍ ସାଧବ ବୋହୂ - ରକ୍ତବର୍ଣ୍ଣ ସାର୍ଟିନ୍‌ର ପାଟ ଶାଢ଼ୀ ପିନ୍ଧି । କେବଳ ବର୍ଷାଦିନେ । ବାକୀ ସାରାବର୍ଷ କେଉଁଠି ଲୁଚୁଥିଲେ ଈଶ୍ୱର ଜାଣନ୍ତି । ଏବଂ ବର୍ଷାଦିନେ ବାହାରୁଥିଲେ ଝଡ଼ିପୋକ । ହଜାର ହଜାର ସଂଖ୍ୟାରେ । ମାଟି ଅଗଣାରେ ଥିବା ଗର୍ତ୍ତରୁ ବାହାରି ଉର୍ଦ୍ଧି ହୋଇଯାଉଥିଲେ ଘରସାରା । ମରିଯାଉଥିଲେ କିଛି ସମୟ ପରେ । ପତଳା ଡ଼େଣାସବୁ ଛିଣ୍ଡି ବିଛାଡ଼ି ହେଇପଡୁଥିଲା ଏଠି ସେଠି । ବୋଉ ପିଣ୍ଡା ଓଳେଇଦେଲାବେଳକୁ ବେତୁଲିଏ ହବ ମୃତ ଝଡ଼ିପୋକ ଓ ଝଡ଼ିପୋକର ଡ଼େଣା ।

ବର୍ଷା ହେଲେଇ ଘର ସାମ୍ନା କଚାରାସ୍ତାରେ ପାଣିଜମୁଥିଲା ଏଠି ସେଠି । ସେଇ ପାଦେ ପାଦେ ଗେରୁଆ ପାଣିକୁ ପାଦରେ ଚାବୁର୍‌ଚାବୁର୍ କରି ଖେଳୁଥିଲୁ ଅନେକ ସମୟ ଧରି । କି ଯେ ଆନନ୍ଦ ମିଳୁଥିଲା ତହିଁରୁ ! ଅନେକ ଅନେକ ବର୍ଷପରେ ଗୋଟିଏ ଇଂରାଜୀ ପତ୍ରିକାରେ ପଢ଼ିଥିଲି - ଯେଉଁଦିନ ରାସ୍ତାରେ ଜମା ହେଇଥିବା ଗୋଳିଆ ପାଣିରେ ନପଶି ଅମେ ବାଟଭାଙ୍ଗି ଚାଲିଯାଉ, ସେଇଦିନ ଇ

ବୁଝିବାକୁ ହବ ଆମେ ବଡ଼ ହେଇଯାଉଛୁ । ଶୈଶବ ବିଦାୟ ନେଉଛି ଆମଠୁ । ନିରାଟ ସତକଥା ।

ବର୍ଷାଦିନେଇ ପାଚୁଥିଲା ଜାମୁକୋଳି । ନିଘଞ୍ଚ ବୃକ୍ଷଟି ଥିଲା ଆମ ପଡ଼ୋଶୀଙ୍କର । କିନ୍ତୁ ସେ ବୃକ୍ଷର ସବୁତକ ଡ଼ାଳ ନଇଁ ପଡ଼ିଥିଲା ଆମ ବାରିକୁ । ରସ ଟସ୍‌ଟସ୍ ଜାମୁତକ ପାଚି ଝଡ଼ିପଡୁଥିଲା ଆମ ପଟେ । ମାଟିଉପରେ ଇଞ୍ଚେ ବହଳର ଦରଫଟା ମିଠାଜାମୁର ଆସ୍ତରଣ । ଜିଭ ବାଇଗଣୀ ରଂଗ ଧରୁଥିଲା ସେ ଜାମୁ ଖାଇ ଖାଇ । ବର୍ଷାଦିନେ ବି ପାଚୁଥିଲା ପିଜୁଳି - ଆମ ଅଗଣାରେ ଥିବା ଗଛଟିରେ । ଟେନିସ୍ ବଲ୍ ଆକାରର ଫଳ - ମଞ୍ଜିକମ୍, ଶସ ବେଶୀ । ଆଷାଢ଼ର ବୁନ୍ଦା ପଡ଼ିଲେ ସେଇ ଗଛରେ ଆମ ରଜଦୋଳି ବନ୍ଧା ହେଉଥିଲା । ପହିଲିରଜ ଦିନ ତିଆରି ହେଉଥିଲା ପୋଡ଼ପିଠା । ମାଟିଚୁଲୀରେ ପିତ୍ତଳ ପଲମ ବସେଇ, ବିରି, ଚାଉଳ, ଗୁଡ଼ ଓ କୋରାନଡ଼ିଆର ମିଶ୍ରଣ ଢ଼ାଳି ଏବଂ ତା ଉପରେ ବହଳ କରି କଦଳୀପତ୍ର ବିଛେଇ ରଡ଼ନିଆଁ ଢ଼ାଳି ଦେଉଥିଲା ବୋଉ । ରୋଷେଇଘର ମହମହ କରୁଥିଲା ଗୋଲମରିଚ, ପାନମହୁରୀ ଓ ଗୁଜୁରାତି ବାସ୍ନାରେ । ଉତ୍ତେଜନାରେ ରାତି ଶୋଇପାରୁନଥିଲୁ । ପାହାନ୍ତିଆରୁ ଉଠି ଦୌଡ଼ୁଥିଲୁ ଦେଖିବାକୁ - ପିଠା ହେଲାଣି ନା ନାଇଁ ।

ବର୍ଷଦିନ ହେଲେଇ ନାରଣମା' ଘରୁ ମୁଢ଼ି ଆସୁଥିଲା । ବର୍ଷାପାଗରେ ଘଣାପେଷା ସୋରିଷତେଲ ଗୋଳେଇ ମୁଢ଼ି ଖାଉଥିଲୁ - ବାଦାମ୍ ଭଜା ସାଥିରେ । ଆମଘରଠାରୁ ସାମାନ୍ୟ ଦୂରରେ ବସ୍ତିଭିତରେ ଥିଲା ନାରଣ ମା ଘର । ପୁତ୍ର ନାରଣ ଥିଲା ବେକାର । ପକ୍‌କେଶୀ, ଈଷତ୍‌ନ୍ୟୁବ୍ଜ ବୁଢ଼ୀଟି ଗୁଜୁରାଣ କରୁଥିଲା ମୁଢ଼ି, ହୁଡୁମ୍ ଭାଜି । ବୁଢ଼ୀଟି ଥିଲା ଶ୍ରୀହୀନା । କିନ୍ତୁ ମୁଢ଼ି ଭାଜୁଥିଲା ଯୂଇଫୁଲ ପରି । ସଫେଦ୍, ହାଲ୍‌କା ଓ କୁର୍‌ମୁରିଆ । ମୁଢ଼ି କିଣିବାକୁ ମୁଁ ଓ ମୋ ସମବୟସ୍କା କକେଇଙ୍କ ଝିଅ ସାଙ୍ଗ ହୋଇ ଯାଉଥିଲୁ । ଚାରଣା ପଇସାକୁ ଗୋଟିଏ ସାନବ୍ୟାଗ୍‌ରେ ଥଳିଭର୍ତ୍ତି ମୁଢ଼ି । ଆସିଲାବେଳେ ମସଲାଗୋଳା ରାଗୁଆ ବୁଟଭଜା ପୁଞ୍ଜିଏ ଲେଖାଏଁ ନାରଣ ମା' ଆମ ହାତମୁଠାରେ ଗୁଞ୍ଜିଦେଉଥିଲା । ଫାଉ ହିସାବରେ । ଝିରାଲଙ୍କାର ପଲସ୍ତରା ଥିବା ସେ ବୁଟଭଜାର ସ୍ୱାଦ ନେଉ ନେଉ ଘରକୁ ଫେରୁଥିଲୁ । ମୋ' କୁନିଭାଇଟି ଅନେକ ସମୟରେ କାନ୍ଦୁଥିଲା ଆମ ସହିତ ଯିବାପାଇଁ । ଆମେ କିନ୍ତୁ କେବେବି ତାକୁ ସାଥିରେ ନେଉନଥିଲୁ । କାଳେ ଅମ ବୁଟଭଜାରେ ଭାଗ ବସେଇବ ବୋଲି ।



# ଖଟ

ଖଟଟି ପଡ଼ିଥିଲା ଶୋଇବାଘର ସାମ୍ନାରେ ଥିବା ଚଉଡ଼ା ପିଣ୍ଡାଟିରେ । କଡ଼ିକିଆ ହେଇ । ସିଡ଼ି ପାହାଚରୁ ଅଳ୍ପଦୂରରେ ।

ବିଶେଷତ୍ୱ-ବିହୀନ ସାଧାରଣ ପଟା ଖଟଟିଏ । ଲମ୍ବ ଲମ୍ବ ପଟା କେତୋଟି ଯୋଖା ହେଇଥିଲା କଣ୍ଟାଦେଇ । ଖିଲମରା ଚାରୋଟି ସଶକ୍ତ ଖୁରା ଉପରେ ଭରାଦେଇ ମଜ୍‌ବୁତ୍, ଚଉଡ଼ା ଖଟଟି ଗାଦିମାଡ଼ି ବସିଥିବା ବରଣ୍ଡାର ଅନେକାଂଶ ଆବୋରି । କଡ଼ରେ କେବଳ ଜଣେ ମଣିଷ ଆତଯାତ ହେଲାପରି ରାସ୍ତା । ଖଟଟିର ରଂଗ ପ୍ରଥମେ କେମିତି ଥିଲା ଜାଣେନି । ବର୍ଷ ବର୍ଷ ଧରି ଦିହଘଷା ହେଇ ଏବଂ ତେଲ ପିଇପିଇ ପଟାତକ ହେଇଯାଇଥିଲା ମସୃଣ ଓ କାଳିଚିଆ । ଅଜସ୍ର ସାନବଡ଼ ଦାଗ ବହନ୍ କରିଥିଲା ତା ଦେହରେ ।

ଜ୍ଞାନହେବା ଦିନଠାରୁ ଖଟଟିକୁ ଦେଖୁଥିଲି । ସେଇ ଏକା ସ୍ଥାନରେ, ବର୍ଷ ବର୍ଷ ଧରି । ବେଶ୍ ଲମ୍ବ ପିଣ୍ଡା । ଖଟଟି ଅନ୍ୟ ଯେ କୌଣସି ଜାଗାରେ ବି ପଡ଼ିପାରିଥାଆନ୍ତା । କିନ୍ତୁ ସେଇ ନିର୍ଦ୍ଦିଷ୍ଟ ସ୍ଥାନରୁ ଖଟଟିକୁ ହଟେଇବା କଥା କେବେ କାହାର ମନକୁ ଆସୁନଥିଲା । ଜଣା ପଡୁଥିଲା ସତେ ଯେମିତି ଘରଟି ତିଆରି ହେବା ଦିନଠାରୁ ହଠାତ୍ ଭୂଇଁରୁ ଗଜୁରି ଉଠି ଖଟଟି ଖଞ୍ଜା ହେଇ ରହିଛି ସେଇ ଜାଗାରେ । ସତେ ଯେମିତି ଘରର ନକ୍ସା ସହିତ ଖଟଟି ବି ସାମିଲ୍ ହେଇ ରହିଛି ପ୍ରଥମରୁ ।

ଖଟଟି କାମଦେଉଥିଲା ଲିଭିଂରୁମ୍ ଏବଂ ଡ଼ାଇନିଂରୁମ୍‌ର । ଗପସପ, ବନ୍ଧୁମିଳନ, ଖିଆପିଆ ସବୁକିଛି ହେଉଥିଲା ଖଟଟି ଉପରେ । ଘର ଭିତରେ ଜିନିଷ ଠେସା । ଡ଼ବଲ୍‌ବେଡ୍, ଦୁଇ ତିନୋଟି ଲେଖାଏଁ ଆଲ୍‌ମାରୀ, ଟ୍ରଙ୍କବାକ୍ସ, ଡ୍ରେସିଂ ଟେବୁଲ୍ ଓ ଆଲ୍‌ନା - ଫର୍ଚ୍ଚା ଜାଗା ଥିଲା କମ୍ । ଡ଼ବଲ୍ ବେଡ ତଳେ ବି ଜିନିଷଖୁନ୍ଦା । ପୁରୁଣା ଘର । ସେଥିରେ ପୁଣି ତାର ଲୋଭାତୁର ମନନେଇ କୌଣସି ଜିନିଷ ଫିଙ୍ଗିବା ପାଇଁ ବୋଉ ଥିଲା ନାରାଜ । ଡ଼ବଲ୍‌ବେଡ୍ ତଳେ ବି ଜିନିଷ ଭର୍ତ୍ତି - ଖାଲି ଅମୂଲଟିଣ ଠାରୁ ଆରମ୍ଭ କରି କାର୍‌ର ପୁରୁଣା ଟାୟାର ପର୍ଯ୍ୟନ୍ତ । ଘର ଭିତରଟି ଲାଗୁଥିଲା ଅନ୍ଧାରୁଆ ଓ ଅଣନିଃଶ୍ୱାସୀ । କେବଳ ଶୋଇବା ସମୟତକ ବାଦ୍‌ଦେଲେ, ବାକିତକ ସମୟ ଖଟଟିରେ ବସିଖେଳି ବିତାଉଥିଲୁ । ଖଟଟିରେ ବସିଲେ ସାମ୍ନା ଅଗଣାଟିରେ ଆଖି ପଡୁଥିଲା । ଆଖି ପଡୁଥିଲା ନୂଆ ଗଜୁରି ଆସୁଥିବା ମଞ୍ଜ କଦଳୀପତ୍ରରେ, ପେଚ୍ଚି ପେଚ୍ଚି ଅଶୋକ ଓ ମନ୍ଦାରଫୁଲରେ, ଶୀତଦିନେ ବୋଉହାତ ଲଗା ନିଦାଳିଆ ଗେଣ୍ଡୁ

ଫୁଲ ଉପରେ, ରଙ୍ଗବେରଙ୍ଗୀ ସ୍ନୋବଲ୍, ଡ଼ାଲିଆ ଓ ଜିନିଆ ଉପରେ । ପିଣ୍ଡାରୁଇ ନଜରରେ ପଡୁଥିଲା ଖୋଲା ଆକାଶ ଓ ତହିଁରେ ପହଁରି ଯାଉଥିବା ଟୁକୁଡ଼ା ଟୁକୁଡ଼ା ମେଘଦଳ । ସୁଲୁ ସୁଲୁ ପବନ ବାଜୁଥିଲା ଦେହରେ । ଅପରାହ୍ନର ସୂର୍ଯ୍ୟ, ଶୀତଦିନେ ଅକୃପଣ ଭାବରେ ସାରାବରଣ୍ଡା ତାଙ୍କର ଇଷଦୁଷ୍ଣ କିରଣ ଢ଼ାଳି ଯାଉଥିଲେ ଆମ ପାଇଁ । ଖଟରେ ବସି ସେ ଖରାର ଉଷ୍ଣତାପ ନେଉଥିଲୁ । ଖଟଟି ପଡ଼ିଥିଲା ପଶ୍ଚିମମୁଖା ପିଣ୍ଡାରେ ।

ପୁରୁଣା କାଳିଆ ଘର । ଷାଠିଏ ବର୍ଷ ତଳର । କଣ୍ଟ୍ରାକ୍ଟର ଅଜା ନିଜ ହିଫାଜତ୍‌ରେ ତିଆରି କରିଥିଲେ ଘରଟି । ସ୍ୱାଭାବିକ୍ ଭାବରେ, ତତ୍କାଳୀନ ଚଳଣୀ ଅନୁଯାୟୀ, ରୋଷେଇଘର ସାହାଲାଟି ଥିଲା ଦୂରରେ । ଘରଟି ଥିଲା ଇଂରାଜୀ ଅକ୍ଷର 'ଏଲ୍' ପ୍ୟାଟର୍ଣ୍ଣର । ରୋଷେଇଘରେ ଦିକିଦିକି ମାଟିଚୁଲୀର ଆଖପାଖରେ ପିଢ଼ାପକାଇ ବସି କେବଳ ଶୀତଦିନ ରାତିରେ ଇ ଭାତ ଖାଉଥିଲୁ । ବାକୀ ସାରାବର୍ଷ, ବିଶେଷତଃ ଖରାଦିନେ, ଭାତଥାଳି ବୋହି ଆଣି ଭାତ ଖାଉଥିଲୁ ଖଟରେ ବସି । ଫ୍ୟାନ୍ ତଳେ । ମନେଅଛି, ଘରେ ଯେବେ ଫ୍ୟାନ୍ ଲାଗିଲା, ପ୍ରଥମ ଫ୍ୟାନ୍ ଲାଗିଥିଲା ଖଟପାଖରେ– ସବୁଠାରୁ ବେଶୀ ବ୍ୟବହୃତ ହେଉଥିବା ସ୍ଥାନଟିରେ । ଫ୍ୟାନ୍ ପବନ ଖାଇ, ଖୋଲାମେଲା ଜାଗାରେ ଭାତ ଖାଇବାକୁ ଆରାମ ଲାଗୁଥିଲା । ଭାତ ଖାଇସାରିଲାପରେ ଓଦାକନାରେ ଶଙ୍ଖୁଡ଼ି ପୋଛି ଦେଉଥିଲା ବୋଉ । ଦିନଯାକ, ସକାଳେ କି ସଂଜେ, ଚା ପିଆ ପର୍ବ ହେଉଥିଲା ଖଟରେ ବସି । ଯେତେବେଳେ ଦେଖିବ ଖଟ ଉପରେ ଦୁଇ ତିନୋଟି ଅଇଁଠା ଚା କପ୍ । ସଂଜବେଳେ ବରାପିଆଜି ଖାଉଥିଲୁ ସେଇ ଖଟରେ । ଖଟ ପାଖରେ ପିଣ୍ଡାତାରରେ ଟଙ୍ଗା ବୋଉର ଶାଢ଼ୀ । ଜଳଖିଆ ଖାଇସାରି ହାତବଢ଼େଇ ବୋଉ ଶାଢ଼ୀରେ ହାତ ପୋଛୁଥିଲୁ । ହାତଧୋଇବାକୁ ବି ବେଶୀ ଦୂର ଯିବାକୁ ପଡୁନଥିଲା । ଖଟଠାରୁ ସାମାନ୍ୟ ଦୂରରେ, ପିଣ୍ଡାକଡ଼କୁ ଇ ଥିଲା ପାଣି ଟ୍ୟାପ୍ ।

ଖଟଉପର ଆଡ୍‌ଡ଼ାକୁ ବର୍ଷାଋତୁ ମାନ୍ଦା କରିଦେଉଥିଲା କିଛି ମାତ୍ରାରେ । ଝିପିଝିପି ବର୍ଷା ହେଲେ ପିଣ୍ଡାରେ ପାଣି ପଡୁନଥିଲା । ଝଡ଼ବର୍ଷାରେ କିନ୍ତୁ ପାଣିଛିଟିକା ମାରି ପିଣ୍ଡା ଏବଂ ତତ୍‌ସହିତ ଖଟଟି ଓଦା ହେଇଯାଉଥିଲା । ଘର ଭିତରୁ ଳୁଳୁଳୁଳୁ ଚାହିଁ ଅପେକ୍ଷା କରି ରହୁଥିଲୁ ବର୍ଷାର ବିରତିକୁ । ବର୍ଷା କମିଗଲେ ବୋଉ ଖରିକା ଝାଡୁରେ ଓଳେଇ ଦେଉଥିଲା ପିଣ୍ଡା । ଓଦାକନାରେ ପୋଛି ଦେଉଥିଲା ଖଟ । ଖଟଉପରେ ବସି ମୁଗ୍ଧ ଆଖିରେ ଦେଖୁଥିଲୁ ପଶ୍ଚିମ ଆକାଶର ଇନ୍ଦ୍ରଧନୁ କିମ୍ବା ଅଗଣାର ସଦ୍ୟସ୍ନାତ କାମିନୀ ଫୁଲର ଗୁଚ୍ଛ । ପୁନର୍ବାର ଆରମ୍ଭ ହେଇଯାଉଥିଲା ଆଡ୍‌ଡ଼ା ଖଟ ଉପରେ ।

ଖଟଟିରେ ବାପାଙ୍କର ଆସ୍ଥାନ ଥିଲା କମ୍ । ପରିଚ୍ଛନ୍ନତା ପ୍ରତି ଥିଲେ ଅତ୍ୟନ୍ତ ଯତ୍ନଶୀଳ । ବସୁନଥିଲେ ଖଟରେ । କିନ୍ତୁ ବସୁଥିଲେ ଖଟପାଖରେ । ଖଟକୁ ପ୍ରାୟ ଲାଗିକରି ପଡ଼ିଥିବା ତାଙ୍କପାଇଁ ଉଦ୍ଦିଷ୍ଟ ଆରାମ ଚେୟାରଟିରେ । ପଢ଼ି ପଢ଼ି କ୍ଲାନ୍ତି ବା

ଅବସାଦ ଆସିଲେ ବାପା କେବେ କେମିତି ଆସି ବସୁଥିଲେ ସେଠି - ଆମ ପାଖରେ, ଚୌକୀଟିରେ ଆଉଜି । ମିତବାକ୍ ବାପା ଚାମଚରେ ଛେନା ଓ ଚୂଡ଼ାଚକଟା ଖାଉ ଖାଉ କଦବା କେମିତି ପଦେ ଅଧେ ମନ୍ତବ୍ୟ କରୁଥିଲେ ଆମ କଥା ଶୁଣି ।

ଖଟରେ ଯେ ଗୋଟିଏ ବ୍ୟକ୍ତିତ୍ୱ ଥାଏ, ତାହା ଜାଣିଥିଲି ସେ ଖଟଟିକୁ ଦେଖି । ଖଟଟି ଥିଲା ଭାରି ସ୍ନେହଶୀଳ, ଭାରି ସହନଶୀଳ । ଠିକ୍ ବୋଉ ପରି । ବୋଉ ପରି ଇ ଆମକୁ ନିର୍ବିବାଦରେ ଆଦରି ନେଇଥିଲା ତା କୋଳଭିତରେ । ସହୁଥିଲା ଅଳି, ଅର୍ଦ୍ଦଳି, ଏବଂ ଆମର ଯାବତୀୟ ହଙ୍ଗାମା । ବୋଉର ପଣତକାନିର ଛାଇ ପରି ଭାରି ଶାନ୍ତିପ୍ରଦ ଥିଲା ତାର ସାନ୍ନିଧ । ଭାରି ନିରାପଦ ଥିଲା ତାର ସାଙ୍ଗ ।

ବସ୍ତୁତଃ ପରିବାରର ସଭିଙ୍କ ଭିତରେ, ବୋଉର ଇ ସର୍ବାଧିକ ସମୟ କଟୁଥିଲା ଖଟଟି ଉପରେ । ରୋଷେଇଘରେ ଭାତ, ତରକାରୀ ବସେଇ ଦେଇ, ଦଣ୍ଡେ ଆସି ନିଃଶ୍ୱାସ ମାରୁଥିଲା ଖଟରେ ବସି । ବୋଉଥିଲା ତାମ୍ବୁଳପ୍ରିୟ ଏବଂ ଖଟ ଉପରେ ଇ ଥିଲା ତାର ପାନସରଞ୍ଜାମ । ଦିନଯାକ ଟୁକୁର୍ ଟୁକୁର୍ ଗୁଆକାତିରେ ଗୁଆ କାଟୁଥିଲା । ଖଟରେ ବସି, କାନ୍ଥକୁ ଆଉଜି ବାରିତୋଳା ଶୁଖିଲା କପା ଫଳରୁ ହାତରେ ବଳି ତିଆରି କରୁଥିଲା ସଳିତା । ନ ହେଲେ ନାକ ଅଗରେ ପ୍ରଚକ୍ଷୁଟି ସଜାଡ଼ି ଅଚିରେ ଜନ୍ମ ହେବାକୁ ଯାଉଥିବା ପୌତ୍ର କିମ୍ୱା ପୌତ୍ରୀଟି ପାଇଁ ପୁରୁଣା ଶାଢ଼ୀରେ ଚିରି ତିଆରି କରୁଥିଲା ଚମତ୍କାର ନକ୍ସାଦାର୍ କନ୍ଥା ।

ବୋଉର ସମସ୍ତ ପୌତ୍ରପୌତ୍ରୀ ଭୂମିଷ୍ଠ ହେଉଥିଲେ ବୋଉପାଖରେ, ବୋଉର ତତ୍ତ୍ୱାବଧାନରେ । ତେଲହଳଦୀ ଘଷି ଚାରି ଛ' ମାସର କରି ସେମାନଙ୍କୁ ବୋଉ ପଠାଇ ଦେଉଥିଲା ସ୍ୱ ସ୍ୱ ଘରକୁ । ଏବଂ ସେ ତେଲମାଲିସ୍ ପର୍ବଟି ବୋଉ କରୁଥିଲା ମହା ସମାରୋହରେ - ଖଟ ଉପରେ ବସି । ଖଟରେ ଗୋଡ଼ଲମ୍ୱେଇ ଅଧଘଣ୍ଟାଏ ଧରି ଚଳପାଇ ତେଲ ମାଲିସ୍ କରୁଥିଲା ନବଜାତଟିକୁ । ସଂଜବେଳେ ଲୁହାକଡ଼େଇରେ ଅଧକଡ଼େଇ ହବ ରଡ଼ନିଆଁ ଆଣି ପାପୁଲି ଉଷୁମ କରି ସେକ ଦେଉଥିଲା ନୟନପିତୁଳା ନାତି ଓ ନାତୁଣୀମାନଙ୍କୁ । ଖଟଉପରେ ନିଆଁକଡ଼େଇଟି ରହିବା ହେତୁ, ପଟାଖଟଟି ଝଲସିଯାଉଥିଲା ଅନେକ ଥର । ଖଟର ଏଠି ସେଠି ସାନବଡ଼ ପୋଡ଼ାଦାଗ । ପାନ ଖାଉ ଖାଉ ବେଳେ ବେଳେ ବୋଉ ତର୍ଜନୀ ବଢ଼ାଇ ଦେଖାଉଥିଲା ସେ ଦାଗସବୁକୁ । ଏଇ ଦାଗଟା ବିନୁର, ଆଉ ସେଇ ବାଁ ପଟର ବଡ଼ ଦାଗଟା ନିଶିର । ଏତେବର୍ଷ ପରେ ବି କେମିତି ସେ ଦାଗ ସବୁ ଚିହ୍ନଟ କରୁଥିଲା ସ୍ୱୟଂ ଈଶ୍ୱର ଜାଣନ୍ତି ।

ବୋଉ ଖଟରେ ବସିଲେ ଆମେ ସବୁ ଗୋଟି ଗୋଟି ହେଇ ଯାଇ ବସୁଥିଲୁ ତା ଚାରିପାଖେ, ଖଟରେ ଖୁନ୍ଦାଖୁନ୍ଦି ହେଇ । ପରିପୂର୍ଣ୍ଣ ମାତୃତ୍ୱର ଝଲକରେ, ଝିକିମିକି

ଝେଟକୁଥିଲା ବୋଉ ମୁହଁ । ଥରଟେ ଆମ ଗାଁରୁ ଆସିଥିବା ଝିଅଟିଏ ବୋଉ ଚାରିପାଖେ ଆମେ ବସି ମଉଜମସ୍ତି କରୁଥିବାର ଦେଖି ଫେରିଯାଇ ଦଦେଇଙ୍କି କହିଥିଲା – ବୁଝିଲ ସାଆନ୍ତେ ! ତମେ ଏକା ଦୁଃଖ ପାଉଛ !

– କାହିଁକି ? କଅଣ ହେଲା ? ଦଦେଇ ପଚାରିଲେ ।

– ଯା' ଦେଖିବ କଟକରେ । ଘିରି ଘିରି ଫ୍ୟାନ୍ ବୁଲୁଛି । ମଝିଆଁ ସାଆନ୍ତାଣୀ ସୁଦାମଗୁଣ୍ଡି ପାନଖାଇ ପିଚ୍ କରି ପିକ ପକେଇ ଦେଉଛନ୍ତି । ଚାରିପଟ ଘେରିକି ପିଲେ, ଖଟ ମଝିରେ ରାଣୀ ପରି ବସିଛନ୍ତି ମଝିଆଁ ସାଆନ୍ତାଣୀ । ଯାହା ଆନନ୍ଦଉତ୍ସବ ଚାଲିଛି କଅଣ ଆଉ ତମକୁ କହିବି । ତମେ ଇ ଏକା ଏକୁଟିଆଟା ଏତିକି ଦୁଃଖ ପାଉଛ ଏଠି ।

ଦଦେଇଙ୍କର ବୋଉ-ସମବୟସ୍କା ଏକମାତ୍ର କନ୍ୟାସନ୍ତାନଟି ବହୁପୂର୍ବରୁ ପରଘରୀ ହେଇସାରିଥିଲା ଏବଂ ଦଦେଇ ଗାଁରେ ଏକରକମ ନିଃସଙ୍ଗ ଜୀବନ ଅତିବାହିତ କରୁଥିଲେ । ଆମ ଗହଣରେ ବୋଉକୁ ଦେଖି, ଝିଅଟି ଦଦେଇଙ୍କର ସେଇ ନିଃସଙ୍ଗତା ପ୍ରତି ଇ ତୀର୍ଯ୍ୟକ୍ ଇଙ୍ଗିତ କରିଥିଲା ।

ଖଟଟିର ନିଶ୍ଚୟ କିଛି ଗୋଟିଏ ଯାଦୁକରୀ କରାମତି ଥିଲା । କାରଣ ଆଉଥରେ ମଧ୍ୟ ଆମର ଜଣେ ପଡ଼ୋଶୀ ଭଦ୍ରଲୋକ ଖଟଉପରେ ଆମେ ସବୁ ବୋଉକୁ ଘେରି ବସିଥିବାର ଦୃଶ୍ୟକୁ ଅନେକ ସମୟ ଧରି ମୁଗ୍ଧ ଆଖିରେ ଅବଲୋକନ କରି ଗଲାପୂର୍ବରୁ ବୋଉକୁ ଉଦ୍ଦେଶ୍ୟ କରି ମନ୍ତବ୍ୟ କରିଗଲେ "ସାରା କଲୋନୀ ଭିତରେ ଆପଣଇ ସବୁଠୁ ଭାଗ୍ୟବାନ୍ ।"

ଦିଲ୍ଲୀରୁ ଭୁବନେଶ୍ୱର ଫେରିଲା ପରେ ମଝିରେ ମଝିରେ କଟକ ଯାଉଥିଲି, ବୋଉକୁ ଦେଖି । କହିବା ବାହୁଲ୍ୟ ଯେ ପିଣ୍ଡା ଖଟଟିରେ ଇ ଦିହେଁ ବସି ଗପ କରୁଥିଲୁ । ଦିନେ ଖଟରେ ବୋଉ ପାଖେ ବସି ଜଳଖିଆ ଖାଉଛି, ଖଟଟି କେମିତି ଦୋହଲିଲା ପରି ମନେହେଲା । କହିଲି – ବୋଉ, ଯାର ଖୁରାର ଖିଲ ହୁଗୁଳିଲାଣି ବୋଧେ । ଖଟଟା ହଲୁଚି ଯେ !

ବୋଉ କହିଲା – କେତେ ବର୍ଷ ଆଉ ରହନ୍ତା ? ସିଏ ବି ମୋ ପରି ବୁଢ଼ୀ ହେଇଗଲାଣି । ତାର ବି ଦିନକାଳ ସରି ଆସିଲାଣି । ଧକ୍ କରି ଛାତିଭିତରେ ଲାଗିଲା ବୋଉ କଥାଟି । ବୋଉକୁ ଜୀବନରେ ପ୍ରଥମଥର ପାଇଁ ନିରୀକ୍ଷଣ କଲି । ଖଟଟି ପରି ବର୍ଷ ବର୍ଷ ଧରି ବୋଉ ରହିଥିଲା ଆମ ପାଖରେ – ଆମକୁ କୋଳରେ ଆବୋରି । ଆମର ସବୁ ଅଳିଅର୍ଦ୍ଦଳି, ସବୁ ଅମାନିଆପଣକୁ ବିନା ବାକ୍ୟବ୍ୟୟରେ ସହି । ଆଜି ପ୍ରଥମଥର ପାଇଁ ବୋଉକୁ ଚାହିଁ ମନେହେଲା ବୋଉ ସତରେ କେତେ ବୁଢ଼ୀ

ହୋଇଗଲାଣି । ତକ୍‌ତକ୍ ଗୋରାମୁହଁରେ ଅଜସ୍ର ବଳିରେଖା । ବାଳତକ ଶରତ୍ ଋତୁର କାଶଫୁଲ ପରି ବିବାକ୍ ଧଳା । କେତେବେଳେ ଏତେ ବେଶୀ ଧୋବ ହୋଇଗଲା ବୋଉର କଳା ମୁଚ୍‌ମୁଚ୍ ପାତାପକା ବାଳ ?

ବୋଉ ତାର ଅବଚେତନ ମନରେ ବୋଧହୁଏ ଦେଖିପାରିଥିଲା ତାର ଭବିଷ୍ୟତ । କେଇମାସ ପରେଇ ବୋଉର ହେଲା ଷ୍ଟ୍ରୋକ୍ । ବାମପଟ ଅଙ୍ଗତକ ପକ୍ଷାଘାତ ହେତୁ ଅସାଡ଼ । ବୋଉକୁ ଦେଖିବାକୁ ଘରକୁ ଗଲି । ବୋଉ ପଡ଼ିରହିଥିଲା ପିଣ୍ଡାଖଟଟିରେ । ଶୀର୍ଣ୍ଣ ତେଜହୀନ ଚେହେରା । ବାମପଟ ଗୋଡ଼ଟି ବଙ୍କୁହୋଇ ରହିଛି ଆଣ୍ଠୁପାଖରୁ । ଚଳତ୍‌ଶକ୍ତି ଥିବା ଡ଼ାହାଣ ହାତଟି ବଢ଼ାଇ ବୋଉ ଆଉଁଷି ଦେଲା ମୋ ମୁହଁ । ଅସ୍ପଷ୍ଟଭାବେ କଅଣ କହିଲା ବୁଝିପାରିଲିନି । ଅଶ୍ରୁଳ ଆଖିରେ ଇଙ୍ଗିତ କଲା ତା ପାଖରେ ବସିବା ପାଇଁ । ବୋଉ ପାଖରେ ଖଟରେ ବସିଲି । ସେ ବସିବା ଯୋଗୁଁ ଭାରସାମ୍ୟ ହରାଇ ପୁରୁଣା ଖଟଟି ସାମାନ୍ୟ କୁଁ କୁଁ ଶବ୍ଦ କଲା । ଠିକ୍ ବୋଉର ମୃଦୁକ୍ରନ୍ଦନର ଶବ୍ଦ ପରି ।

ଭାଇକି କହିଲି - ବୋଉକୁ ଏମିତି ନଡ଼ବଡ଼ିଆ ପଟାଖଟଟାରେ ପକେଇଚ ? ସହଜେ ରୁଗ୍ଣ ହାଡ଼ । କେତେ କଷ୍ଟ ହେଉଥିବ ତାକୁ ! ତା ଶେଜରେ ଶୁଆଉନ ନେଇକି ?

ବେଣୀ ବାନ୍ଧୁ ବାନ୍ଧୁ ଭାଉଜ କହିଲେ - ତମେ ତ ଆସୁଚ ଦିନକ ପାଇଁ । ତମେ କଅଣ ଜାଣିବ ଆମ ଅସୁବିଧା ? ଦିନଯାକ ଦଶଥର ବାଥ୍‌ରୁମ୍ ଯିବେ । କିଏ ଆଣିବ ଟେକିକି ବେଡ୍‌ରୁମ୍‌ରୁ ? ଶେଜ, ଚାଦର ସବୁ ଓଦା କରି ପକାଉଛନ୍ତି । ସେଇ ପଟା ଖଟ ତାଙ୍କୁ ଠିକ୍ ଅଛି । ମଇଳା ହେଲେ ସୁଲୋଚନା ପାଣି ଓ ଡ଼େଟଲ୍ ଢ଼ାଳି ସେ ଖଟକୁ ଧୋଇ ଦେଉଛି । ପାଣି ସୁବିଧାରେ ନିଗିଡ଼ି ଯାଉଛି ସେ ପିଣ୍ଡାତଳକୁ ।

ଭାଇକି ଚାହିଁଲି । ବିଷନ୍ନ ମୁହଁ । ନୀରବରେ ଘର ଭିତରକୁ ଯାଇ ତକିଆଟିଏ ଆଣି ବୋଉ ମୁଣ୍ଡତଳେ ରଖିଲା ।

ବୋଉ ସେ ପୁରକୁ ଚାଲିଗଲା କେଇଟା ଦିନରେ । ସେଇ ନଡ଼ବଡ଼ିଆ ପଟାଖଟରେ ଶୋଇ ଶୋଇ । ଶ୍ରାଦ୍ଧ ପରେ ପ୍ରାୟ ଚାରିମାସ ପର୍ଯ୍ୟନ୍ତ ଘରକୁ ଯାଇନଥିଲି । ଘରକଥା ଭାବିଲେଇ ମନେ ପଡୁଥିଲା ଚେନାଏ ଶୈଶବ - ମନେପଡୁଥିଲା ବୋଉ ଚାରିପଟେ ପିଣ୍ଡା ଖଟରେ ବସି କରୁଥିବା ହଟଗୋଳ । ବୋଉ ରାଗିକି କହୁଥିଲା - କେଉଁଠି ଦଣ୍ଡେ ଶାନ୍ତିରେ ବସେଇ ଦେଲନି ତମେମାନେ । ଯେଉଁଠି ବସିଲେ ଆସିକି ପାଖରେ ଗେଞ୍ଜି ହୋଇକି ବସୁଚ । ତମର କଅଣ କିଛି କାମ ନାହିଁ ? ଆମେ କିନ୍ତୁ ଠିକ୍ ବୁଝିପାରୁଥିଲୁ, ବୋଉର ଇଏ ମିଛ ମିଛ ରାଗ ।

ଏବେ ଦିନେ କଟକ ଯାଇଥିଲି । ରେଡ଼ିଓ ଷ୍ଟେସନ୍‌ରେ ଗୋଟିଏ ଇଣ୍ଟରଭିଉ ଥିଲା । ଫେରନ୍ତା ବାଟରେ ଘରେ ମୁହଁ ମାରି ଆସିବି ଠିକ୍ କଲି । ଭାଇ ଅଭିମାନ କରୁଥିଲା ମୁଁ ଆଉ ଯାଉନି ବୋଲି ।

ଘରେ ପଶି ବର୍ଷବର୍ଷର ଅଭ୍ୟାସ ଯୋଗୁଁ ପାଦ ଆଗେଇ ଚାଲିଲା ଖଟପଡ଼ିଥିବା ଜାଗାଟିକୁ । କିନ୍ତୁ ଖଟଟି ସେଠି ନ ଥିଲା । ଚଉଡ଼ା ପିଣ୍ଡାର ସେ ସିଡ଼ିପାହାଚ ସ୍ଥାନଟିର ଶୋଭାବର୍ଦ୍ଧନ କରୁଥିଲା ଆୟତକ୍ଷେତ୍ରାକାର ଚକ୍‌ଚକ୍ ସନ୍‌ମାଇକାଲଗା ଡ଼ାଇନିଂ ଟେବୁଲ୍‌ଟିଏ । ଚାରିପଟେ ଚାରୋଟି ଗଦିମୋଡ଼ା କାରୁକାର୍ଯ୍ୟମୟ ଚୌକୀ ।

ଆଶ୍ଚର୍ଯ୍ୟ ହେଲି । ଥକା ମେଣ୍ଟାଇବାକୁ ବସିଲି ସେ ଗଦିମୋଡ଼ା କାରୁକାର୍ଯ୍ୟମୟ ଚୌକୀରେ । ଖଟରେ ବସିଲା ପରି ଆରାମ ଲାଗିଲାନି । ମତେ ଦେଖି ଡ଼ାଇନିଂ ଟେବୁଲ୍ ଉପରେ ଟେବ୍‌ଲମ୍ୟାଟ୍ ପକାଇ ଚା କପ୍ ଆଣି ରଖିଲେ ଭାଉଜ ।

କହିଲି - ଭାଉଜ, ଘରଟାକୁ ତ ପୂରା ବଦଳେଇ ଦେଇଚ ଦେଖୁଛି ।

ଭାଉଜ କହିଲେ - ଏଇ ଡ଼ାଇନିଂ ଟେବ୍‌ଲ, ଚୌକୀ ଏବେ ତିଆରି କଲି । ଯାହା ତ ଗୋଟେ ଘର ତମର ! ଭାତ ଖାଇବେ ସବୁ ବସି ଖଟରେ ! ମୋ ଜୀବନରେ ମୁଁ ଦେଖିନଥିଲି । ଚା ପିଉ ପିଉ ପୁଣି ପଚାରିଲେ - ଏ ଡ଼ାଇନିଂ ସେଟ୍‌ଟି କେମିତି ହେଇଚି କହିଲନି ତ !

ମୁଁ ତାଙ୍କ କଥାରେ ଉତ୍ତର ନ ଦେଇ ପଚାରିଲି - ସେ ଖଟଟା କୁଆଡ଼େ ଗଲା ? କେଉଁଠି ପକେଇଲ ତାକୁ ?

- ସେ ନଡ଼ବଡ଼ିଆ ଭଙ୍ଗାଖଟକୁ ପକେଇବି କେଉଁଠି ? ହେଇଟି ସେଇ ଅଗଣାକଡ଼କୁ ଫିଙ୍ଗି ଦେଇଛି ।

ଚାହିଁ ଦେଖିଲି । ପାଚିରୀ କଡ଼ରେ ଜମା ହେଇଥିବା ଅଜସ୍ର ଜଞ୍ଜାଳର ସ୍ତୂପ ଭିତରେ, ମାଟି ଉପରେ ଓଲଟି ଏକ ପରିତ୍ୟକ୍ତ ଆବର୍ଜନା ପରି ଶୋଇରହିଛି ମୃତବତ୍ ଅର୍ଦ୍ଧଭଗ୍ନ ଖଟଟି । ଖିଲହୁଗୁଳି ଗୋଟିଏ ଖୁରା ନଇଁପଡ଼ିଛି ତଳକୁ । ଠିକ୍ ବୋଉର ପକ୍ଷାଘାତ ଗ୍ରସ୍ତ ଅସାଡ଼ ବାମଗୋଡ଼ଟି ପରି ।



# ଉଡ଼ନ୍ତା ମେଘର ଦେଶ

ଥିଲା ମାଇନାମାର୍‌ର ସୀମାକୁ ଲାଗି ଭାରତର ପୂର୍ବାଞ୍ଚଳରେ ଅବସ୍ଥିତ ଆସାମ ପ୍ରଦେଶର ସାନପାହାଡ଼ୀ ଜିଲ୍ଲାଟିଏ - ଦୁର୍ଗମ ଓ ଗିରିସଂକୁଳ । ଭାରତବର୍ଷ ସହିତ ଫୁଲନାଡ଼ଟି ଲାଗିଥିଲା ମାତ୍ର ଗୋଟିଏ ଭୟସଂଚାରକ ଅଙ୍କାବଙ୍କା ସର୍ପିଳ ପଥ ଦେଇ । ପଥଟି ରାଜଧାନୀ ଆଇଜଲ୍‌କୁ ଆସାମର ଶିଲ୍‌ଚର ସହର ସହିତ ସଂଯୁକ୍ତ କରୁଥିଲା । ଉଣିଶଶହ ବାସ୍ତରି ମସିହାରେ କେନ୍ଦ୍ରସରକାର ଆସାମଠାରୁ ଅଲଗା କରି ଏହାକୁ ଘୋଷିତ କଲେ ଇଉନିୟନ ଟେରିଟରି ଭାବେ । ଏବଂ ଆମେ ମିଜୋରାମ୍ ଯାଇଥିଲୁ ଠିକ୍ ଏତିକିବେଳେ । ଏବେ ଅବଶ୍ୟ ଏହା ଏକ ସ୍ୱତନ୍ତ୍ର ପ୍ରଦେଶ । ବିଗତ ତିରିଶ ବର୍ଷ ଭିତରେ ଦୃଶ୍ୟପଟ ଅନେକାଂଶରେ ବଦଳି ଏହା ଏକ ଭବ୍ୟ ଓ ରୁଚିସଂପନ୍ନ ସ୍ଥାନରେ ରୂପାନ୍ତରିତ ହେଇଛି ବୋଲି ଖବର ପାଏ ।

ଆଇଜଲ୍ ସହରଟି ଥିଲା ପୂରାପୂରି ପାହାଡ଼ ଉପରେ । ପାଏ ହବ ସମତଳ ଭୂଇଁ ନଜରରେ ପଡୁନଥିଲା କେଉଁଠି । ପାହାଡ଼କୁ କାଟି କାଟି, ସେଇ ପାହାଡୀ ପାହାଚ ଉପରେ ଥାକ ଥାକ ଛବି ପରି ଘର । ଦୂରରୁ ଦିଶୁଥିଲା ଏକ ବର୍ଣ୍ଣମୟ ପେଣ୍ଟିଙ୍ଗ୍ ପରି । ବର୍ଷାଋତୁରେ ବିପୁଳାୟତନର ମେଘମାନେ ଟହଲ୍ ମାରି ମାରି ଖୋଲାଝର୍କା ଦେଇ ପଶିଆସୁଥିଲେ ଘରକୁ - କେତୋଟି ମିନିଟ୍ ପାଇଁ ଦୃଷ୍ଟି କରି ଦେଉଥିଲେ କୁହୁଡ଼ିଆ ।

ଜାଗାଟି ଥିଲା ଚମତ୍କାର । ସାରି ସାରି ଆଖି ଅପହୁଞ୍ଚ ସବୁଜିମା ଉପୁଚିପଡୁଥିବା ସାନବଡ଼ ପର୍ବତଶ୍ରେଣୀ । ଏଠି ସେଠି ଚିରହରିତ୍ ବୃକ୍ଷ, ପଥର ପେଟ ଚିରି ଗଜୁରିଥିବା ଜାତିଜାତିକା ଗୁଳ୍ମ, ଫର୍ଣ୍ଣ ଓ ଅର୍କିଡ୍, ହାତପାଆନ୍ତାରେ ଭାସିଯାଉଥିବା ଫିନ୍‌ଫିନ୍ ସାଦା ମେଘଖଣ୍ଡ, ଗତିଶୀଳ ନାଗସାପ ପରି ପାହାଡ଼ଚାରିପଟେ ଲହରେଇ ଲହରେଇ ଯାଇଥିବା ସରୁ ସରୁ ସର୍ପିନ ରାସ୍ତା, କଳଙ୍କହୀନ ସ୍ୱଚ୍ଛ ଆକାଶ ଓ ଭିଜାଭିଜା ବନସ୍ପତିର ବାସ୍ନା ନେଇ ତୀବ୍ରବେଗରେ ବହୁଥିବା କାଲୁଆ ପବନ । ଜାଗାଟି ସତରେ ଥିଲା ଚମତ୍କାର ।

ଘର ସବୁ ଥିଲା କାଠ ଓ ବାଉଁଶରେ ତିଆରି - ଏବଂ ତାହା ପୁଣି ମଞ୍ଚା ଉପରେ । ବଡ଼ ବଡ଼ ଶକ୍ତ କାଠଗଡ଼ମାନ ମାଟିରେ ପୋତା ହୋଇ ସେ ମଞ୍ଚାର ଭାର ବହନ କରୁଥିଲେ । କୁକୁଡା ଓ ଶୂକରମାନେ ରହୁଥିଲେ ମଞ୍ଚାତଳେ । ଆଉ ମଣିଷମାନେ ମଞ୍ଚା ଉପରେ । ଦି ତିନି ବଖରିଆ ସାନ ସାନ ଘର । କିନ୍ତୁ ସେ ଘରେ ରହୁଥିବା ମଣିଷମାନଙ୍କର ହୃଦୟର ପରିମିତି ଥିଲା ବିଶାଳ । ପ୍ରତିଟି ଘରର ଦରଜା ଯେ କୌଣସି ଆଗନ୍ତୁକ ପାଇଁ ସଦାସର୍ବଦା ମୁକୁଳା ରହୁଥିଲା । ଆଗନ୍ତୁକ କେବଳ ସ୍ୱ ଗୋଷ୍ଠୀର

ହେଲେ ଵ ହେଲା । ଅପରିଚିତ ବ୍ୟକ୍ତିଟିଏ ଅଚାନକ୍ କାହା ଘରେ ପହଞ୍ଚିଗଲେ, ଖାଦ୍ୟ, ବିଛଣା ଓ ଅଭ୍ୟର୍ଥନା ପାଉଥିଲା ବିନା ପ୍ରଶ୍ନବାଚୀରେ ।

ସ୍ଥାନଟି ଥିଲା ଚୋରବିହୀନ । ତାଲାସଂସ୍କୃତି ତେଣୁ ପ୍ରାଧାନ୍ୟ ବିସ୍ତାର କରିପାରିନଥିଲା । ସାମାଜିକ ସ୍ତରରେ ମଣିଷମାନେ ଥିଲେ ମେଳାପୀ ଓ ସମ୍ବେଦନଶୀଳ । ବିପଦ ଆପଦରେ ବନ୍ଧୁକୁଟୁମ୍ବ, ସାହିପଡ଼ିଶା ସହାୟତାର ହାତ ବଢ଼ାଉଥିଲେ ପରସ୍ପର ଆଡ଼କୁ । ମୁଁ ରହୁଥିବା ଘରଟି ଥିଲା ଗୋଟିଏ ପାହାଡ଼କଡ଼ରେ । ଦିନେ ସକାଳେ ଦେଖେ ପ୍ରାୟ ଶହେରୁ ଉର୍ଦ୍ଧ୍ୱ ଯୁବକ ଓ ପ୍ରୌଢ଼ ମିଶି କୋଡ଼ିଫାଉଡ଼ା ଧରି ଟିଲାଟିର ଉପରି ଭାଗକୁ କାଟି ସମତଳ କରିବାରେ ଲାଗିପଡ଼ିଛନ୍ତି । ଶ୍ରମଦାନ କରି ଓ ସଭିଏଁ ମିଳିମିଶି କେଇଟା ଦିନରେ ତିଆରି କରିଦେଲେ ସାନପିଲାଙ୍କ ପାଇଁ ସ୍କୁଲ୍ ଘରଟିଏ ।

ସେମାନଙ୍କ ଭାଷାରେ ଅଶ୍ଳୀଳ ଶବ୍ଦ ବା ଗାଳିଗୁଲଜ୍ ନ ଥିଲା । ଚରମ ଉତ୍ତେଜିତ ମୁହୂର୍ତ୍ତରେ ଜଣେ ଅନ୍ୟଜଣକୁ କହୁଥିଲା - ତୁ ଗୋଟିଏ ବାନର । ସେମାନଙ୍କର ଗାଳି ସୀମିତ ଥିଲା ଏଇ ତିନୋଟି ଶବ୍ଦରେ । ଭୁବନେଶ୍ୱରର ରାସ୍ତାଘାଟରେ, ଗଳିକନ୍ଦିରେ ଅନେକ ସମୟରେ ବଛାବଛା ଅପଶବ୍ଦର ବ୍ୟଞ୍ଜନା ଶୁଣିବାକୁ ମିଳେ । ମନେ ମନେ ଭାବେ - ମିଜୋରାମ୍‌ରେ ଦୈବାତ୍ ଜନ୍ମଗ୍ରହଣ କରିଥିଲେ ବିଚରାମାନେ କରିଥାଆନ୍ତେ କଅଣ ? ଭାଷାଟି କିନ୍ତୁ ଥିଲା ଆମ୍ଭମାନଙ୍କ ପାଇଁ ପୂରାପୂରି ଦୁର୍ବୋଧ । ତିନିବର୍ଷ ରହଣିକାଳ ଭିତରେ ବହୁଚେଷ୍ଟା କରି ମାତ୍ର ଦୁଇଟି ବାକ୍ୟ ଶିଖିବାରେ ସକ୍ଷମ ହୋଇଥିଲି । ତୁଙ୍ଗ୍‌ହେ ଇହଙ୍ଗ୍‌ମିଙ୍ଗ୍ (ତୁମ ନାଁ କଅଣ) ଏବଂ କା ମ୍ହାଙ୍ଗାଇସେ (ମୁଁ ତୁମକୁ ଭଲପାଏ) ।

ସମଗ୍ର ଭାରତବର୍ଷରେ, ସାକ୍ଷରତା ହାରରେ ଦେଶଟି ଥିଲା ଦ୍ୱିତୀୟ - ଠିକ୍ କେରଳ ପଛକୁ । ପ୍ରତ୍ୟେକ ଟିଲା ଉପରେ ସ୍କୁଲ୍‌ଟିଏ ଓ ଚର୍ଚ୍ଚଟିଏ । ଲୋକମାନେ ଖ୍ରୀଷ୍ଟିୟାନ୍ । ସ୍ୱଭାବତଃ, କ୍ରିସ୍‌ମସ୍ ଥିଲା ସବୁଠାରୁ ବଡ଼ ପର୍ବ । ଡ଼ିସେମ୍ବରର ପ୍ରଚଣ୍ଡଶୀତ ଭିତର ସାରା ରାତି ଧରି ଉଲ୍ଲାସମୟ କୋଳାହଳ । ସାରା ରାତି ଧରି ମଦିରାପାନ ଓ ଗୀଟାର୍‌ର ଧୂନ୍ ସହିତ ପାଦମିଳାଇ ପୁଅଝିଅମାନଙ୍କର ନିରବଚ୍ଛିନ୍ନ ଉଚ୍ଛଳ ନୃତ୍ୟ ।

ପାହାଡ଼ରେ ଜନ୍ମ । ପାହାଡ଼ରେ ହିଁ ମୃତ୍ୟୁ । ଗୁଣ୍ଡୁଚିମୂଷାର ତ୍ୱରାନ୍ୱିତ ଗତିରେ ତେଣୁ ତରତର୍ ହୋଇ ପାହାଡ଼ ଓହ୍ଲାନ୍ତି ଓ ଚଢ଼ନ୍ତି ସେଠାର ଲୋକମାନେ । ମୋ ଘରର କିଛି ଦୂରରେ ଥିବା କନ୍‌ଷ୍ଟେବଲ୍‌ର ଦୁଇବର୍ଷର ଶିଶୁପୁତ୍ରଟି ବି । ଗଡ଼ାଣିଆ ପାହାଡ଼ୀ ରାସ୍ତାରେ ସାନ ସାନ ପିଲାମାନେ ବେଶ୍ ସ୍ୱଚ୍ଛନ୍ଦରେ ହକି ଖେଳନ୍ତି ଏଠି ସେଠି । ଏଇ ଖେଳଟିରେ ବେଶ୍ ପାରଙ୍ଗମ ସେମାନେ । ମଣିଷମାନଙ୍କର ହଳଦିଆ ତ୍ୱକ୍, ଉଚ୍ଚ ହନୁହାଡ଼, ତୀର୍ଯ୍ୟକ୍ କଟା ସରୁ ସରୁ ଆଖି । ଝିଅମାନେ ପିନ୍ଧନ୍ତି ନିଜ ହାତବୁଣା ଫୁଲକପା ଲୁଙ୍ଗି ଓ ବ୍ଲାଉଜ୍ । ପୁରୁଷମାନେ ପିନ୍ଧନ୍ତି ପାଶ୍ଚାତ୍ୟ ପୋଷାକ । ଲୋକମାନେ

ମାଂସାଶୀ । ସର୍ବପ୍ରକାର ପଶୁପକ୍ଷୀ ମାଂସ ଭକ୍ଷଣ କରନ୍ତି । ତିନିବର୍ଷ ଭିତରେ, ମିଜୋରାମ୍ ଆକାଶରେ ଚଢ଼େଇଟିଏ ଭୁଲ୍‌ରେ ଦେଖିନି ।

ଆର୍ଥିକ ପରିପ୍ରେକ୍ଷୀରେ ସାମାଜିକ ବିଭାଜନ ଆଦୌ ନାହିଁ କହିଲେ ଚଳେ । କେହି ବଡ଼ ନୁହେଁ । କେହି ସାନ ବି ନୁହେଁ । ଲକ୍ଷପତି ସପ୍ରେମ କରମର୍ଦ୍ଦନ କରନ୍ତି ପଥଚାରୀ ଶ୍ରମିକ ସହିତ । ଦିହେଁ ବସନ୍ତି ଏକା ସୋଫାରେ ଓ ଖାଆନ୍ତି ଏକା ଟେବୁଲରେ । ସମତଳଭୂଇଁରୁ ଯାଇଥିବା ହେତୁ ପ୍ରଥମେ ପ୍ରଥମେ ଏହା ଆମକୁ ଅଖାଡୁଆ ଲାଗୁଥିଲା । ପରେ ପଡ଼ିଗଲା ଅଭ୍ୟାସରେ । ମିଜୋରାମ୍ ସଂପର୍କରେ ଯାହା କିନ୍ତୁ ମତେ ସବୁଠାରୁ ଆଶ୍ଚର୍ଯ୍ୟ ଲାଗିଥିଲା ତାହା ହେଉଛି ସେଠାରେ ଭିକ୍ଷାବୃତ୍ତିର ଏବଂ ଭିକ୍ଷୁକମାନଙ୍କର ସଂପୂର୍ଣ୍ଣ ଅନୁପସ୍ଥିତି ।

ପାଣିଥିଲା ସେଠି ଏକ ମହାର୍ଘ୍ୟ ବସ୍ତୁ । ପାହାଡ଼ ଉପରେ ପୁଷ୍କରିଣୀ ବା କୂପର ପ୍ରଶ୍ନ ନ ଥିଲା । ଏକମାତ୍ର ଉତ୍ସଥିଲା ଦୁଇପାହାଡ଼ ସନ୍ଧିରେ ବହିଯାଉଥିବା କୁଳୁକୁଳୁ ନିନାଦୀ ଝରଣାଟିମାନ । ମହିଳାମାନେ ମାଇଲ୍ ମାଇଲ୍ ପାହାଡ଼ୀ ବାଟ ଓହ୍ଲାଇ ସେ ଝରଣାକୁ ଯାଉଥିଲେ ପାଣିପାଇଁ । ପିଠିରେ ବନ୍ଧା ବିରାଟକାୟ ଝୁଡ଼ିରେ ଏକାଧିକ ବାଉଁଶର ଚୁଙ୍ଗା । ସେ ଚୁଙ୍ଗାରେ ପାଣି ଭର୍ତ୍ତି କରି ସେମାନେ ନେଇ ଆସୁଥିଲେ ଝରଣାରୁ । ପ୍ରାୟ ସାରାବର୍ଷ ବର୍ଷା ହେଉଥିଲା । ଆଜ୍‌ବେଷ୍ଟସ୍ ଛାତରୁ ଗଡ଼ିଆସୁଥିବା ବର୍ଷାପାଣିକୁ ଏକତ୍ରିତ କରି ତୁଳାଇବାକୁ ପଡୁଥିଲା ଦୈନନ୍ଦିନ ଜୀବନଚର୍ଯ୍ୟାର କାମତକ ।

ଯାଇଥିଲୁ ଅପର୍ଯ୍ୟାପ୍ତ ପାଣିର ଦେଶରୁ । ପ୍ରଥମେ ପ୍ରଥମେ ଅସୁବିଧା ହେଲା । ପରେ ପରେ କିନ୍ତୁ ଶିଖିଗଲୁ - ବୁନ୍ଦା ବୁନ୍ଦା ପାଣି ହିସାବ କରି ଖର୍ଚ୍ଚ କରିବା ପାଇଁ । ସେ ଶିକ୍ଷା ଏ ଯାଏ ବି ରକ୍ତରେ ଗୋଳି ହେଇ ରହି ଯାଇଛି । ପାଣିର ଅପଚୟ ଆଦୌ ସହ୍ୟ ହୁଏନି । ଭୁବନେଶ୍ୱର ଆମ ପଡ଼ୋଶୀଜଣକ ଚବିଶଘଣ୍ଟା ସରକାରୀ କଳଟି ଖୋଲା ରଖିଥାଆନ୍ତି । ଟାଙ୍କି ଭର୍ତ୍ତି ହେଇ କଳକଳ ପାଣି ବହିଯାଏ ରାସ୍ତାକଡ଼ରେ । ଆମକୁ ଅସହ୍ୟଲାଗେ । ଏଠି ଲୋକମାନେ ଭାବନ୍ତି, ସରକାରଙ୍କୁ ସାମାନ୍ୟ ଟିକସ ଦେଇଦେଲେ, ବଦଳରେ ପାଣିର ଦୁରୁପଯୋଗ କରିବାର ଅଗ୍ରାଧିକାର ମିଳିଯାଏ । ସେଠି ଲୋକଭାବନ୍ତି ଜଳ ହେଉଛି ଅମୃତତୁଲ୍ୟ ଏବଂ ଏହି ଜୀବନଦାୟୀ ପାନୀୟ ବସୁନ୍ଧରା ପାଇଁ ଈଶ୍ୱରଙ୍କର ଏକ ମହାର୍ଘ୍ୟଦାନ ।

ମିଜୋରାମ୍‌ରେ ପରିବାରରେ ତଥା ସମାଜରେ ନାରୀମାନଙ୍କର ଅଖଣ୍ଡ ସ୍ୱାଧୀନତା । ପୁତ୍ର କନ୍ୟା ଭିତରେ ଫରକ୍ ବିଲ୍‌କୁଲ୍ ନାହିଁ । ବଜାରରେ, ହାଟରେ, ବିକାକିଣା ବେଶୀ ଭାଗ ମହିଳା ଇ କରନ୍ତି । ଝିଅମାନେ ଅତ୍ୟନ୍ତ ସ୍ୱାଧୀନଚେତା । ଚିହ୍ନପରିଚ ମିଜୋ ପରିବାରରେ ଅନେକ ଅବିବାହିତ ଝିଅ ମାତୃତ୍ୱ ବରଣ କରିଥିବାର ଦେଖିଛି । ଏହା ଉପରେ କାହାକୁ ଏବେ ବେଶୀ ଗୁରୁତ୍ୱ ଦେବାର କେବେ ଅନୁଭବ କରିନି ।

ମୋ ଘରପାଖରେ ରହୁଥିବା ଡ଼ି.ଏସ୍.ପି. ଶ୍ରୀ ଥାଙ୍ଗାଙ୍କ ଘରେ ଥରେ ଗୋଟିଏ ଅଚିହ୍ନା ସାନଝିଅକୁ କ୍ରୀଡ଼ରତ ଅବସ୍ଥାରେ ଦେଖି ଝିଅଟି କିଏ ବୋଲି ଶ୍ରୀମତୀ ଥାଙ୍ଗାଙ୍କୁ ପଚାରିଥିଲି । ମିସେସ୍ ଥାଙ୍ଗା ହସିହସି ସ୍ୱାଭାବିକ୍ ସ୍ୱରରେ କହିଲେ - ମୋ' ସ୍ୱାମୀ ମତେ ବାହାହେବା ଆଗରୁ ଗୋଟିଏ ଝିଅକୁ ପ୍ରେମ କରୁଥିଲେ । ଏ ଝିଅଟି ସେଇ ପ୍ରେମର ଫଳ । ପାଖ ଗାଁରେ ତା' ଅବିବାହିତା ମା' ସାଥିରେ ରହେ । ଆମ ଘରକୁ ବୁଲିବାକୁ ଆସିଛି । ମନେ ମନେ ଭାବିଲି - ମୋ' ଜୀବନରେ ଏତାଦୃଶ ଘଟଣାଟିଏ ଘଟିଥିଲେ ଘରେ କି ତୁମୁଳକାଣ୍ଡ ସୃଷ୍ଟି କରିନଥାନ୍ତି ସତେ !

ମନେ ଅଛି - ଥରଟେ ଜଣେ ପରିଚିତ ମିଜୋ ଭଦ୍ରଲୋକ ଆମଘରକୁ ସାନ୍ଧ୍ୟଭ୍ରମଣରେ ଆସିଥିଲେ । ତା' ପିଉପିଉ ଗପସପ ହେଲା । ମୁଁ କହିଲି - ଆପଣଙ୍କ ଦେଶରେ ଅବିବାହିତା କନ୍ୟାମାନଙ୍କର ସନ୍ତାନପ୍ରାପ୍ତିକୁ କେତେ ସହଜରେ ଗ୍ରହଣ କରି ନେଉଛନ୍ତି ଆପଣମାନେ । ଆମ ଦେଶରେ ଆମେ ଏହାକୁ ଚରମ ଅସଭ୍ୟତା ତଥା ପାପ ବୋଲି ଗ୍ରହଣ କରିଥାଉ ।

- ଆପଣଙ୍କ ଦେଶରେ କଅଣ ପୁଅଝିଅମାନେ ପ୍ରେମ କରନ୍ତିନି ? ଭଦ୍ରଲୋକ ପଚାରିଲେ ।

- ତା' କାହିଁକି କରିବେନି ? ନିଶ୍ଚୟ କରନ୍ତି । ତାହା ଯେ ବୟସର ଧର୍ମ ! କିନ୍ତୁ ସନ୍ତାନ ଜନ୍ମ କରିବାର ପ୍ରକ୍ରିୟାଟି ସେ ପ୍ରେମର ସରହଦ୍ ଭିତରକୁ ଆସେନି ।

- ଯଦି ଦୈବାତ୍ କୌଣସି ଝିଅ ଅନ୍ତଃସତ୍ତ୍ୱା ହେଇଯାଏ ?

- ଆରେ ବାପ୍‌ରେ ! ସେ ସ୍ଥଳରେ ଝିଅଟି ଆତ୍ମହତ୍ୟା କରିବା ହିଁ ଶ୍ରେୟସ୍କର ମଣେ । ପିତାମାତା ବି ଭାବନ୍ତି ଏଭଳି ସନ୍ତାନ ଥିବା ଅପେକ୍ଷା ନଥିବାଇ ଭଲ । ନବଜାତ ଶିଶୁଟିକୁ ରାସ୍ତାକଡ଼ରେ ଫିଙ୍ଗିଦେବାର କିମ୍ବା ତଣ୍ଟିଚିପି ହତ୍ୟା କରିବାର ଉଦାହରଣ ମଧ୍ୟ କେବେ କେମିତି ମିଳିଥାଏ ।

ମୋ' କଥା ଶୁଣି ସାନ ସାନ ଆଖିଡୋଳାକୁ ଯଥାସାଧ୍ୟ ବିସ୍ଫାରିତ କରି ଭଦ୍ରଲୋକ ଜଣକ ଜବାବ୍ ଦେଲେ - ଏହାତ ଚରମ ବର୍ବରତା । ଗୋଟିଏ ନିର୍ବୋଧ ଶିଶୁକୁ ବିନା ଅପରାଧରେ ତ୍ୟାଗ କରିବାକୁ କିମ୍ବା ହତ୍ୟା କରିବାକୁ ପଶ୍ଚାଦ୍‌ପଦ ହୁଅନ୍ତିନି ଆପଣମାନେ । ଅଥଚ ଆମମାନଙ୍କ ତୁଳନାରେ ନିଜକୁ ସଭ୍ୟ ଓ ଭଦ୍ର ବୋଲି ଜାହିର୍ କରୁଛନ୍ତି ?

ମୁଁ ଚୁପ୍ ହୋଇଗଲି । ବୁଝିପାରିଲି - ପାପର କୌଣସି ନିର୍ଦ୍ଦିଷ୍ଟ ସଂଜ୍ଞା ନାହିଁ । ପାପ ଅନେକାଂଶରେ ଭୌଗୋଳିକ ।

●●●

# ଛାତ

ବାପା କଲେଜରୁ ଫେରି କେଜାଣି କାହିଁକି ଖୋଲାଛାତରେ ହିଁ ଅପରାହ୍ଣର ଜଳଖିଆ କରୁଥିଲେ । ପୂଜାରୀ ବାନ୍ଧା ମାମୁଁ ଭୋଜ୍ୟବସ୍ତୁ ବୋହି ନେଉଥିଲେ ଉପରକୁ । ବଡ଼ ପିଢ଼ା ପକାଇ, ବାପା ଖାଉଥିଲେ ପରଟା, କ୍ଷିରୀ ଓ ଆଳୁଭଜା । ଖାଇସାରି ଖୋଲାଛାତରେ ଅନେକ ସମୟ ଧରି ପଦଚାରଣା କରୁଥିଲେ - ସନ୍ଧ୍ୟା ହେବା ପର୍ଯ୍ୟନ୍ତ । ବେଳ ବୁଡ଼ିଲେ ସେଇଠି ବସି ଆଖି ବୁଜି କରୁଥିଲେ ପ୍ରାର୍ଥନା । ତା' ପରେ ପଢ଼ାଘରକୁ ଆସି ପଢୁଥିଲେ ଅନେକ ରାତିଯାଏ ।

ବାପା ପଦଚାରଣା କଲାବେଳେ, କୁନି କୁନି ପାଦରେ ଷୋଳଟି ଉଞ୍ଚ ଓ ଅନ୍ଧାରୁଆ ସଢ଼ିପାହାଚ ଚଢ଼ି ନିଇତି ଯାଉଥିଲି ଛାତଉପରକୁ । ବାପାଙ୍କ ସାଥିରେ ମିଶି ପରିଚ୍ଛନ୍ନ ନୀଳାକାଶର ଭିନ୍ନ ଭିନ୍ନ ଆକୃତିର ମେଘ ଖଣ୍ଡମାନଙ୍କୁ ଦେଖିବା ଥିଲା ପ୍ରାତ୍ୟହିକ ଅଭ୍ୟାସ । ଦେଖ ଦେଖ ବାପା ବୋଇତ, ଦେଖ ଦେଖ ବାପା ହାତୀଶୁଣ୍ଢ - ତର୍ଜନୀ ବଢ଼େଇ ବାପାଙ୍କୁ ଦେଖାଇ ଦେଉଥିଲି । ସ୍ୱଚ୍ଛ, ଦ୍ୟୁତିମୟ ଆକାଶ । ସ୍ୱୈରାଚାରୀ ତୁଳାପିଞ୍ଜ ପରି ତହିଁରେ ଉଡିବୁଲୁଥିଲେ ଶୁଭ୍ର, ବେଦାଗ୍ ମେଘଦଳ । ଘନଘନ ରୂପ ପାଲଟାଉଥିଲେ ସେ ଚହଲା, ଗତିଶୀଳ ମେଘମାନେ । ବାପାଙ୍କ ହାତଧରି ଚାଲୁଚାଲୁ, ସେ ପରିବର୍ତ୍ତନଶୀଳ ଶାରଦୀୟ ମେଘର ଶୋଭା ଦେଖୁଥିଲି ଶୈଶବରେ ।

ଛାତଉପରେ ଛିଡା ହେଲେ ଆଖିରେ ପଡୁଥିଲା ଚତୁର୍ଦ୍ଦିଗର ନିରୋଳା, ନିବିଡ଼ ଶ୍ୟାମଶୋଭା । ଗଛଲତା ଭିତରେ କେଉଁଠି କେମିତି ହଳଦିଆ କୋଠାଟିଏ । କଲୋନୀଟି ଥିଲା ଖୋଲାମେଲା । ଆମ ଘରପାଖ ପ୍ରଶସ୍ତ ଜମିଟିରେ ଥିଲା ଚାକୁଣ୍ଡା, ନାଗୁଆରି ଓ ଅରଖର ବୁଦୁବୁଦିକିଆ ବଣ ! ଆମ ନିକଟତମ ପଡ଼ୋଶୀଙ୍କର ସୁପୁଷ୍ଟ ଓଉଗଛଟିର ଅନେକ ଗୁଡ଼ିଏ ଡାଳ ଆସି ଛୁଇଁବ ଛୁଇଁବ କରୁଥିଲା ଆମ ଛାତରେ ଇଟାବାଡ଼ । କିୟତ୍‌ଦୂରରେ ଦୁଇଟି ରଙ୍ଗ, ଫଳପ୍ରଦ ନଡ଼ିଆଗଛ । ଗୋଧୂଳି ଆଲୋକରେ ଦିଶୁଥିଲା ଚମତ୍କାର ଏକ ପେଣ୍ଟିଙ୍ଗ୍ ପରି । ଛାତର ଠିକ୍ ପଛପଟେ, ପଶ୍ଚିମଦିଗରେ ଆକାଶର ମଥାନକୁ ସଦର୍ପେ ଛୁଇଁଥିବା ଝିରିଝିରି ପତ୍ରର ତେନ୍ତୁଳିଗଛଟିଏ । ଅସ୍ତଗାମୀ ସୂର୍ଯ୍ୟର ଚିକ୍‌ମିକ୍ ହଳଦିଆ କିରଣ ସେ ପତ୍ରର ଝାଲର ଭିତର ଦେଇ ସୃଷ୍ଟି କରୁଥିଲା ଅପୂର୍ବ କାରିଗରୀ । ଛାତ ଉପରେ ବୁଲୁବୁଲୁ ଦେଖୁଥିଲି- ପଶ୍ଚିମ ଆକାଶରେ ସୂର୍ଯ୍ୟଦେବ ବୁଡ଼ିଯାଉଥିଲେ ଟୁପ୍ କରି । ସାରା ପଶ୍ଚିମଦିଗନ୍ତ ମାତି ଉଠୁଥିଲା ହୋରି ଖେଳର ମହୋତ୍ସବରେ ।

ଶୈଶବରେ ଛାତ ଡ଼ାକୁଥିଲା ବହୁତ ବେଶୀ - ସବୁବେଳେ, ସବୁ ଋତୁରେ । ଶୀତଦିନେ, ସାରା ସକାଳ ଉଷୁମ ଖରାର ସ୍ୱାଦ ନେଉଥିଲୁ ଛାତରେ ବସି । ପୌଷର କୁହୁଡ଼ିଆ ପ୍ରଭାତରେ ଷୋରିଷତେଲ ଗୋଳା ମୁଢ଼ି ଓ ଚିନାବାଦାମ ଭଜା ଖାଉଖାଉ,

ରୌଦ୍ରସ୍ନାତ ଖୋଲାଛାତରେ ମସିଣା ମେଲେଇ ପାଠ ପଢୁଥିଲୁ । ଛାତ ଚଟାଣରେ ଚକ୍‌ରେ ଗାର କାଟି ଖେଳୁଥିଲୁ ଛକିଶୂନ ଓ ବାଘଛେଳି ।

ଗ୍ରୀଷ୍ମଋତୁରେ ଶୋଉଥିଲୁ ଛାତ ଉପରେ । ସଂଜବେଳେ ବାଲ୍‌ଟି ବାଲ୍‌ଟି ପାଣି ଢ଼ଳା ହେଉଥିଲା ଛାତରେ । ଦିନଯାକର ଖରାଖିଆ ଛାତ, ପାଣି ପିଇ ଥଣ୍ଡା ହେବ ବୋଲି । ବୈଶାଖୀ ରାତିର ତାପ ଅନେକାଂଶରେ କମିଯାଉଥିଲା ଛାତରେ ଶୋଇପଡ଼ିଲେ । ଶୁକ୍ଳପକ୍ଷର ଚନ୍ଦ୍ରାଲୋକିତ ରାତିଗୁଡ଼ିକ ଥିଲା ଭାରି ମୋହମୟ । ମନେହେଉଥିଲା ସତେ ଅବା ସାରା ଛାତଟି ଜ୍ୟୋସ୍ନାର ଫିନ୍‌ଫିନ୍ ଦୁଧସାଦା ଚାଦରରେ ଢ଼ଙ୍କା । ଅମାବାସ୍ୟାର ରାତିଗୁଡ଼ିକ କିନ୍ତୁ ଥିଲା ବେଶ୍ ଭୟପ୍ରଦ । ବାରିପଟେ ଥିବା ଜାମୁଗଛର କଳା କଳା ଡ଼ାଳସବୁ କେବେ କେମିତି ମୃଦୁପବନରେ ଦୋହଲି ଯାଉଥିଲା । ପତ୍ରରେ ପତ୍ର ଘଷିହେଇ ଶୁଭୁଥିଲା ଛମ୍‌ଛମ୍ । ଆମେ ସବୁ ଭୟରେ ବୋଉଆଡକୁ ଲାଗି ଆସୁଥିଲୁ । ସ୍କୁଲ୍‌ରେ ପାଠ ପଢ଼ିଲାବେଳେ ଛାତଉପରେ ଟେବ୍‌ଲଲ୍ୟାମ୍ପ ଜଳାଇ ପାଠ ଘୋଷୁଥିଲୁ । ଫ୍ୟାନ୍ ନ ଥିଲା । ଘର ଭିତରର ଗରମ ଥିଲା ଅସହ୍ୟ ।

ରାତି ରାତି ଛାତରେ ଶୋଇ ଓ ଆକାଶକୁ ଚାହିଁ, ଚିହ୍ନିଯାଉଥିଲୁ ତାରାପୁଞ୍ଜଙ୍କୁ - କେଉଁଟି ସପ୍ତର୍ଷିମଣ୍ଡଳ, କେଉଁଟି କାଳପୁରୁଷ ଆଉ କେଉଁଟି ବା ଧ୍ରୁବତାରା । ଚିହ୍ନିପାରୁଥିଲୁ ଯେ ସଂଜର ଈଷତ୍ ରକ୍ତାଭ ତାରାଟି ମଙ୍ଗଳ ଏବଂ ସକାଳର ଉଜ୍ଜ୍ୱଳ ଫୁକିଆତାରାଟି ଶୁକ୍ର ।

ବର୍ଷାଋତୁରେ ଛାତଟିର ଆକର୍ଷଣ ଥିଲା ଅନ୍ୟକାରଣରୁ । ଆଷାଢ଼ଶ୍ରାବଣରେ କେବେ କେମିତି ପଡୁଥିଲା କୁଆପଥର । ଆଉ କୁଆପଥର ପଡ଼ିଲେ ଇ ଦୌଡୁଥିଲୁ ଛାତକୁ । ଫ୍ରିଜ୍ ନାଁ ଶୁଣିନଥିଲୁ ସେତେବେଳେ । ବରଫ ଟୁକୁଡ଼ାଏ ହାତରେ ଧରିବା ଓ ପାଟିରେ ରଖିବାର ମଉଜ ଥିଲା ବହୁତ ବେଶୀ । କୁଆପଥର ଅଗଣାରେ ପଡୁଥିଲା ଅବଶ୍ୟ । କିନ୍ତୁ ମାଟି ସଂସ୍ପର୍ଶରେ ଆସି ହେଇଯାଉଥିଲା ଅପରିଷ୍କାର । ଛାତଉପରର କୁଆପଥରତକ ରହୁଥିଲା ନିର୍ମଳ । ପାଞ୍ଚମିନିଟ୍ କରକାପାତରେ କୁନିକୁନି କୁଆପଥରର ସ୍ଫଟିକ ତୁଲ୍ୟ ଆସ୍ତରଣଟିଏ ଜମିଯାଉଥିଲା ଛାତ ଉପରେ । ବର୍ଷାରେ ଭିଜି ଭିଜି ସେ କୁଆପଥର ତଳୁଉଠାଇ ପୂରାଉଥିଲୁ ମୁହଁରେ । ବରଫ ଖାଇବାରେ କି ଯେ ସଉକ୍ ଥିଲା ସେତେବେଳେ ।

ଛାତଟି ଆମପାଇଁ ଥିଲା ଅପରିହାର୍ଯ୍ୟ । ଛାତଉପରେ ଶୁଖା ହେଉଥିଲା ଲୁଗାପଟା, ଶୁଖା ହେଉଥିଲା ବଡ଼ି, ସାବୁଦାନା ପାମ୍ପଡ୍ ଓ ଆଳୁ ଚିପ୍‌ସ୍ । ଖରା ଖାଉଥିଲା ବୋଉ ହାତ ତିଆରି ଭଳି ଭଳି ଆଚାର - ଆମ୍ବ, ଲେମ୍ବୁ, ବରକୋଳି ଓ ତେନ୍ତୁଳିର । ଦୀବାଲି ଦିନ ଧାଡ଼ିଧାଡ଼ି ଦୀପ ଜଳୁଥିଲା ଛାତ ଦାଡ଼ରେ । ହାଲୋଳ ହେଉଥିଲା ଅମାବାସ୍ୟାର

ରାତି ସେ ଟିମ୍‌ଟିମ୍ ଦୀପାଲୋକରେ । ତାଳଫୋଟକାରେ ନିଆଁ ଚେଙ୍ଗି ଫିଙ୍ଗି ଦେଉଥିଲୁ ତଳକୁ । ଛାତଚଟାଣରେ ଘିରିଘିରି ବୁଲୁଥିଲେ ଚକ୍ରୀବାଣ । ଝିକିମିକି ନୀଳନୀଳ ନିଆଁର ଫୁଲ୍‌କି ବିଚ୍ଛୁରଣ କରୁଥିଲେ ବଡ ବଡ କୁମ୍ଭି । ସକାଳକୁ ସାରା ଛାତ ଫୁଲ୍‌ଝରି ତାର, ତାଳପତ୍ର ଓ କୁମ୍ଭି ସରାରେ ଭର୍ତ୍ତି । ଛାତ ଓଲାଉ ଓଲାଉ ବୋଉ ରାଗୁଥିଲା ଆମ ଉପରେ ।

କିଶୋର ଭାଇ ବନୁର ଥିଲା ଘୁଡିଉଡ଼ାର ସଉକ୍ । ମକର ସଂକ୍ରାନ୍ତି ପାଖ ହେଇ ଆସିଲେ, ବନୁ ଘୁଡ଼ି ସରଞ୍ଜାମ ଧରି ଉଠି ଯାଉଥିଲା ଛାତକୁ । ଏବଂ ତା' ସହିତ ଆମେ ବି । ରନ୍ଧାମଇଦାରେ କାଚଗୁଣ୍ଡ ମିଶାଇ ମାଞ୍ଜା ଦିଆ ହେଉଥିଲା ସେ ସୂତାରେ । ସୂତା ଶୁଖିଗଲେ ନଟେଇରେ ଗୁଡିଆ ହେଉଥିଲା । ବନୁ ନଟେଇ ଧରୁଥିଲା ଦୁଇ ହାତରେ । ଛାତରେ କିଛିବାଟ ଆଗକୁ ଯାଇ ଆମେ ସୂତାବନ୍ଧା ଘୁଡିଟି ଠେଲି ଦେଉଥିଲୁ । ଉପରକୁ । ବନୁ, ତା' ପାରଙ୍ଗମ ହାତର ନିପୁଣ କାରସାଦିରେ, ଘୁଡିଟି ଟେକି ନେଉଥିଲା ଶୂନ୍ୟକୁ । ଆକାଶକୁ ଚାହିଁଲେ ଚାରିଆଡ଼େ ନାଲି, ନେଳି ଓ ବାଇଗିଣୀ ରଙ୍ଗର ବିହଙ୍ଗମ ପରି ଭିନ୍ନ ଭିନ୍ନ ଆକୃତିର ଘୁଡିସବୁ । ବନୁ, କଦବା କେମିତି ତା' ଘୁଡ଼ି ପାଖାପାଖି ଉଡୁଥିବା କୌଣସି ଏକ ଘୁଡ଼ି ସହିତ ଲଢ଼େଇ କରି, ତା' ମିହିସୂତାଟି କାଟି ଦେଉଥିଲା । ପବନରେ ଲହରେଇ ଲହରେଇ ସେ କଟାଘୁଡ଼ି ଖସି ଆସୁଥିଲା ତଳକୁ । ଭାରି ଉତ୍ତେଜନାମୟ ମୁହୂର୍ତ୍ତ ଥିଲା ସିଏ ଆମ ପାଇଁ ।

ଛାତ ଉପରେ କଡିକିଆ ହୋଇ ଥିଲା ସାନ ଚିମ୍‌ନୀ ଘରଟିଏ - ଠିକ୍ ରୋଷେଇ ଘର ଉପରେ । ରୋଷେଇଘରେ ଜଳୁଥିବା କାଠଚୁଲୀର ଧୂଆଁ ବାହାରିଯିବା ଲାଗି । ସେ ଚିମ୍‌ନୀ ଘରର ଅଳନ୍ଧୁଲଗା ଝଳା ଦେଇ ତେରଛେଇ ଚାହିଁଲେ, ତଳେ ଦିଶୁଥିଲା ଗବ୍‌ଗବ୍ ହେଇ ଫୁଟୁଥିବା ଭାତହାଣ୍ଡି କିମ୍ବା ଟଗ୍‌ମଗ୍ ହେଇ ଫୁଟୁଥିବା ଫୁଲ୍‌କୋବିର ଝୋଳ । ଭାରି ମଜାର ଥିଲା ସେ ଦୃଶ୍ୟ । ଛାତ ଉପରର ସେ ଚିମ୍‌ନୀ ଘର ଅବଶ୍ୟ ଅନେକବର୍ଷ ହେଲା ଆଉ ନାହିଁ । ଘରଟି ଭଙ୍ଗା ହେଇ, ଛାତଟି ବରାବର କରିଦିଆ ହେଇଛି । କାଠଚୁଲୀର ଧୂଆଁ ନିଷ୍କାସନ ଏବେ ଆଉ ଏତେ ଜରୁରୀ ନୁହେଁ । ଘରେ ଗ୍ୟାସ୍‌ଚୁଲୀରେ ରନ୍ଧାବଢ଼ା ହୁଏ ।

ଛ'ମାସ ତଳେ ଆମେରିକାରୁ ଆସିଥିବା ମୋ'ର ପଞ୍ଚବର୍ଷର ପୌତ୍ରଟିକୁ, ସେ ଚିମ୍‌ନୀ ଘର କଥା କହୁଥିଲି । ଜିନିଷଟି କଅଣ ସିଏ ବୁଝିପାରିଲାନି । ଏବଂ ମୁଁ ନିଶ୍ଚିତ ଯେ କେବଳ ଆମେରିକୀୟ ପିଲାମାନେ ନୁହନ୍ତି ସାଂପ୍ରତିକ ନଗରୀସଭ୍ୟତାରେ ବଢୁଥିବା ଅନେକ ଭାରତୀୟ ପିଲା ମଧ୍ୟ ସେ ଜିନିଷଟି କଅଣ ବୁଝିପାରିବେନି । କଳ୍ପନା କରିପାରିବେନି ଚିମ୍‌ନୀ ଘରର ଝଳା ଭିତରେ ଦେଇ ଚୁଲୀ ଉପରର ଲୁହା କଡେଇରେ ଗବ୍‌ଗବ୍ ହୋଇ ଫୁଟୁଥିବା ସେ କୋବିଝୋଳର ଦୃଶ୍ୟ ଦେଖିବାର ଅନିର୍ବଚନୀୟ ଆନନ୍ଦ ।

●●●

# ଏମିତି ବି ହୁଏ

ପ୍ରତ୍ୟେକ କାମ କରିବାର ଏକ କାଇଦା ଅଛି । ବେଣୀ ବାନ୍ଧିବାଠାରୁ ଆରମ୍ଭ କରି ସିଗ୍ରେଟ୍ ଟାଣିବା ପର୍ଯ୍ୟନ୍ତ । ଉତ୍କୋଚ ଦେବାର ବି । କାଇଦାଟି ନ ଜାଣିଥିଲେ ଇ ଗଣ୍ଡଗୋଳ । କେତେବେଳେ, କେମିତି ଓ କେଉଁ ବ୍ୟକ୍ତିବିଶେଷଙ୍କୁ ପଇସା ଦେଲେ କାମଟି ସହଜରେ ହାସିଲ୍ ହୋଇଯିବ - ଏହା ଜାଣିବା ଏବଂ ଆହରଣ କରିଥିବା ଏଇ ଜ୍ଞାନଟିକୁ ସୁଚାରୁରୂପେ କାର୍ଯ୍ୟରେ ଲଗାଇବା, ଏକ ଆୟାସପ୍ରସୂତ ସୂକ୍ଷ୍ମକଳା । ସଭିଏଁ ଏ ବିଦ୍ୟାରେ ପାରଙ୍ଗମ ହୋଇ ନପାରନ୍ତି ।

ମନେ ଅଛି - ବହୁ ବର୍ଷ ପୂର୍ବେ, କୌଣସି ଏକ ପାରିବାରିକ କାର୍ଯ୍ୟରେ ଆସାମରୁ ଓଡ଼ିଶା ଆସି ଥିଲି । ଏକୁଟିଆ । ଗୌହାଟୀରୁ ଉଡାଜାହାଜରେ କଲିକତା ଏବଂ ସେଠାରୁ ଟ୍ରେନ୍‌ରେ କଟକ । ଆସିବାର ଦୁଇ ଦିନ ପରେ ହରତାଳ ଯୋଗୁ ଇଣ୍ଡିଆନ୍ ଏୟାରଲାଇନ୍‌ସ୍‌ର ଉଡାଣ ସବୁ ବନ୍ଦ ହୋଇଗଲା । ଏବଂ ମୁଁ କଟକରେ ଅଟକିଗଲି ଅନିର୍ଦ୍ଦିଷ୍ଟ କାଳ ପାଇଁ । ଫେରନ୍ତା ପ୍ଲେନ୍‌ଟିକେଟ୍‌ଟି ଦିନଦିନ ଧରି ପଡିରହିଲା ମୋ ଚମଡା ସୁଟ୍‌କେଶ୍ କନ୍ଦିରେ । ମୋ'ର ଶିଶୁ ପୁତ୍ରଟିକୁ ଛାଡିକି ଆସିଥିଲି ବିନୟଙ୍କ ପାଖରେ । ଦିନେ ତା' କଥା ମନେ ପଡି ଏଭଳି ଛଟ୍‌ପଟ୍ ଲାଗିଲା ଯେ ବାପାବୋଉଙ୍କ ଆଦେଶକୁ ଅମାନ୍ୟ କରି ଫେରନ୍ତା ଯାତ୍ରା ପାଇଁ ଯାଇ ଟ୍ରେନ୍‌ଟିକେଟ୍ କାଟି ଆଣିଲି ଏକା ଏକା । ସେତେବେଳେ ଆସାମକୁ ସିଧାସଳଖ ଟ୍ରେନ୍ ନଥିଲା । ଯିବାକୁ ହେଉଥିଲା ତିନୋଟି ଟ୍ରେନ୍ ଧରି । କଟକରୁ କଲିକତା, କଲିକତାରୁ ବରଉନି ଏବଂ ବରଉନିରୁ ଗୌହାଟୀ । ମାତ୍ର ଦିନକ ଆଗରୁ ଟିକେଟ୍ କାଟିଥିବା ହେତୁ ପ୍ରଥମ ଦୁଇଟି ଟ୍ରେନ୍‌ରେ ଯଦିଓ ଭାଗ୍ୟବଶତଃ ମନେ ରିଜର୍ଭେସନ୍ ମିଳିଗଲା, ତୃତୀୟଟିରେ ମିଳିଲାନି ।

ବରଉନି ଷ୍ଟେସନ୍‌ରେ, କଲିକତାରୁ ମୋ'ର ସହଯାତ୍ରୀ ଥିବା ତାମିଲ୍ ଯୁବକ ଜଣକ ମତେ ଆସି କହିଲେ - ମାଡାମ୍ । ମୋ'ର ବି ରିଜର୍ଭେସନ୍ ନଥିଲା । କିନ୍ତୁ ଟି.ଟି.ଆଇ.ଙ୍କୁ ପଇସା ଦେଇ ଏବେ ବାର୍ଥ ପାଇଗଲି । ଆହୁରି ଦୁଇଟି ବାର୍ଥ ଖାଲି ଅଛି । ଆପଣ ବି ଯାଇ ଯତ୍‌ସାମାନ୍ୟ ଉତ୍କୋଚ ଦେଲେ କାମଟି ହେଇଯିବ । ତାଙ୍କ କଥା ଶୁଣି ଟି.ଟି.ଆଇ.ଙ୍କ ପାଖକୁ ଯାଇଥିଲି । ମୋ'ରି ସାମ୍ନାରେ, ଅନ୍ୟ ଦୁଇଜଣ ଭଦ୍ରବ୍ୟକ୍ତି ସେ କାର୍ଯ୍ୟ ହାସିଲ୍ କରିନେଲେ । କିନ୍ତୁ ସେ କାମଟି ମୁଁ କରିପାରିଲିନି । ପୂରା ଗୋଟିଏ ଦିନ ଓ ଗୋଟିଏ ରାତି ସେକେଣ୍ଡକ୍ଲାସ୍ ଭିଡ ଭିତରେ ବସି ବସି ଏକପ୍ରକାର ଚଟଣୀ ହୋଇ କୌଣସି ମତେ ପହଞ୍ଚିଥିଲି ଗୌହାଟୀରେ ।

ଇଏ ଅବଶ୍ୟ ମୋ' ଜୀବନର ନିହାତି ସାଧାରଣ ଘଟଣାଟିଏ ଏବଂ ଆଜିର ଏ କାହାଣୀର ପୂର୍ବାଭାସ ମାତ୍ର । ଆଜିର ଏ କାହାଣୀର ନାୟକ କିନ୍ତୁ ଅନ୍ୟଜଣେ ।

ଏ କାହାଣୀ ମୋ'ର ଡରକୁଳା ଓ ନିରୀହ ସାନ ଭାଇଟିର ଉତ୍କୋଚ ଦେବାର ଖଡିପାଠର କାହାଣୀ । ଏବଂ କାହାଣୀଟି ପୂରାପୂରି ନାଟକୀୟ ।

ମୋ ସାନଭାଇଟି ପେଶାରେ ଇଞ୍ଜିନିୟର ଏବଂ ତା' ନିଜ ବିଦ୍ୟାରେ ବେଶ୍ ନିପୁଣ । ସେତେବେଳେ ନୂଆ ନୂଆ ଚାକିରି କରୁଥାଏ । କାର୍ଯ୍ୟରତ ଥିଲା ଇନ୍ଦ୍ରାବତୀ ଜଳବିଦ୍ୟୁତ୍ ପ୍ରକଳ୍ପରେ । ତିନିବର୍ଷ ପରେ ବଦଳିହେଲା ପଶ୍ଚିମ ଓଡ଼ିଶାର କୌଣସି ଏକ ଜିଲ୍ଲାର ହେଡ୍‌କ୍ୱାର୍ଟରକୁ । ଭାଇ ଜିନିଷପତ୍ର ବାନ୍ଧି, ଅଚିରେ ଯାଇ ପହଞ୍ଚିଗଲା ନୂତନ କର୍ମସ୍ଥଳରେ । କିନ୍ତୁ ସେଠାରେ ଥିବା ଅଫିସର ଜଣକ, କୌଣସି ସ୍ୱାର୍ଥଗତ କାରଣ ଯୋଗୁ, ସେ ସ୍ଥାନ ଛାଡିବାକୁ ଥିଲେ ନାରାଜ ଏବଂ ଭାଇକୁ ଚାର୍ଜ ଇ ଦେଲେନି । ଜଣାଇଦେଲେ ଯେ ସରକାରଙ୍କ ନିଯୁକ୍ତିପତ୍ର ବିରୁଦ୍ଧରେ ସିଏ ଟ୍ରିବ୍ୟୁନାଲ୍‌ରେ ଏବେ ଏବେ ଗୋଟିଏ କେଶ୍ କରିଛନ୍ତି ଏବଂ ସେ କେଶ୍ ଫଇସଲା ନହେବା ପର୍ଯ୍ୟନ୍ତ ସିଏ ସେ ସ୍ଥାନ ଛାଡ଼ିବେନି । ସେଠାରେ କିଛି ଦିନ ଅବସ୍ଥାନ କରି ଭାଇ ତେଣୁ ବାଧ ହୋଇ ଫେରିଆସିଲା ଭୁବନେଶ୍ୱର । ଆସି ଏହି ସମ୍ବାଦଟି ବିଭାଗୀୟ ବଡକର୍ତ୍ତାଙ୍କର କର୍ଣ୍ଣଗୋଚର କରାଇଲା ମଧ୍ୟ । କୋର୍ଟ କଚେରୀକୁ ସହଜେ ସଭିଙ୍କର ଡର । ଟ୍ରିବ୍ୟୁନାଲ୍‌ର କେଶ୍ କଥା ଶୁଣି ତେଣୁ ସାନବଡ ସମସ୍ତ ଅଫିସର୍ ରହିଲେ ନୀରବ ଏବଂ ନିଶ୍ଚେଷ୍ଟ । ଏଇଭଳି ପରିସ୍ଥିତିରେ, ଭାଇକୁ ବାଧ ହେଇ ଛୁଟି ନେଇ ଘରେ ବସିବାକୁ ପଡ଼ିଲା ।

ଶେଷ ପର୍ଯ୍ୟନ୍ତ ଅବଶ୍ୟ ଭାଇକୁ ଭୁବନେଶ୍ୱରର ଏକ ନିର୍ଦ୍ଦିଷ୍ଟ ସଂସ୍ଥାରେ ନିଯୁକ୍ତ କରାଗଲା ଏବଂ ତା ଜୀବନ ପୁନର୍ବାର ତାର ସ୍ୱାଭାବିକ ଛନ୍ଦରେ ଗଡ଼ିଚାଲିଲା । କିନ୍ତୁ ଚାକିରିରେ ହେଇଥିବା ଏଇ ଅବ୍ୟବସ୍ଥାର ଫଳସ୍ୱରୂପ, ମଝିକେଇ ମାସର ଦରମା ଆଉ ତାକୁ ମିଳିଲାନି । ଏଇ ସଂପର୍କରେ ସରକାରୀ କଳକବଜାକୁ ସକ୍ରିୟ କରିବାଲାଗି ସମସ୍ତ ନଥିପତ୍ରର କପି ସହିତ ଭାଇ ରିପ୍ରେଜେଣ୍ଟେସନ୍‌ଟିଏ ପଠାଇଲା । କିନ୍ତୁ ଦୀର୍ଘସମୟ ବିତିଗଲା ପରେ ବି, ସେ ରିପ୍ରେଜେଣ୍ଟେସନ୍‌ର କୌଣସି ଉତ୍ତର ଆସିଲାନି । ମାସ ପରେ ମାସ ଗଡ଼ି ଚାଲିଲା । ଭାଇ ରିମାଇଣ୍ଡର୍ ପରେ ରିମାଇଣ୍ଡର୍ ପଠାଇ ଲାଗିଲା ।

ରିମାଇଣ୍ଡର୍ ପଠାଇ ପଠାଇ, ଭାଇ ଯେତେବେଳେ ସଂପୂର୍ଣ୍ଣରୂପେ କ୍ଲାନ୍ତ ଓ ହତୋତ୍ସାହ, ସେତେବେଳେ ତା ଦୁଃଖରେ ସମବ୍ୟଥୀ ହେଇଉଠିଥିବା ତା' ଅଫିସ୍‌ର ସଖାସହୋଦରମାନେ ପାଖରେ ବସି, ପିଠି ଆଉଁଷି ସାନ୍ତ୍ୱନାମୟ ସଦ୍‌ବୁଦ୍ଧିଟିଏ ଦେଲେ – ଆପଣ ତ ବିଲ୍‌କୁଲ୍ ଆପଣଙ୍କ ବାପାଙ୍କ ପରି ହେଇଛନ୍ତି । ଆଜିକାଲି ଯୁଗରେ ସିଧାବାଟରେ ଚାଲି କଅଣ କେବେ କିଛି କାମ ହୁଏ ? କିଛି ପଇସା ଖର୍ଚ୍ଚ କରନ୍ତୁ ଆଜ୍ଞା । ତା ହେଲେ ଯାଇ ଫାଇଲ୍‌ର ଗୋଡ଼ ଗଜୁରିବ ଏବଂ ସିଏ ଚାଲିବାକୁ ଆରମ୍ଭ କରିବ । ନ ହେଲେ ଧୂଳିଧୂସରିତ ହେଇ ପଡ଼ିରହିଥିବ ଆଲ୍‌ମାରୀ କନ୍ଦିରେ ବର୍ଷ ବର୍ଷ ଧରି ।

ଏତାଦୃଶ ସଦ୍‌ବୁଦ୍ଧିଟିଏ ପାଇ ବିଷନ୍ନତାରେ ଅବନତ ମୋ ଭାଇର ମେରୁଦଣ୍ଡହାଡ଼ ସାମାନ୍ୟ ସଳଖି ଉଠିଲା । ଦରମା ମଞ୍ଜୁର୍ କରିବାର ଏଭଳି ଶସ୍ତା, ସୁନ୍ଦର, ମଜବୁତ

କାଇଦାଟିଏ ଥାଉ ଥାଉ ମାସ ମାସ କାଳ କେବଳ ଚିଠି ଲେଖି ସମୟ ନଷ୍ଟ କରିଦେଇଥିବା ହେତୁ ନିଜକୁ ଗୋଟିଏ ନିର୍ବୋଧ ମଣିଷ ବୋଲି ଭାବି ବସିଲା ମଧ୍ୟ । କେଉଁ ବିଭାଗରେ ଏବଂ କେଉଁ ଅମଲାଙ୍କ ପାଖରେ ଫାଇଲଟି ପଡ଼ିରହିଛି, ଖବର କରି ବୁଝିନେଲା କେଇଟା ଦିନରେ । ଏବଂ ତା'ପରେ ପକେଟ୍‌ରେ ନୂଆ କରକରିଆ ନୋଟ୍ କେଇଖଣ୍ଡ ଧରି ଦିନେ ଯାଇ ହାଜିର୍ ହେଇଗଲା ଉକ୍ତ ଅମଲାଙ୍କ ପାଖରେ ।

ଭାଇ ପହଞ୍ଚିଲା ବେଳକୁ ଅମଲାଜଣକ କୋଳ ଉପରେ ହାତ ଦୁଇଟି ନ୍ୟସ୍ତ କରି, ମୁଖମଣ୍ଡଳରେ ଭାବଲେଶହୀନ ଅଭିବ୍ୟକ୍ତିଟିଏ ଫୁଟାଇ, ନିବିଷ୍ଟମନରେ ତାମ୍ବୁଲସେବନ କରୁଥିଲେ । ଭାଇ ବାପାଙ୍କ ନାଁଟି କହି ତାଙ୍କ ପୁତ୍ର ବୋଲି ନିଜର ପରିଚୟ ଦେଲା ଓ ନିଜର ଦରମାଜନିତ ଦୁର୍ଦ୍ଦଶାକଥା ତରତର୍ କରି ବଖାଣି ଲାଗିଲା । ସବୁ ଶୁଣି ନିର୍ବେଦ ଭଙ୍ଗୀରେ ଅମଲାଜଣକ କହିଲେ - ମୋ'ର ଏବେ ବହୁତ କାମ । ଆଉ ଯାହା ଜଣାପଡୁଛି ଆପଣଙ୍କ କେଶ୍‌ଟି ବେଶ୍ ଗଣ୍ଡଗୋଳିଆ । ଯାଆନ୍ତୁ ଆରମାସ ଆଡ଼ିକି ଆସିବେ ।

ତାଙ୍କର ଦ୍ୱିଧାମୟ ଭଙ୍ଗୀ ଦେଖି ଭାଇ ବୁଝିନେଲା ଯେ ଉତ୍କୋଚଦେବାର ଏଇ ହିଁ ପ୍ରକୃଷ୍ଟ ସମୟ । ଭଦ୍ରଲୋକ ନିଶ୍ଚୟ ପଇସା ଲୋଭରେ ଜାଣିଶୁଣି କାମଟି ଡେ଼ରି କରୁଛନ୍ତି । ହୁଏତ ପରୋକ୍ଷରେ ଜଣାଇ ଦେଉଛନ୍ତି ଯେ ଉପଯୁକ୍ତ ପ୍ରାପ୍ୟ ନ ମିଳିଲେ ଫାଇଲର ଫିତା ମୁଁ ନ ଖୋଲେ । ସାଙ୍ଗସାଥିମାନଙ୍କଠାରୁ ଶିଖି ଆସିଥିବା ଉତ୍କୋଚଦେବାର କାଇଦାଟି ମନେପଡ଼ିଲା ଭାଇର । ପ୍ୟାଣ୍ଟ ପକେଟ୍‌ରୁ ଅର୍ଦ୍ଧନୂଆ ଶହେଟଙ୍କିଆ ନୋଟ୍‌ଟିଏ କାଢ଼ି ତଥା ସନ୍ତର୍ପଣରେ ତାହା ଟେବୁଲ୍‌ତଳେ ବଢ଼େଇ ଭଦ୍ରବ୍ୟକ୍ତିଙ୍କ କ୍ରୋଡ଼ରେ ନ୍ୟସ୍ତଥିବା ହାତଭିତରେ ସେ ଗୋଟିକ ଗୁଞ୍ଜି ଦେବାପାଇଁ ଚେଷ୍ଟା କଲା ଭାଇ । ଏବଂ ଠିକ୍ ଏତିକି ବେଳେଇ ଘଟିଲା ବିସ୍ଫୋରଣ ।

ଭଦ୍ରବ୍ୟକ୍ତି ଜଣକ ଚମକି ପଡ଼ି ତଡ଼ିତ୍‌ଗତିରେ ଉଠିପଡ଼ିଲେ ଚୌକୀରୁ ଏବଂ ଭାଇର ନୋଟ୍ ଧରିଥିବା ଡ଼ାହାଣହାତର କଚଟିକୁ ଶକ୍ତ ଭାବରେ ମୁଠା ଭିତରେ ଜାବୁଡ଼ିଧରି ତାକୁ ଘିଡ୍‌ଘିଡ୍ କରି ଟାଣି ନେଇ ଆସିଲେ କକ୍ଷର ମଧ୍ୟସ୍ଥଳକୁ । ଚିତ୍କାର କରି ଉଚ୍ଚସ୍ୱରରେ ସହକର୍ମୀମାନଙ୍କ ଆଡ଼େ ଦୃଷ୍ଟି ନିକ୍ଷେପ କରି କହିଲାଗିଲେ - ଦେଖନ୍ତୁ ଆଜ୍ଞା, ଆପଣମାନେ ଦେଖନ୍ତୁ । କି ଭଳି ଦେବପ୍ରତିମ ଲୋକର ପୁଅ ଇଏ । ଅଥଚ କି କୁକର୍ମ କରୁଛନ୍ତି । ଆସିଛନ୍ତି ମତେ ଲାଞ୍ଚଦେବାକୁ । ଭାବୁଛନ୍ତି ଲାଞ୍ଚ ଦେଲେ ମୁଁ କାମଟି କରିଦେବି ।

କହିବା ବାହୁଲ୍ୟ ମୋ ସତ୍, ନିରୀହ ଓ ଭୀରୁ ଭାଇଟିର ଅବସ୍ଥା ସେତେବେଳକୁ ଅତିମାତ୍ରାରେ ଦୟନୀୟ । ଦର୍‌ଦର୍ ଝାଳ ବୋହି ସଦ୍ୟ ଇସ୍ତ୍ରୀ କରା ସାର୍ଟ ଅଧାଅଧି ଓଦା । ଟକ୍‌ଟକ୍ ଗୋରା ମୁହଁ ମସୀବର୍ଣ୍ଣ । ଚତୁର୍ଦ୍ଦିଗରେ ସସ୍ମିତ ମୁହଁରେ ଦୃଶ୍ୟଟି ଉପଭୋଗ କରୁଥିବା ଏକାଧିକ କର୍ମଚାରୀଙ୍କ ଭିଡ଼ । ଭାଇର ତଣ୍ଟି ଶୁଖି ସେତେବେଳକୁ

ଅଠା ଅଠା । ହାତରେ ଧରିଥିବା ନୂଆନୋଟ୍‌ଟି ଉଡ଼ିଲାଗିଛି ପ୍ୟାନ୍ ପବନରେ ଫର୍‌ଫର୍ ହେଇ ।

ଶେଷପର୍ଯ୍ୟନ୍ତ, କୌଣସିମତେ ସାହସ ସଂଗ୍ରହ କରି ଭାଇ କହିଲା - ମତେ କ୍ଷମା କରନ୍ତୁ । ମୁଁ ଜୀବନରେ କେବେ ବି କାହାକୁ ଲାଞ୍ଚଦେଇନି । କେବଳ ଆମ ଅଫିସ୍‌ର ଲୋକମାନଙ୍କ କଥାରେ ପଡ଼ି ଏଭଳି ଭୁଲ୍ କାମଟିଏ କରିବସିଲି । ବର୍ଷେ ହେଇଗଲା, ମୋର ପ୍ରାପ୍ୟ ଦରମା ଏଯାଏ ମତେ ମିଳିଲାନି । ସେଇଥିପାଇଁ ଆପଣଙ୍କ ପାଖକୁ ଆସିଥିଲି ଆଜି । ଦୟାକରି ମତେ କ୍ଷମା କରନ୍ତୁ ।

ସୁଦର୍ଶନ ଯୁବ ଇଞ୍ଜିନିୟରଟିଏ ଏତାଦୃଶ ଦୂରବସ୍ଥା ଦେଖି, ଭଦ୍ରବ୍ୟକ୍ତିଙ୍କ ହୃଦୟରେ କିଛିଟା କରୁଣା ଜାଗରିତ ହେଲା ନିଶ୍ଚୟ । କାରଣ ଏହାପରେ ଭାଇର କଚଟିଟିକୁ ନିଜ ମୁଷ୍ଟିକବଜାରୁ ମୁକ୍ତକରି ପାଖରେ ବସାଇ, ପାଣି ପିଆଇ ସ୍ନାୟବିକ ଭାରସାମ୍ୟ ହରାଇବସିଥିବା ଭାଇଟିକୁ ସାନ୍ତ୍ୱନା କଲେ । ଏବଂ ପିଅନ ହାତରେ ଫାଇଲଟି ଖୋଜି ତାହା ଆମୂଳଚୂଳ ପାଠକଲେ । ପଢ଼ିସାରି ଭାଇକୁ ଜଣାଇଲେ - ମୁଁ ଭାରି ଦୁଃଖିତ । ଆପଣଙ୍କ ପ୍ରତି ସତରେ ବହୁତ ଅନ୍ୟାୟ ହେଇଛି । ଫାଇଲ୍‌ଟି ଏତେ ଦିନ ଧରି ମୋ ପାଖରେ ପଡ଼ି ରହିଗଲା । ତେବେ ମତେ ଗୋଟିଏ ଦିନ ସମୟ ଦିଅନ୍ତୁ । କାଲି ମୁଁ ଫାଇଲ୍ ଟିକିନିଖି ଭାବରେ ପଢ଼ି ନୋଟ୍‌ସିଟ୍ ତିଆରି କରି ରଖିଥିବି । ପଅରଦିନ ଆପଣ ଆସନ୍ତୁ । ସେଇଦିନ ଉପର ହାକିମଙ୍କ ପାଖକୁ ପଠାଇ ଦେବି । ଆପଣଙ୍କୁ କଥା ଦେଲି । ଆପଣଙ୍କ ପ୍ରାପ୍ୟ ଦରମା ଆପଣ ମାସକ ଭିତରେ ପାଇଯିବେ । ସମ୍ବେଦନଶୀଳ କଣ୍ଠରେ ଭାଇକୁ ଆଶ୍ୱାସନା ଦେଇ ଭଦ୍ରବ୍ୟକ୍ତି ବିଦା କରିଦେଲେ । କଥା ଅନୁସାରେ କାମଟି ଅଚିରେ କରିଦେଲେ ମଧ୍ୟ । ଭାଇକୁ ସତକୁ ସତ କେଇଦିନ ଭିତରେ ବକେୟା ଟଙ୍କା ତକ ମିଳିଗଲା ।

ଟଙ୍କା ପାଇସାରିବା ପରେ, ଭଦ୍ରବ୍ୟକ୍ତିଙ୍କୁ ଧନ୍ୟବାଦ୍ ଦେବାପାଇଁ ଭାଇ ତାଙ୍କ ପାଖକୁ ଯାଇଥିଲା । ସୌଜନ୍ୟ ଖାତିର୍‌ରେ ହାତରେ ମିଠା ପ୍ୟାକେଟ୍‌ଟିଏ ନେଇକି ଯିବାପାଇଁ ତାର ଅଦମ୍ୟ ଇଛା ହେଇଥିଲେ ସୁଦ୍ଧା ତାହା ନେବାପାଇଁ ସାହାସ କରି ନ ପାରିଥିଲା ଶେଷ ପର୍ଯ୍ୟନ୍ତ ।



# 'ବବି ପାଇଁ'

ଏ କାହାଣୀଟି ବବିର ନିର୍ଦ୍ଦେଶ ଅନୁଯାୟୀ ଲେଖା । ତା'ରି ଜିଦ୍‌ରେ, ତା'ରି ଅନୁରୋଧରେ ।

ବବି ମୋର ପୁତ୍ର । ଯୁକ୍ତରାଷ୍ଟ୍ର ଆମେରିକାର ଏକ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ । ବହି ପଢ଼େ ପ୍ରଚୁର । ଏକ ପ୍ରକାର ପୁସ୍ତକକୀଟ କହିଲେ ଚଳେ । ବିଜ୍ଞାନୀ ହୋଇ ସୁଦ୍ଧା କଳାରେ ସଉକ୍ ରଖେ । ଛବି ଆଙ୍କେ । ଲେଖାଲେଖି କରେ - ଇଂରାଜୀରେ । ଏବଂ ଦର୍ଶନ, ଚିତ୍ରକଳା, ସଙ୍ଗୀତ ତଥା ସାହିତ୍ୟର ମୂଲ୍ୟାଙ୍କନ କରେ ତାର ନିଜସ୍ୱ ଅଭିନବ ଢ଼ଙ୍ଗରେ, ଯାହାକି ସଚରାଚର ଭାବରେ ପ୍ରଚଳିତ ଥିବା ମୂଲ୍ୟାଙ୍କନର ଧାରା ସହିତ ଅନେକ ସମୟରେ ଖାପ୍ ଖାଏନି । ମୁଁ ତାକୁ ମୋ ତୁଳନାରେ ଅଧିକତର ବୋଧଶକ୍ତି ସଂପନ୍ନ ବୋଲି ମନେକରେ ଏବଂ ତାର ମତାମତକୁ, ସଦାସର୍ବଦା ନ ହେଲେ ବି, ପ୍ରାୟ ସମୟରେ ସମ୍ମାନ କରେ ।

ଛ' ମାସ ତଳେ ବବି ଆସିଥିଲା ଘରକୁ ଖରାଛୁଟିରେ । ମୋର ପ୍ରକାଶିତ ଲେଖା କେତୋଟି ପଢ଼ିଲା ମନଯୋଗ ଦେଇ । ଉତ୍ସୁକତାର ସହିତ ପଚାରିଲି - କେମିତି ଲାଗିଲା ରେ ମୋ ଲେଖା ?

ମୃଦୁ ହସି ବବି କହିଲା - ତୁମ ଲେଖା ସବୁ ତୁମ ପରି । ଭାବାବେଗ ଓ ଉଚ୍ଛ୍ୱାସରେ ଭୁରୁବୁରୁ । ହେଲେ ସବୁଗପ ଏକାପରି କାହିଁକି ଲେଖୁଚ ମାମା ? ଭାବପ୍ରବଣତାକୁ ବାଦ୍ ଦେଇ ଥରେ ଚେଷ୍ଟା କର ତ ଅଲଗା କିଛି ଲେଖିବାକୁ । ପାଠକକୁ ଟିକିଏ ଦ୍ୱନ୍ଦ୍ୱରେ ପକାଅ । ତାକୁ କୌତୂହଳୀ କର । ବିଭ୍ରାନ୍ତ କର ।

- ପାଠକକୁ ବିଭ୍ରାନ୍ତ କରିବି ? ମୁଁ ଆଶ୍ଚର୍ଯ୍ୟ ହେଇ ପଚାରିଲି ।

- ବିଲ୍‌କୁଲ୍ । ଗପରେ ଏଲିମେଣ୍ଟ ଅଫ୍ ସରପ୍ରାଇଜ୍ ଏବଂ ସେନ୍‌ସ ଅଫ୍ ହ୍ୟୁମର ଯେ ଏକାନ୍ତ ଆବଶ୍ୟକ । ତମ ଗପରେ ଶ୍ଳେଷ କାଇଁ ? ବ୍ୟଙ୍ଗ କାଇଁ ? ସେ ଦୁଇଟି ବିଭାବ ବିନା ଗପ ଯେ ସବୁ ଫିକା ଫିକା । ଅନେକ ତ ଲେଖିଲଣି । ଏବେ କିଛି ପରୀକ୍ଷା ନିରୀକ୍ଷା କର । ପାରମ୍ପାରିକ ରୀତିରେ କାହାଣୀ କହିବା ପରିଧିରୁ ବାହାରି ଆସ । ଯତ୍ନବାନ୍ ହୁଅ ଅଲଗା କିଛି ଲେଖିବାକୁ ।

- ତୁ ଯେମିତି କହୁଚୁ, ମତେ ସେମିତି ଗପ ଲେଖିଆସିବନି । ତା' ଛଡ଼ା ପ୍ରତ୍ୟେକ ଲେଖକର ଗପ କହିବାର ଏକ ନିର୍ଦ୍ଦିଷ୍ଟ ଶୈଳୀ ଅଛି । ମୁଁ ଲେଖେ ମୋ ଢାଞ୍ଚାରେ ।

- ତମକୁ ଠିକ୍ ଲେଖି ଆସିବ ମାମା । ମୂଳକଥା ତମେ ଗୋଟିଏ କିସମ୍‌ର ଲେଖା ଲେଖି ଲେଖି ନୂଆ କିଛି କରିବାପାଇଁ ସାହସ କରୁନ । ଭୟ କରୁଚ ହାଲ୍‌କାଫୁଲ୍‌କା କିଛି ଲେଖିବା ପାଇଁ । ଥରଟେ ଅନ୍ତତଃ ତମ ପୁରୁଣା ଷ୍ଟାଇଲ୍ ବାଦ୍ ଦେଇ ମଉଜିଆ, ଖୁସ୍‌ମିଜାସିଆ ଗପଟିଏ ଲେଖ । ବେଶ୍ ମଜାଳିଆ ଗପଟିଏ । ପାଠକ ସହିତ ସାମାନ୍ୟ ରସିକତା କର । କିଛିଟା ଅତର୍କିତ ବିସ୍ମୟର ସମ୍ମୁଖୀନ ହବାକୁ ଦିଅ ତାକୁ । ପାଠକ ଟିକିଏ କନ୍‌ଫିଉଜ୍‌ଡ୍ ହେଉ । ଟିକିଏ ବାଉଳା ହେଉ ।

ମୁଁ କହିଲି - ସେ ଭଳି ଗପ ଲେଖିଲେ ମୋର ପ୍ରିୟପାଠକମାନେ ମୋତେ ସଂପୂର୍ଣ୍ଣରୂପେ ଅଗ୍ରାହ୍ୟ କରିବେ ।

ମୋ' କଥା ଶୁଣି ବବି ହସିଲା । କହିଲା -ଠିକ୍ ଅଛି । ତମ ଗପ ଅନ୍ୟ କେହି ପାଠକ ପଢନ୍ତୁ ବା ନପଢ଼ନ୍ତୁ, ମୁଁ ନିଶ୍ଚୟ ପଢ଼ିବି । ତମେ ନୂଆ ଧରଣର କିଛି ଗୋଟିଏ ଲେଖିବାକୁ ଚେଷ୍ଟା କରତ ! ଗପଟି ଲେଖି ପଠେଇଦେବ ମୋ ପାଖକୁ । ମୋର ମତାମତ ମୁଁ ତମକୁ ଜଣେଇଦେବି ଇ-ମେଲ୍‌ରେ ।

ବବିର ସେଇ ଅନୁରୋଧରେ ଏବଂ ଅଲଗା କିଛି ଲେଖିବା ପ୍ରୟାସରେ ଆଜିର ଏଇ ଗପଲେଖା ।

ଗପଟି ଏଇଭଳି -

ମୁଁ ଯଦି ପ୍ରାପ୍ତବୟସ୍କାର ମହିଳାଟିଏ ନ ହେଇ, ସପ୍ତଦଶୀ କିଶୋରୀକନ୍ୟାଟିଏ ହେଇଥାଆନ୍ତି ତେବେ ମୁଁ ଟ୍ରେନ୍‌ରେ ଚଢ଼ିବା ପରଠାରୁ ଭଦ୍ରବ୍ୟକ୍ତି ଯେଉଁଭଳି ଭାବରେ ମତେ ପୁନଃପୁନଃ ନିରୀକ୍ଷଣ କରିବାରେ ଲାଗିଥିଲେ, ତହିଁରେ ମୁଁ ନିଶ୍ଚିତଭାବରେ ଅସୌଜନ୍ୟ ଆବିଷ୍କାର କରିଥାଆନ୍ତି । କିନ୍ତୁ ମୁଁ ଯେ ପୌତ୍ରପୌତ୍ରୀ ନେଇ ଘରସଂସାର କରୁଥିବା ଏକ ପରିଣତ ବୟସର ଗୃହିଣୀ ତାହା ମୋ ମୁହଁର କୁଞ୍ଚିତ ମାଂସପେଶୀମାନଙ୍କରେ ସ୍ପଷ୍ଟ ପ୍ରତିବିମ୍ବିତ ହେଉଥିଲା । ଏବଂ ଟ୍ରେନ୍‌ରେ ମୋର ସହଯାତ୍ରୀ ଥିବା ମୋ ସ୍ୱାମୀ ତାଙ୍କର ଅଭିଭାବକ ସୁଲଭ ବାର୍ତ୍ତାଳାପ ତଥା ନିର୍ଦ୍ଦେଶନାରେ ସ୍ୱ ସ୍ୱାମୀତ୍ୱକୁ ବାରମ୍ବାର ମୋ ଉପରେ ଜାହିର୍ କରି ଲାଗିଥିଲେ । ଏତାଦୃଶ ପରିସ୍ଥିତିରେ ଭଦ୍ରବ୍ୟକ୍ତିଙ୍କର ତୀର୍ଯ୍ୟକ୍ ଚୋରା ଚାହାଣୀରେ ଯେ କୌଣସିପ୍ରକାର ଆପତ୍ତିଜନକ ଦୁରଭିସନ୍ଧି ଥାଇପାରେ, ତାହା ଭାବିବାକୁ ମୁଁ କୁଣ୍ଠାବୋଧ କରିଥିଲି ।

ଯାଉଥିଲି ଭୁବନେଶ୍ୱରରୁ ଦିଲ୍ଲୀ ।

ଭୁବନେଶ୍ୱର ଷ୍ଟେସନ୍‌ରେ ଟ୍ରେନ୍‌ରେ ଚଢ଼ି ଦେଖେ, ଏ.ସି.କମ୍ପାର୍ଟମେଣ୍ଟର ଗୋଟିଏ ପଟରେ ଥିବା ଉପର ଓ ତଳବାର୍ଥ ଆମକୁ ମିଳିଛି । ଅପରପାର୍ଶ୍ୱର ଉପରବାର୍ଥଟି ଫାଙ୍କା । ତଳ ବାର୍ଥରେ ଅର୍ଦ୍ଧଶାୟିତ ଭଙ୍ଗୀରେ ଆରାମ କରୁଥିବା ଜଣେ ମଧ୍ୟବୟସ୍କ ଭଦ୍ରଲୋକ ।

ଭଦ୍ରଲୋକ ନିଶ୍ଚିତରୂପେ ମୋ' ଠାରୁ ବୟସରେ ସାନ । ଆଖିରେ ଚଉଡ଼ା ବାଦାମୀ ଫ୍ରେମ୍‌ର ଚଷମା । କାନଲତି ପାଖରେ ଗୁଚ୍ଛ ଗୁଚ୍ଛ କେଶ ଧଳାହେବାକୁ ଆରମ୍ଭ କରିଛି । ଏବଂ ଆଶ୍ଚର୍ଯ୍ୟକଥା, ମୁଁ କଂପାର୍ଟମେଣ୍ଟରେ ପ୍ରବେଶ କରିବା ମୁହୂର୍ତ୍ତରୁ ଇ ଚଷମା ଆଢୁଆଳରେ ଏବଂ ଆଡ଼ ଆଖିରେ ଭଦ୍ରବ୍ୟକ୍ତି ଜଣକ ମତେ ବାରମ୍ବାର ଚାହିଁ ଲାଗିଥିବାର ମୁଁ ଲକ୍ଷ୍ୟ କଲି ।

ପ୍ରାରମ୍ଭିକ କେତୋଟି ମିନିଟ୍ ଜିନିଷପତ୍ର ସଜାଡ଼ି ରଖିବାରେ କଟିଗଲା । ଟ୍ରେନ୍‌ଟି ଥିଲା ରାତି ନଅଟାରେ । ଘରୁ ରାତ୍ରିଭୋଜନ କରିଯାଇଥିଲୁ । ଦୀର୍ଘଦିନ ପାଇଁ ଘରଛାଡ଼ି ବାହାରକୁ ଯାଉଥିବାରୁ ସକାଳୁ ପତିପତ୍ନୀ ଦୁହେଁ ବେଶ୍ କାର୍ଯ୍ୟବ୍ୟସ୍ତ ଥିଲୁ । ବିନୟ କ୍ଳାନ୍ତ ହୋଇ ପଡ଼ିଥିଲେ ଏବଂ ଟ୍ରେନ୍ ଛାଡ଼ିବାର କିଛି ସମୟ ପରେ ଉପରବାର୍ଥକୁ ଉଠିଯାଇ ସଫେଦ ଚାଦରଟି ଘୋଡ଼ି ହୋଇ ଏବଂ ବାଡ଼ ଆଡ଼କୁ ମୁହଁ କରି ଅଚିରେ ଗଭୀର ନିଦ୍ରାମଗ୍ନ ହେଲେ ।

ମତେ ଏମ୍ତିରେ ରାତିରେ ନିଦ ହୁଏନି । ତହିଁରେ ପୁଣି ଟ୍ରେନ୍ ଯାତ୍ରା । ବାଧ ହୋଇ ସମୟ କାଟିବାପାଇଁ ସାଥିରେ ନେଇଥିବା ପତ୍ରିକାଟି କାଢ଼ି ପଢ଼ିଲାଗିଲି ।

କିଛି ସମୟ ପରେ ହଠାତ୍ ମନେହେଲା ଉଜ୍ଜ୍ୱଳ ଆଲୋକଟି ଜଳାଇ ରଖିବା ହେତୁ ହୁଏତ ଅପରପାର୍ଶ୍ୱରେ ଶାୟିତ ଭଦ୍ରବ୍ୟକ୍ତିଙ୍କ ନିଦ୍ରାରେ ବ୍ୟାଘାତ ଘଟୁଥିବ । ମୁହଁ ବୁଲାଇ ତାଙ୍କୁ ଇଂରାଜୀରେ କହିଲି - କ୍ଷମା କରିବେ । ମୁଁ ଲାଇଟ୍ ଜଳାଇ ବହି ପଢ଼ିଲେ ଆପଣଙ୍କର କିଛି ଅସୁବିଧା ହେଉନି ତ ?

ଭଦ୍ରବ୍ୟକ୍ତି ମତେ ବିସ୍ମିତ କରି ଖାଣ୍ଟି ଓଡ଼ିଆରେ କହିଲେ - ଆଦୌ ନୁହେଁ, ମୁଁ ତ ଏବେ ଶୋଉନି । ଅତିଶୀଘ୍ର ମୋ ଗନ୍ତବ୍ୟସ୍ଥାନ ବି ଆସିଯିବ । ଆପଣ ଆରାମ୍‌ରେ ବହି ପଢ଼ନ୍ତୁ । ମୋର କୌଣସି ଅସୁବିଧା ହେଉନି । ବୁଝିପାରିଲି - ଟ୍ରେନ୍‌ରେ ବିନୟଙ୍କର ଓ ମୋ ଭିତରେ ହେଉଥିବା ପାରସ୍ପରିକ ବାର୍ତ୍ତାଳାପରୁ ଭଦ୍ରବ୍ୟକ୍ତି ଜାଣିପାରିଛନ୍ତି ଯେ ଆମେ ଓଡ଼ିଆ ଏବଂ ନିଜେ ଓଡ଼ିଆ ହୋଇଥିବାରୁ ସ୍ୱାଭାବିକ୍ ଭାବରେ ମାତୃଭାଷାରେ ଇ ଜବାବ୍ ଦେଇଛନ୍ତି ।

ମୁଁ ନୀରବରେ ବହି ପଢ଼ିବାକୁ ଲାଗିଲି । ପ୍ରାୟ ପାଞ୍ଚମିନିଟ୍ ପରେ ଭଦ୍ରବ୍ୟକ୍ତି ଗଳାଖଙ୍କାରି କିଞ୍ଚିତ୍ କୁଣ୍ଠାର ସହିତ ମତେ ପଚାରିଲେ - କ୍ଷମା କରିବେ । ଆପଣ ଯଦି କିଛି ମନେ ନ କରିବେ, ଆପଣଙ୍କୁ ଗୋଟିଏ ପ୍ରଶ୍ନ ପଚାରି ପାରେ କି ?

ମୁଁ ଆଖିରେ ପ୍ରଶ୍ନବାଚୀ ନେଇ ଭଦ୍ରଲୋକଙ୍କୁ ମୁହଁ ଘୂରାଇ ଚାହିଁଲି ।

ଭଦ୍ରବ୍ୟକ୍ତି ଦୋ ଦୋ ପାଞ୍ଚ ହୋଇ ଈଷତ୍ ଦ୍ୱିଧାମିଶ୍ରିତ ଗଳାରେ କହିଲେ - ମାଡ଼ାମ୍, ଆପଣ କଅଣ କାନନ ମିଶ୍ର ?

ମୁଁ ହସିଲି । କହିଲି, ମୁଁ ଅବଶ୍ୟ କାନନ ମିଶ୍ର । କିନ୍ତୁ ମୋ'ର ଯେତେଦୂର ମନେପଡୁଛି ଆପଣଙ୍କ ସାଥିରେ ମୋ'ର ଯା ପୂର୍ବରୁ କେବେ ବି ଦେଖା ହୋଇନି । ଆପଣ ମତେ ଚିହ୍ନିଲେ କେମିତି ?

- ଆପଣଙ୍କର ଅନେକ ଲେଖା ମୁଁ ପଢ଼ିଛି । ଦୁଇ, ତିନୋଟି ବହି ମଧ୍ୟ । ଆପଣଙ୍କର ଗୋଟିଏ ବହିର ଜାକେଟ୍‌ରେ ଆପଣଙ୍କର ଫଟ ଦେଖିଥିଲି । ଆପଣଙ୍କ ମୁହଁ ସହିତ ସେ ଫଟର ସାମଞ୍ଜସ୍ୟ ଦେଖି ଅନ୍ଦାଜ କରି ପଚାରିଲି ।

ଏତେବେଳକୁ, ଭଦ୍ରବ୍ୟକ୍ତି ମୋ ଆଡ଼େ ତୀର୍ଯ୍ୟକ୍ ନଜର୍ ଢ଼ାଳି ମତେ ପୁଙ୍ଖାନୁପୁଙ୍ଖ ଭାବରେ ନିରୀକ୍ଷଣ କରୁଥିବାର ରହସ୍ୟଟି ସ୍ପଷ୍ଟ ହୋଇଉଠିଲା ମୋ' ପାଇଁ ।

ଭଦ୍ରବ୍ୟକ୍ତି ପୁନର୍ବାର କହିଲେ - ମୋ' ନାଁ ଅନିରୁଦ୍ଧ ମହାପାତ୍ର । ପୁରୀରେ ବ୍ୟବସାୟ କରେ । ମୋର ଗୋଟିଏ ପ୍ରେସ୍ ଅଛି । ତତ୍‌ସଂଲଗ୍ନ ବହି ଦୋକାନଟିଏ ମଧ୍ୟ । ସ୍କୁଲ୍, କଲେଜ ବହି ବିକ୍ରିକରେ । ତା ସହିତ କିଛି କିଛି ଗଳ୍ପ ଉପନ୍ୟାସ ମଧ୍ୟ । ବହିପଢ଼ିବା ମୋର ନିଶା । ଆପଣଙ୍କ ଲେଖା ବହୁତ ଭଲ ଲାଗେ ମତେ । ଆମେ କେତେଜଣ ସାହିତ୍ୟପ୍ରେମୀ ମିଶି ଗୋଟିଏ ପାଠଚକ୍ର ଗଢ଼ିଛୁ । ପ୍ରତିମାସରେ ଥରଟେ ସଭା କରୁ । ମୋ ଘରେ ଏକାଠି ହେଉ । ଚା' ଜଳପାନ ସହିତ ସାହିତ୍ୟ ଆଲୋଚନା ହୁଏ । ଆପଣଙ୍କ ଲେଖା ସଂପର୍କରେ ମଧ୍ୟ କେତେଥର ଆଲୋଚନା ହୋଇଛି ।

ଆପଣଙ୍କ କଥାଟି ଶୁଣି ପ୍ରୀତ ହେଲି । ମୁଁ କିନ୍ତୁ ନିଜକୁ ଏକ ନଗଣ୍ୟ ଲେଖିକା ବୋଲି ମନେକରେ । ମୃଦୁହସି ମୁଁ ଉତ୍ତର ଦେଲି ।

- ଇଏ ତ ଆପଣଙ୍କର ବିନମ୍ରତାର କଥା । ଅନିରୁଦ୍ଧ ମନ୍ତବ୍ୟ କଲେ । ତା' ପରେ କିଛି ସମୟ ଅଟକି ପଚାରିଲେ, ଉପର ବାର୍ଥରେ ଆପଣଙ୍କର ସ୍ୱାମୀ ନିଶ୍ଚୟ ।

- ହଁ, ଶୋଇପଡ଼ିଲେଣି । ନ ହେଲେ ଆପଣଙ୍କ ସହିତ ଆଳାପ କରେଇ ଦେଇଥାଆନ୍ତି ।

- ଥାଉ, ଥାଉ । ତାଙ୍କୁ ଉଠାଇବା ଦରକାର ନାହିଁ । ସିଏ ବରଂ ବିଶ୍ରାମ କରନ୍ତୁ । ଏବେ କେମିତି ଅଛି ଆପଣଙ୍କ ସ୍ୱାମୀଙ୍କ ସ୍ୱାସ୍ଥ୍ୟ । ଗଲାବର୍ଷ ତାଙ୍କର ହାର୍ଟ ଅପରେସନ ହୋଇଥିଲା ନା !

- ହାର୍ଟ ଅପରେସନ ? ଏ ଉଦ୍‌ଭଟ ଖବର କେଉଁଠୁ ପାଇଲେ ଆପଣ ? ଶୁଣି ନିଶ୍ଚୟ ଖୁସି ହେବେ ଯେ ମୋ ସ୍ୱାମୀଙ୍କର ହୃଦୟଜନିତ ଗଣ୍ଡଗୋଳ କେବେ ନ ଥିଲା ବା ନାହିଁ । ତାଙ୍କ ହୃଦୟଟି ଏବେ ବି ବେଶ୍ ଶକ୍ତସମର୍ଥ ।

ଅନିରୁଦ୍ଧ ସାମାନ୍ୟ ଥତମତ ଖାଇ କହିଲେ - ବାଃ ! ଆପଣ ଇ ତ ଗୋଟିଏ ଗପରେ ଲେଖିଥିଲେ ବିଗତବର୍ଷ କଳିଙ୍ଗ ହସ୍‌ପିଟାଲ୍‌ରେ ତାଙ୍କର ଅସ୍ତ୍ରୋପଚାର ହୋଇଥିଲା ବୋଲି ।

- ଆପଣ କେବଳ ମୋ ଲେଖା ଗପଟିଏ ପଢ଼ି ଏଇକଥା ବିଶ୍ୱାସ କରି ବସିଲେ ? ଗପ ତ ଲେଖକର କଳ୍ପନା ପ୍ରସୂତ ଉପାଖ୍ୟାନଟିଏ ମାତ୍ର । ଭାଷା ଓ ଭାବର କାରୁକାର୍ଯ୍ୟରେ ବନ୍ଧା । ତା' ଭିତରେ ଆପଣ ମୋ' ବ୍ୟକ୍ତିଗତ ଜୀବନର ସତ୍ୟକଥନ ଆବିଷ୍କାର କରିନେଲେ କାହିଁକି ? ଅବଶ୍ୟ ସ୍ଥଳବିଶେଷରେ କୌଣସି ଏକ ଗପର ଅଙ୍କୁରୋଦ୍‌ଗମ ଏକ ସତ୍ୟ ଘଟଣାରୁ ଉତ୍ପନ୍ନ ହେବାର ସମ୍ଭାବନା ଅଛି ନିଶ୍ଚୟ । କିନ୍ତୁ ତା ବୋଲି ସମଗ୍ର ଗପଟି ଯେ ନିରାଟ ଭାବରେ ସତ ହେବ, ଏ କଥା ଭାବିବାର କୌଣସି ଯଥାଯଥ କାରଣ ନାହିଁ । ମୋ' କଥା ଶୁଣି ବିସ୍ମୟରେ ହତବାକ୍ ହେଇ ଅପ୍ରସ୍ତୁତ ଭଙ୍ଗୀରେ କିଛି ସମୟ ବସିରହିଲେ ଅନିରୁଦ୍ଧ । ତା ପରେ କହିଲେ - ଆପଣଙ୍କର ଏଇ ମନ୍ତବ୍ୟ, ଏବଂ ଆପଣଙ୍କର ଲେଖା - ଉଭୟ ଭିତରେ କିନ୍ତୁ ବିରୋଧାଭାସ ରହିଯାଉଛି । ଆପଣଙ୍କ ଲେଖା ପଢ଼ିଲେ ଜଣାପଡ଼େ, ସିଏ ସବୁ ଯେମିତି ସତକଥା, ଆପଣଙ୍କର ନିଜସ୍ୱ ଅନୁଭୂତିର କଥା ।

ମୁଁ କହିଲି - ମୁଁ ମୋ ଗପଗୁଡ଼ିକ ପ୍ରଥମପୁରୁଷରେ ଲେଖେ ତ ! ସେଇଥିପାଇଁ ବୋଧହୁଏ ଏଭଳି ଏକ ଧାରଣା ଆପଣଙ୍କ ମନରେ ଦାନା ବାନ୍ଧିଯାଇଛି ।

- କିନ୍ତୁ ଆପଣଙ୍କର ସବୁ ଗପରେ ଯେ ଆପଣ ନିଜେ ଗୋଟିଏ ଚରିତ୍ର । ଏପରିକି ସେ ଚରିତ୍ରପାଇଁ ଆପଣ ନିଜ ନାଁଟି ଇ ବ୍ୟବହାର କରନ୍ତି ।

- ଦେଖନ୍ତୁ ! ସେ ଚରିତ୍ରଟିର ନାଁ ମୁଁ 'କିରଣ' କିମ୍ୱା 'କୁମୁଦ' ଦେଇପାରିଥାଆନ୍ତି । ତାହା ନ କରି ମୁଁ 'କାନନ' ନାଁଟି ବ୍ୟବହାର କରିଛି ମାତ୍ର । ଆପଣ ନିଶ୍ଚୟ ସ୍ୱୀକାର କରିବେ ଯେ ସେତିକି ସ୍ୱାଧୀନତା ମୋର ଅଛି ।

ଅନିରୁଦ୍ଧ ଏଥରକ ସଂଶୟ ମିଶ୍ରିତ ଦୃଷ୍ଟିରେ ଚାହିଁ ମତେ ପଚାରିଲେ - ମାଡ଼ାମ୍ ଆପଣ ସତ କୁହନ୍ତୁତ ! ଆପଣ ଇ ଲେଖିକା କାନନ ମିଶ୍ର ?

- ଅବଶ୍ୟ ମୁଁ କାନନ ମିଶ୍ର । ଆପଣ ଏ ସଂପର୍କରେ ନିଃସନ୍ଦେହ ରହନ୍ତୁ ।

ଅନିରୁଦ୍ଧ ଯା ପରେ ଅନେକଟା ସ୍ୱଗତୋକ୍ତି କଲାପରି କହିଲେ - ଆଶ୍ଚର୍ଯ୍ୟ ! ଏ ପର୍ଯ୍ୟନ୍ତ ଆପଣଙ୍କ ଲେଖାରେ ମୁଁ ଆପଣଙ୍କ ଛବି ଦେଖିଆସିଥିଲି । ସ୍ୱାଦ ନେଇଥିଲି ଆପଣଙ୍କ ଜୀବନର ସତ୍ୟକଥନର । ଭାବୁଥିଲି ଆପଣ ଲେଖନ୍ତି ଆପଣଙ୍କ ଅନୁଭୂତିର କଥା, ଆପଣଙ୍କର ପରିବାରର କଥା, ଚଲାବାଟରେ ଆପଣ ଭେଟିଥିବା ଚରିତ୍ରମାନଙ୍କ କଥା । କେତେ ବେଶୀ ବିଶ୍ୱସନୀୟ ମନେହୁଅନ୍ତି ସେ ସବୁ ଚରିତ୍ର ! ଅଥଚ ଏବେ ଆପଣଙ୍କ କଥା ଶୁଣି ମନେହେଉଛି ଏତେଦିନ ଧରି ମୁଁ ଏକ ଭ୍ରାନ୍ତଧାରଣା ପୋଷି ଆସିଥିଲି ମନରେ । ଆପଣଙ୍କ କଥା ଅନୁସାରେ ଆପଣ କେବଳ ଗପଟିଏ ଇ କହନ୍ତି । ନିଛକ୍ ଗପଟିଏ । ଅଚାନକ୍ ମୋ ସାମ୍‌ନାକୁ ଆସିଥିବା ଏଇ ଅତର୍କିତ ବିସ୍ମୟରେ ବିଶ୍ୱାସ କରିବାକୁ ମୁଁ ଏବେ ବି ଅକ୍ଷମ । ବସ୍ତୁତଃ, ଆପଣଙ୍କ ଲେଖା ସଂପର୍କରେ ମୁଁ ଏବେ ପୂରାପୂରି ବିଭ୍ରାନ୍ତ ।

ମୁଁ କହିଲି - ଆପଣ ଏବେ ଏବେ କରିଥିବା ଗୋଟିଏ ମନ୍ତବ୍ୟ ପାଇଁ ମୁଁ କିନ୍ତୁ ଆପଣଙ୍କ ପାଖରେ କୃତଜ୍ଞ । ମୁଁ ଜାଣେ ମୁଁ ନିହାତି ଆପାରଗ ଲେଖିକାଟିଏ । ତେବେ ବି ମୋର କଳ୍ପନାପ୍ରସୂତ ଚରିତ୍ରମାନେ ଯଦି ଆପଣଙ୍କ ବିଶ୍ୱସନୀୟ ମନେହେଉଛନ୍ତି, ସତରେ ମନେହେଉଛନ୍ତି ଆପଣାର, ତା' ଠାରୁ ବଡ଼ ପ୍ରାପ୍ତି ବୋଧହୁଏ ମୋ ଲେଖିକା ଜୀବନରେ ଆଉ କିଛି ହେଇନପାରେ ।

ମୋ' କଥାକୁ ମଝିରେ ବ୍ୟାଘାତ କରି ହଠାତ୍ ଟ୍ରେନ୍ ହ୍ୱିସ୍‌ଲ୍ ମାରିଲା । ବାଲେଶ୍ୱର ଷ୍ଟେସନ ପାଖ ହେଇ ଆସୁଥିଲା । ଅନିରୁଦ୍ଧ ଜିନିଷପତ୍ର ସଜାଡୁ ସଜାଡୁ କହିଲେ - ମୁଁ ଏଇଠି ଓହ୍ଲେଇଯିବି । ଟ୍ରେନ୍ ଅଟକିଲା ପରେ, ମତେ ସଶ୍ରଦ୍ଧ ନମସ୍କାର କରି ଅନିରୁଦ୍ଧ ଓହ୍ଲାଇଗଲେ । ଏବଂ ଯିବାପୂର୍ବରୁ ଦୋଷୀ ଦୋଷୀ ଭାବରେ ବିନୟଙ୍କ ସ୍ୱାସ୍ଥ୍ୟ ସଂପର୍କରେ ସିଏ କରିଥିବା ତଥାକଥିତ ଭ୍ରମାତ୍ମକ ମନ୍ତବ୍ୟଟି ପାଇଁ କ୍ଷମାପ୍ରାର୍ଥନା ମଧ୍ୟ କରିଗଲେ ।

ଅନିରୁଦ୍ଧ ଚାଲିଯିବାପରେ, ବିନୟ କଡ଼ବୁଲାଇ ମତେ ଚାହିଁ ହସି ହସି କହିଲେ - ତୁଚ୍ଛାଟାରେ ଭଦ୍ରଲୋକଙ୍କୁ ଏତେ ସବୁ ଗଣ୍ଡଗୋଳିଆ କଥା କହୁଥିଲୁ କାହିଁକି ? ତୋର 'ପୁତ୍ର' ଗପଟିରେ ତୁ ତ ନିଜେଇ ମୋ ହାର୍ଟ ଅପରେସନ କଥା ଲେଖିଚୁ । ଲେଖିଚୁ ସବୁ ସତକଥା । ଅଥଚ ଭଦ୍ରଲୋକଙ୍କୁ କହିଗଲୁ ସେ ସବୁ ବିବାକ୍ ମିଛ ।

ମୁଁ କହିଲି - ଓଃ ! ତମେ ତାହେଲେ ଶୋଇନ ?

- ଶୋଇବି କଅଣ ? ତମ ଦୁଇଜଣଙ୍କ କଥୋପକଥନ ଶୁଣି ବହୁତକଷ୍ଟରେ ମୁଁ ହସକୁ ରୋକିଛି । ତୁଚ୍ଛାଟାରେ ଭଦ୍ରଲୋକଙ୍କୁ ଅପ୍ରସ୍ତୁତ କଲୁ ।

- ଏ ମିଥ୍ୟାବାଦନ କିନ୍ତୁ କାହାରି କିଛି କ୍ଷତି କରୁନି । ତେଣୁ ମୋ ପାଇଁ ଦୋଷାବହ ନୁହେଁ ।

- ତେବେ ବି, ତୁଚ୍ଛାଟାରେ ମିଛ କହିଲୁ କାହିଁକି ?

- ବବି ପାଇଁ ଗପ ଲେଖିବା ପାଇଁ ।

- ବବି ପାଇଁ ଗପ ?

- ହଁ, ଏଲିମେଣ୍ଟ ଅଫ୍ ସରପ୍ରାଇଜ୍ ଓ ସେନ୍‌ସ୍ ଅଫ ହ୍ୟୁମର୍ ଥିବା ଗପ ।

- କଅଣ ସବୁ ଯାଡୁ ସ୍ୟାଡୁ ବକୁଚୁ ? ମୁଁ କିଛି ବି ବୁଝିପାରୁନି, ବିନୟ କହିଲେ । ମୁଁ କହିଲି - ଥାଉ । ତମେ ବୁଝିବା ଦରକାର ନାହିଁ । ସିଏ ଆମ ମା' ପୁଅଙ୍କ ଭିତରେ ସିକ୍ରେଟ୍ ।

ଅନିରୁଦ୍ଧଙ୍କ ସହିତ ମୋର ଏ ସାକ୍ଷାତ୍‌କାର ପ୍ରାୟ ଛ' ମାସ ତଳର ଘଟଣା । କେଇଦିନ ତଳେ ଖଣ୍ଡିଏ ଚିଠି ପାଇଛି ଅନିରୁଦ୍ଧଙ୍କଠାରୁ । ମୋର ସଦ୍ୟପ୍ରକାଶିତ

ଗୋଟଏ ଗପପଢ଼ି ଚିଠିଟି ଲେଖିଛନ୍ତି । ମୋ ଠିକଣାଟି ଗପତଳେ ଛପାହୋଇଥିଲା । ଲେଖିଛନ୍ତି - ଶୈଶବର ସ୍ମୃତିଚାରଣାକୁ ନେଇ ଏବେ ଏବେ ପ୍ରକାଶ ପାଇଥିବା ଆପଣଙ୍କ ଗପଟି ପଢ଼ିଲି । ଆମ ପାଠଚକ୍ରରେ ତାହାର ଆଲୋଚନା ମଧ୍ୟ ହେଲା । ଜଣେ ସଭ୍ୟ କହିଲେ, ନିଜ ପିଲାଦିନର ନିହାତି ଗୋଟିଏ ଅବାନ୍ତର ଘଟଣା - ପିଜୁଳି ଚୋରିକୁ ନେଇ ଉତ୍କୃଷ୍ଟ ଗପଟିଏ ଲେଖିଦେଇଛନ୍ତି ଆପଣ । ମୁଁ ଅବଶ୍ୟ ତାଙ୍କୁ ବୁଝେଇ ଦେଇଛି, ଇଏ ଆପଣଙ୍କ ନିଜ ଜୀବନର କାହାଣୀ ନୁହେଁ । ସତ୍ୟ ଉପରେ ଆଧାରିତ ବି ନୁହେଁ । ନିଛକ୍ ମନଗଢ଼ା କାହାଣୀଟିଏ ମାତ୍ର । ହୁଏତ ଆପଣଙ୍କ ପଡ଼ୋଶୀଙ୍କ ଘରେ ଆପଣଙ୍କ ବର୍ଣ୍ଣିତ ପିଜୁଳିଗଛଟିର ଅସ୍ତିତ୍ୱ ବି ନଥିଲା ।

କାହାଣୀଟି ଏଇ ପର୍ଯ୍ୟନ୍ତ ଲେଖି ବବି ପାଖକୁ ସପ୍ତାହକ ତଳେ ଫାକ୍ସ କରି ପଠେଇ ଦେଇଥିଲି । ବବି ଉତ୍ତର ଦେଇଥିଲା ଇ ମେଲ୍‌ରେ - ମାମା ! କାହାଣୀଟି ଚମତ୍କାର । ଯଥେଷ୍ଟ କୌତୂହଳ ସୃଷ୍ଟି କରୁଛି ମନରେ । ତୁମର କିଛି ପାଠକ, ତୁମେ ମିଛକଥା ଲେଖିଲେ ବି ତାକୁ ସତ ବୋଲି ଭାବି ସେଇ ମର୍ମରେ ତୁମକ ଚିଠି ଲେଖିଥିବାର ମୁଁ ଦେଖିଛି । ଏବେ ତୁମର ଆଉ କିଛି ପାଠକ, ତୁମେ ସତକଥା ଲେଖିଲେ ବି ତାକୁ ମିଛ ଓ ମନଗଢ଼ା ବୋଲି ଭାବିବେ । କି ମଜା କହତ !

ବବିପାଇଁ ଉଦ୍ଦିଷ୍ଟ ଏ ଗପଟିର ପରିସମାପ୍ତି ଏଇଠି ହିଁ କରିଥିଲି । କିନ୍ତୁ ଆଜି ସକାଳେ ବବିଠାରୁ ଆଉ ଗୋଟିଏ ଇ-ମେଲ୍ ପାଇଛି, ଯାହାର ପ୍ରାସଙ୍ଗିକତା ଏଇ କାହାଣୀ ସହିତ ରହିଛି । ତେଣୁ ସେ ଇ-ମେଲ୍‌ର ବକ୍ତବ୍ୟଟି ଏଠାରେ ଉପସ୍ଥାପନା କରିବାକୁ ସମୁଚିତ ମନେ କରୁଛି ।

ବବି ଲେଖିଛି - ମାମା ! ମୁଁ ତୁମକୁ କହିଥିଲି ତମ ପାଠକମାନଙ୍କୁ ବିଭ୍ରାନ୍ତ କରିବା ପାଇଁ । ମୋତେ ନୁହେଁ । ତମେ କିନ୍ତୁ ମୋତେ ହିଁ ବିଭ୍ରମରେ ପକେଇଦେଇଛ । କାଲି ସମୟ ପାଇ ତୁମ ଗପଟି ଆଉଥରେ ପଢୁଥିଲି । ଏ କାହାଣୀ ସତ ନା ମିଛ ? ତୁମେ ଦିଲ୍ଲୀ ଯିବା ବାଟରେ ସତରେ ତୁମର ଅନିରୁଦ୍ଧଙ୍କ ସାଥିରେ ଦେଖା ହୋଇଥିଲା ? ନା ଏ ଚରିତ୍ରଟି କେବଳ ତୁମର ମନଗଢ଼ା ? ମୁଁ ନିଜେ ବି ଏ ସଂପର୍କରେ କନ୍‌ଫିଉଜଡ୍ । ଶୀଘ୍ର ଉତ୍ତର ଦିଅ ।

ମୁଁ ବବିକୁ ଉତ୍ତର ଦେଇଦେଇଛି । ଲେଖିଦେଇଛି ମୁଁ ଦିଲ୍ଲୀ ଯାଇନଥିଲି ବୋଲି ।



# ଶତ୍ରୁ

ମୋର ଅଦୂରଭବିଷ୍ୟତରେ ହେବାକୁ ଯାଉଥିବା ସୁଦୀର୍ଘ ବିଦେଶଯାତ୍ରାଇ ଉଷାକୁ ଘରେ ଆଶ୍ରୟ ଦେବାର ଏକମାତ୍ର କାରଣ ଥିଲା । ଚାରିମାସ ପାଇଁ ପୁଅ ପାଖକୁ ବିନୟ ଓ ମୁଁ ଦୁହେଁ ଆମେରିକା ଯାଉଥିଲୁ ଏବଂ ଆମ ଅନୁପସ୍ଥିତିରେ ଘର ଜଗି ରହିବା ପାଇଁ ଲୋକଟିଏ ଜରୁରୀ ହେଇ ପଡ଼ିଥିଲା । ବହୁତ ବଡ଼ ପରିବାର ରଖିବା ପାଇଁ ବିନୟ ଥିଲେ ଅନିଚ୍ଛୁକ । ଉଷା ଥିଲା ଏକୁଟିଆ ମଣିଷ - ପରିବାର ବିହୀନ ଏବଂ ତାର ଏଇ ଏକାକୀତ୍ୱ ଆମର ଆବଶ୍ୟକତାକୁ ବେଶ୍ ସୁହାଇ ଯାଇଥିଲା ।

ଆମ ତଳ ଘର ଭଡ଼ାଟିଆଙ୍କର ପରିଚାରିକାଠାରୁ ଆମେ ଲୋକ ଖୋଜିବା ଖବରଟି ସଂପର୍କରେ ଉଷା ସୂଚନା ପାଇଥିଲା ଓ ଦିନେ ଆସି ଦେଖା କରିଥିଲା ଆମ ସହିତ । ଉଉର ତିରିଶର ଆଦିବାସୀ ସ୍ତ୍ରୀ ଲୋକଟିଏ । କୁଞ୍ଚକରି ଛାପାଶାଢ଼ୀ ପିନ୍ଧା, ମୁଣ୍ଡରେ ଫିତାବନ୍ଧା ବେଣୀ । କଥାବାର୍ତ୍ତାରେ ସପ୍ରତିଭ ।

- ତୋ'ର ଆଉ ସବୁ କିଏ କିଏ ଅଛନ୍ତି ? ପଚାରିଲି ।

- ଆଉ କେହି ନାହାନ୍ତି । ମୋ ସ୍ୱାମୀ ମୋତେ ଛାଡ଼ି ଦେଇଛି । ମୁଁ ଏକୁଟିଆ । ମନ୍ଦିର ପାଖରେ ମୋ ଭାଇ ଭାଉଜ ଓ ମା' ରହନ୍ତି । ଏବେ ତାଙ୍କରି ପାଖରେ ଅଛି ।

ଉଷା ସହିତ କଥା କହି ଜାଣିଲି - ପାଖ ଆପାର୍ଟମେଣ୍ଟରେ ଚାରୋଟି ଅଣଓଡ଼ିଆ ଘରେ ସିଏ ଠିକାରେ ଭାତରନ୍ଧା କାମ କରେ । ଦୁଇଓଳି ନିର୍ଦ୍ଦିଷ୍ଟ ସମୟରେ ଯାଇ ଭାତ, ତରକାରୀ କିମ୍ବା ରୁଟି, ତରକାରୀ କରି ରଖି ଦେଇ ଆସେ । ଗୃହମାଲିକ ତାଙ୍କ ସୁବିଧା ଅନୁଯାୟୀ ଖିଆପିଆ କରନ୍ତି । ଯାହା ରୋଜଗାର କରେ ସେଥିରେ ତାର ସୁବିଧାରେ ଗୁଜୁରାଣ ହେଇଯାଏ । ତେବେ ଭାଇ ଭାଉଜଙ୍କ ଉପରେ ବୋଝ ନହେଇ ସିଏ ସ୍ୱୟଂସଂପୂର୍ଣ୍ଣ ଭାବରେ ଅଲଗା ରହିବାକୁ ଚାହେଁ ଏବଂ ତାହା ହିଁ ତା'ର ମୋ ପାଖକୁ ଆସିବାର ମୁଖ୍ୟ କାରଣ ।

ଝିଅଟି ସହିତ ବାର୍ତ୍ତାଳାପ କରି ଖୁସି ହେଇଥିଲି । ଉପାର୍ଜନକ୍ଷମ ଓ ସ୍ୱାଧୀନଚେତା ଝିଅଟିଏ । ସିଧାସଳଖ ସ୍ପଷ୍ଟ କଥା । ଘର ଦେବାକୁ ରାଜି ହେଇ ଯାଇଥିଲି ତତ୍‌କ୍ଷଣାତ୍ ।

- ଠିକ୍ ଅଛି । ବାରିରେ ଥିବା ସର୍ଭାଣ୍ଟ୍ସ କ୍ୱାର୍ଟରଟି ଖାଲି ପଡ଼ିଛି । ତୁ ରହ ସେଠି । ଘର ଭଡ଼ା ଦେବା ଦରକାର ନାହିଁ । ଆମ ଅନୁପସ୍ଥିତିରେ ଘର ଜଗି ରହିବୁ ଓ ବାରିବଗିଚା ଦେଖାଶୁଣା କରିବୁ । ଦେଖୁଛୁ ତ ମୋ'ର ବହୁତ ଫୁଲଗାମ୍‌ଲା । ପ୍ରତ୍ୟେକଦିନ ଫୁଲ କୁଣ୍ଡ, ଲନ୍ ଓ ବଗିଚାରେ ପାଣିଦେବୁ ଓ ଶୁଖିଲା ପତ୍ର ଇତ୍ୟାଦି

ଓଳାଓଳି କରିବୁ । ଆମେରିକାରୁ ଆସି ଯେମିତି ନଦେଖେ ଘରବାରି ଅପରିଷ୍କାର ହୋଇକି ପଡ଼ିଛି ।

ଘର ବଦଳରେ ଏତକ କାମ କରିବାକୁ ଉଷା ରାଜି ହୋଇଥିଲା ଓ ତା' ପରଦିନ ବାରିର ଆଉଟହାଉସ୍ ବଖରାଟିରେ ଆସି ଆସ୍ଥାନ ଜମେଇଥିଲା । ଝିଅଟି ପରିଷ୍କାର ପରିଚ୍ଛନ୍ନ ଥିବାରୁ ଘରେ ମଧ୍ୟ କେବେ କିଛି କାମ ପଡିଲେ ସାହାଯ୍ୟ କରିଦେବା ପାଇଁ ତାକୁ ଡାକୁଥିଲି ।

ରହିବାର ପ୍ରାୟ ଆଠଦଶ ଦିନ ପରେ ।

ଦିନେ ହଠାତ୍ ଉଷା ଆସି ପଚାରିଲା – ମା' ତମେ ମହିଳା କମିଶନ୍‌ର କାହାକୁ ଚିହ୍ନିଚ ?

ତୁ' ତ ଜାଣୁ, ମୁଁ ସାରା ଜୀବନ ଓଡ଼ିଶା ବାହାରେ ଥିଲି, ଏଠି ବିଶେଷ କାହାରି ସହିତ ମୋର ଅନ୍ତରଂଗତା ନାହିଁ । ତେବେ ମହିଳା କମିଶନ ସହିତ ତୋ'ର କାମ କଅଣ ? ପଚାରିଲି ।

ମୋ' ସ୍ୱାମୀ ନାଁରେ ମୁଁ ସେଠି ଗୋଟେ କେଶ୍ କରିଚି ତ ! କାଇଁ ଏପର୍ଯ୍ୟନ୍ତ ସେ କେଶ୍‌ର କିଛି ଫଇସଲା ହେଲା ନାହିଁ । ତେବେ ଦି'ଥର କମିଶନ ପାଖରେ ହାଜିରା ଦେବା ପାଇଁ ମୋ ସ୍ୱାମୀ ପାଖକୁ ଚିଠି ଯାଇଥିଲା । ମିଛରେ ଦେହ ଖରାପ ବୋଲି କହି ସିଏ ହାଜିରା ଦେଲାନି । ତାପରେ ପ୍ରାୟ ଚାରି ପାଞ୍ଚ ମାସ ହୋଇଗଲାଣି କମିଶନ୍‌ଠାରୁ ଆଉ କିଛି ଚିଠି ପାଇନି । ତମେ ଯଦି ଟିକିଏ କମିଶନକୁ ଫୋନ୍ କରି ଖବରାଖବର କରନ୍ତ ମୋ'ର ବଡ ଉପକାର ହୁଅନ୍ତା । ଉଷା ଉତ୍ତର ଦେଲା ।

ତୁ କମିଶନକୁ ଯେଉଁ କାଗଜ ଲେଖିକି ଦେଇଥିଲୁ ତା'ର ନକଲ ଅଛି ତୋ ପାଖରେ ?

– ଅଛି ମା ! ମୁଁ ତ ବେଶି ପାଠ ପଢ଼ିନି । ଜଣେ ଓକିଲଙ୍କ ଘରେ କାମ କରୁଛି ବର୍ଷେ ହେଲା । ମୋ କଥା ସବୁ ଶୁଣି ସିଏ ଲେଖିଦେଇଥିଲେ ଚିଠିଟି । ଦସ୍ତଖତ୍ କରି ପଠେଇଥିଲି ମୁଁ ।

– ଠିକ୍ ଅଛି । ସେ କେଶ୍ ସମ୍ବନ୍ଧୀୟ ସମସ୍ତ କାଗଜପତ୍ର ଆଣିକି ମତେ ଦେଖେଇବୁ । କାହାକୁ କିଛି ଅନୁରୋଧ କରିବା ପୂର୍ବରୁ ଘଟଣାଟି କଅଣ ମୁଁ ନିଜେ ବି ତ ଜାଣିବା ଦରକାର । ମୁଁ କହିଲି ଏବଂ ଉଷା ତା'ର କେଶ୍ ସମ୍ବନ୍ଧୀୟ ଫାଇଲଟି ଆଣି ଅଚିରେ ମୋ ପଢ଼ା ଟେବୁଲ୍ ଉପରେ ରଖିଯାଇଥିଲା । ଫାଇଲଟି ପଢ଼ିଥିଲି ଏବଂ ସଂଶୟ ଦୂର କରିବା ପାଇଁ ଉଷାକୁ ମଧ୍ୟ କିଛି କିଛି ପ୍ରଶ୍ନ ପଚାରିଥିଲି । ଉଷାର କାହାଣୀଟି ସଂକ୍ଷେପରେ ଥିଲା ଏଇଭଳି ।

ଉଷାର ଜନ୍ମ ଫୁଲବାଣୀ ଜିଲ୍ଲାର ଏକ ପାହାଡ଼ୀ ଗାଁରେ । ଢ଼େଉଢ଼େଉକା ପାହାଡ଼ ଓ ଶ୍ୟାମଳ ବନାନୀ ଘେରା ନିର୍ଜନ ଜନପଦ, ପାଖରେ କୁଳୁକୁଳୁ ହୋଇ ବହିଯାଉଛି ଦୁଇଟି ପାହାଡ଼ୀ ବେଗବତୀ ନଦୀ । ଗାଁ ଚାରିପଟେ ସାହାଡା, କେନ୍ଦୁ ଓ ହରିଡାର ଘଞ୍ଚ ଜଙ୍ଗଲ । ତିରିଶ ଘର ଆଦିବାସୀଙ୍କର ବସତି ସେଠି ।

ମା' ସମ୍ବାରୀ ଓ ବାପ ନନ୍ଦରାଜାକୁ ନେଇ ଭାରି ସୁଖର ସଂସାର ଥିଲା ଉଷାର । ସେମାନେ ଦୁଇ ଭାଇ ଓ ଦୁଇ ଭଉଣୀ, ଉଷା ସର୍ବକନିଷ୍ଠ । ଉଷାକୁ ଛଅବର୍ଷ ବେଳେ ବାପ ନନ୍ଦରାଜାର ସର୍ପାଘାତରେ ମୃତ୍ୟୁ । ପିଲା ଚାରୋଟିକୁ ନେଇ ଭରସାହୀନ କ୍ଷୁଧାର୍ତ୍ତ ସମ୍ବାରୀ ପଳେଇ ଆସେ ଭୁବନେଶ୍ୱର । ମୂଲ ଲାଗି ପେଟ ପୋଷେ । ବଡ ପୁଅ ଯୋଡିକ ମଧ୍ୟ ଏଠି ସେଠି କାମ କରନ୍ତି । ସମୟ ଗଡିଯାଏ । ବର୍ତ୍ତମାନର ସଭିଏଁ ଉପାର୍ଜନ କ୍ଷମ । ଦୁଃଖର ପାହାଡ କେବଳ ଭାଙ୍ଗି ପଡ଼ିଛି ଉଷା ଉପରେ ।

ଉଷାର ବାହାଘର ହୋଇଥିଲା ସ୍ୱଜାତିର ଯୁବକ ଅର୍ଜୁନ ଡିଗଲ୍ ସହିତ । ଅର୍ଜୁନ କାମ କରୁଥିଲା ଭୁବନେଶ୍ୱରର ଏକ ନାମୀ ହୋଟେଲର ରୋଷେଇଶାଳରେ । ସହାୟକ ରୂପେ । ପ୍ରଥମ କେଇବର୍ଷ ନିର୍ବିଘ୍ନରେ କଟିଲା ଉଷାର ଜୀବନ । ଟୁଆଁଟୁଇଁର ଚମତ୍କାର ପ୍ରୀତିମୟ ସଂସାର । ଏବଂ ତାପରେ ହଠାତ୍ ଦିନେ ଅର୍ଜୁନ ଫଶିଲା ଅନ୍ୟ ଏକ ରମଣୀ 'ଜେମିର' ମାୟା ଜାଲରେ ।

ଜେମିର ଭଗ୍ନୀପତି ଥିଲା ଅର୍ଜୁନର ବନ୍ଧୁ ଏବଂ ସେଇ ବନ୍ଧୁଘରେ ଇ ଜେମି ସହିତ ଅର୍ଜୁନର ଭେଟ । ଜେମି ଥିଲା ଚଞ୍ଚଳାକ୍ଷୀ, ଅପାଙ୍ଗ ହାଣିବାରେ ଓସ୍ତାଦ୍ । ଆଗରୁ ତିନୋଟି ପୁରୁଷଙ୍କ ସହିତ ସମ୍ବନ୍ଧ ରଖି ସେମାନଙ୍କୁ ଛାଡିକି ଆସିଛି । ଚତୁର୍ଥ ପ୍ରେମିକ ହେଉଛି ଅର୍ଜୁନ । ନାଇଟ୍ ଡିଉଟି ଅଛି ବୋଲି ଉଷାକୁ କହି ରାତି ରାତି ଗାୟବ୍ ରହେ ଅର୍ଜୁନ । ଥରଟେ ଦଶଦିନ ପର୍ଯ୍ୟନ୍ତ ଘରେ ଅନୁପସ୍ଥିତ ରହିବାରୁ ଖବର କରି ଉଷା ଜାଣିବାକୁ ପାଇଲା ଯେ ଯା' ଭିତରେ ଅର୍ଜୁନ ଓ ଜେମିଙ୍କର ବିଭାଘର ସରିଯାଇଛି ଏବଂ ଦୁହେଁ ଅନ୍ୟତ୍ର ବସବାସ କରୁଛନ୍ତି । ସ୍ୱାଭାବିକ ଭାବରେ ତା'ପରେ ଅନେକ ବଚସା, ଅନେକ ଗଣ୍ଡଗୋଳ । ଜେମି ସାମନାରେ ଉଷାକୁ ନିର୍ମମ ଭାବରେ ପ୍ରହାର କରି ଏବଂ ତା ସହିତ ସମସ୍ତ ସଂପର୍କ ଛିନ୍ନ କରି ବର୍ଷକ ତଳେ ତାକୁ ଘରୁ ବିତାଡିତ କରି ଦେଇଛି ଅର୍ଜୁନ ଏବଂ ସେଇ ଅପମାନର ପ୍ରତିଶୋଧ ଉଦ୍ଦେଶ୍ୟରେ ଉଷାର ଆଜିର ଏଇ ମକଦ୍ଦମା ।

କେସ୍ ଜିତିଲେ ତୁ କଅଣ ଫେରିଯିବୁ ଅର୍ଜୁନ ପାଖକୁ ? ପଚାରିଲି !

ପାଗଳ ହେଲ ମା ? ମୋ'ର ନିଜର କଅଣ ମାନସମ୍ମାନ ନାହିଁ ? ସ୍ତ୍ରୀକୁ ସିଏ ପା'ପୋଛ ପରି ବ୍ୟବହାର କରିବ ଆଉ ମୁଁ ପୁଣି ଯାଇ ତା' ପାଖରେ ବଳେ ପଶିବି ?

ନିଜେ ଆଜି ମୁଁ ରୋଜଗାରକ୍ଷମ । ପଛକୁ ମା' ଓ ଭାଇମାନଙ୍କର ଦମ୍ଭ ବି ଅଛି । କଅଣ ଅଭାବ ମୋ'ର ? ମୁଁ ଖାଲି ମୋର ଭରଣ ପୋଷଣ ପାଇଁ କେସ୍ କରିଛି । ସହଜରେ ଛାଡ଼ିବିନି ମୁଁ ତାକୁ । ଗୋଲ ଗୋଲ୍ ଆଖି କରି ଉଷା ବେଶ୍ ଦର୍ପର ସହିତ ଘୋଷଣା କଲା ।

ଝିଅଟିର ସ୍ୱାଭିମାନ ଦେଖି ଚମତ୍କୃତ ହେଉଥିଲି । କହିଲି – ତୋ'ର ସନ୍ତାନଟିଏ ଥିଲେ ହୁଏତ ତାକୁ ଚାହିଁ ଜୀବନ କାଟି ପାରିଥାଆନ୍ତୁ । ବଞ୍ଚିବା ପାଇଁ କିଛି ଅବଲମ୍ବନ ଥାଆନ୍ତା ତୋ'ର ।

ସେଥିପାଇଁ ବି ସିଏ ଦାୟୀ ମା । ବାହାଘର ପରେ ପରେ ଗର୍ଭବତୀ ହୋଇଥିଲି । ଶୁଣି ଖୁସି ହେବ କଅଣ ନା ରାଗିକି ଅଗ୍ନିବାଣ । ଏତେ ଶୀଘ୍ର ପିଲାଛୁଆର ଝଂଝାଳ ହେଲେ କୁଆଡ଼େ ତା ମଉଜମସ୍ତିରେ ଭଟ୍ଟା ପଡ଼ିଯିବ । ଯେତେ କାନ୍ଦିଲି ଶୁଣିଲାନି, ଜବରଦସ୍ତି କଲା ଛୁଆକୁ ନଷ୍ଟ କରିଦେବା ପାଇଁ । କେଉଁଠୁ କଅଣ ଔଷଧ ଆଣିକି ଦେଲା, ଛୁଆ ତ ଯାହା ଗଲା ଗଲା, ନିଜ ଅବସ୍ଥା ବି ଏମିତି ହେଲା ଯେ ମରୁ ମରୁ ବଞ୍ଚିଲି । କଅଣ ଯେ ସେଇଠୁ ବିଗିଡିଗଲା, ଆଉ ତା' ପରେ ପିଲାଛୁଆ ହେଲେନି । ସିଏ ମଣିଷ ନୁହଁ ମା' । ଗୋଟିଏ ନର ରାକ୍ଷସ । ତାକୁ ଉଚିତ୍ ଶାସ୍ତି ଦରକାର । ଦେବତା ପରି ଭକ୍ତି କରୁଥିଲି ତାକୁ । ବିଶ୍ୱାସ କରୁଥିଲି । ବିଶ୍ୱାସରେ ବିଷ ଦେଲା ଶେଷ ପର୍ଯ୍ୟନ୍ତ । ଉଷା କଥା କହୁ କହୁ କାନ୍ଦି ପକାଇଲା । ଉଷାର ଅନୁରୋଧ ଅନୁସାରେ ତା' ପରଦିନ କମିଶନ ଅଫିସ୍‌କୁ ଫୋନ୍ କରିଥିଲି । ଉଷାର ଫାଇଲ୍‌ଟି କିଛି ସମୟ ଖୋଜାଖୋଜି କଲା ପରେ ମିଳିଥିଲା ଓ ତୁରନ୍ତ ଏହା ଉପରେ କାର୍ଯ୍ୟବିଧି ଗ୍ରହଣ କରାଯିବ ବୋଲି ଦାୟିତ୍ୱରେ ଥିବା ବରିଷ୍ଠ ଅଫିସର ଜଣକ ମୋତେ ଆଶ୍ୱାସନା ଦେଇଥିଲେ ।

କେଇଦିନ ପରେ ମୋର ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁଯାୟୀ ମୁଁ ଆମେରିକା ଚାଲିଗଲି ପୁଅ ପାଖକୁ । ଘର ସଂପର୍କରେ ମନ ନିଶ୍ଚିନ୍ତ ଥିଲା । ଉଷା ଅଛି, ବାଗିବଗିଚା ଦେଖୁଥିବ । ଚାରିମାସ ପରେ କିନ୍ତୁ ଭୁବନେଶ୍ୱର ଫେରିଦେଖେ ଗାମ୍‌ଲାର ଗୁଲ୍ମ ଓ ବୁଦା ସବୁ ବିବର୍ଣ୍ଣ ଓ ଶ୍ରୀହୀନ । ବଗିଚାର ଘାସ ତଥା ଫଳ ଓ ଫୁଲର ଚାରା ଏକପ୍ରକାର ଅର୍ଦ୍ଧମୃତ । ଭଡ଼ାଟିଆ ପରିବାରଟି କେତେବେଳେ କେମିତି ମନ ହେଲେ ପାଣିମନ୍ଦେ ଦେଉଛନ୍ତି । ସର୍ବୋପରି, ସର୍ଭାଣ୍ଟସ୍ କ୍ୱାର୍ଟରରୁ ଉଷାରାଣୀ ମଧ ନିଖୋଜ୍ ।

ଭଡ଼ାଥିବା ଭଦ୍ରଲୋକ ଖବର ଦେଲେ । ମୁଁ ଆମେରିକା ଯିବାର ପ୍ରାୟ ମାସକ ପରେ ଜଣେ କିଏ ଅପରିଚିତ ଲୋକ ସଦାସର୍ବଦା ଉଷା ପାଖକୁ ଯା'ଆସ କରୁଥିଲା । ଅନେକ ସମୟରେ ତା ସହିତ ରାତ୍ରିଯାପନ କରୁଥିଲା ମଧ । ଉଷା ଲୋକଟିକୁ ତାର ସ୍ୱାମୀ ବୋଲି ସଭିଙ୍କ ଆଗରେ ପରିଚୟ ଦେଇଥିଲା । ପରେ ପରେ ସ୍ୱାମୀ ସହିତ ନିଜ

ଘରକୁ ଯାଉଛି କହି ଭଡ଼ାଟିଆଙ୍କୁ ସର୍ଭାଣ୍ଟସ୍ କ୍ୱାର୍ଟର୍‌ର ଚାବିଟି ହସ୍ତାନ୍ତର କରି ଚାଲିଯାଇଥିଲା ଘରଛାଡ଼ି ।

ବୁଝିପାରିଲି - ମହିଳା କମିଶନ୍‌ଠାରୁ ଜରୁରୀ ତଲବ୍ ପାଇ କେଶ୍‌ରୁ ଖସିଯିବା ଉଦ୍ଦେଶ୍ୟରେ ଅର୍ଜୁନ ଏଇ ଚାତୁର୍ଯ୍ୟ ଅବଲମ୍ବନ କରିଛି । କେତୋଟି ରାତିର ସୋହାଗ ବଦଳରେ ଚରିତ୍ରହୀନ, ଶଠ ସ୍ୱାମୀଟି ପ୍ରତି ପୁନର୍ବାର ପ୍ରୀତ ଏବଂ ସଦୟ ହେଇ ଉଠିଛି ଉଷାର ହୃଦୟ । ଏକଥା ମଧ୍ୟ ବୁଝିଲି - ଅର୍ଜୁନ କେବଳ ଅନନ୍ୟୋପାୟ ହେଇ ଆସିଛି ଉଷାପାଖକୁ । କାମ ହାସିଲ୍ ହେଇଗଲେ ପୁନର୍ବାର ଉଚ୍ଛିଷ୍ଟ ଖଲିପତ୍ର ପରି ଫିଙ୍ଗିଦେବ ତାକୁ ରାସ୍ତାକଡ଼ରେ । କିନ୍ତୁ ସବୁଠାରୁ ମତେ ଯାହା ଆଶ୍ଚର୍ଯ୍ୟ କଲା ତାହା ହେଲା ଉଷାର ଚରିତ୍ରର ଏତାଦୃଶ ନମନୀୟତା । କୁଆଡ଼େ ଗଲା ତାର ସେ ଆତ୍ମାଭିମାନ ?

ଫେରିବାର ପ୍ରାୟ ପନ୍ଦର ଦିନ ପରେ ଦିନେ ବାପୁଜୀନଗରରେ ଅଚାନକ୍ ଉଷା ସହିତ ଦେଖା । ବଜାର୍ କରି ଫେରୁଥିଲା । ହାତରେ ଥଳି । ମତେ ଦେଖି କହିଲା, - ମା, ତମେ ଖରାପ ଭାବିବନି । ଅର୍ଜୁନ ଯାଇ ମତେ ତାଙ୍କ ଘରକୁ ନେଇ ଆସିଛନ୍ତି । ଏଇ ପାଖରେ ଆମେ ଦି ବଖରା ଘର ଭଡ଼ା ନେଇକି ଅଛୁ । ସେଇଥିପାଇଁ ତମ ଘର ଛାଡ଼ିଦେଲି ।

- ମୁଁ କିନ୍ତୁ ଖରାପ ଭାବିଛି । ତତେ ଗୋଟିଏ ଦାୟିତ୍ୱ ଦେଇକି ଯାଇଥିଲି । ଅନ୍ତତଃ ମୁଁ ଆସିବା ପର୍ଯ୍ୟନ୍ତ ତୁ ଅପେକ୍ଷା କରି ପାରିଥାଆନ୍ତୁ । ମୁଁ କହିଲି ।

ଉଷା ନୀରବ ହେଇ ଛିଡ଼ା ହେଲା । ମୁଁ ପଚାରିଲି - ମୁଁ ଗଲାପରେ ମହିଳା କମିଶନ୍‌ରୁ କିଛି ଚିଠି ଅର୍ଜୁନ ପାଖକୁ ଯାଇଥିଲା କି ?

- ହଁ ମା ! ତମେ ଯିବାର ପ୍ରାୟ ପନ୍ଦରଦିନ ପରେ କମିଶନ ତରଫରୁ ଚିଠି ପଠାହେଇଥିଲା । ଖୋଦ୍ ହୋଟେଲ୍‌ର ମ୍ୟାନେଜର୍‌ଙ୍କ ପାଖକୁ ଚିଠି ଯାଇଥିଲା, ଯେମିତି ହେଲେ ଅର୍ଜୁନଙ୍କୁ କମିଶନ ଅଫିସ୍‌କୁ ପଠାଇବା ପାଇଁ । ସେଇ ଚିଠି ପାଇ ତ ଆସିଲେ ମୋ ପାଖକୁ । କହିଲେ ତୁଚ୍ଛାଟାରେ କେଶ୍ କରୁଚୁ ମୋ ନାଁରେ । ଭରଣପୋଷଣ କଅଣ ମାଗୁଚୁ ? ମୁଁ ତ ଚିରଦିନ ପାଇଁ ତତେ ନେଇକି ରଖିବି ମୋ ପାଖରେ । ହେମିକୁ ନେଇକି ରଖିଦେଇ ଆସିଛି ଗାଁରେ । ସିଏ ଥାଉ ସେଇଠି ।

- ସେ କେଶ୍ କଥା ତା ହେଲେ କଅଣ ହେଲା ଶେଷ ପର୍ଯ୍ୟନ୍ତ ?

- ପୁଣି ଆଉ ଥରେ ତାରିଖ ପଡ଼ିଛି । ହେଲେ ମୁଁ ଏଥରକ ଯାଇ କେଶ୍ ଉଠେଇ ଆଣିବି । ମତେ ତ ଆଣିକି ରଖିଲେଣି ପାଖରେ, ଆଉ କେଉଁଥିପାଇଁ କେଶ୍ ?

ମୁଁ ଆଶ୍ଚର୍ଯ୍ୟ ହୋଇ କହିଲି - କେଶ୍ ଫେରେଇ ଆଣିବୁ ? ତୁ ପ୍ରତ୍ୟୟ କରୁଚୁ ଏ ଲମ୍ପଟ କଥାରେ ? ଏଇ ଲୋକ ନା ତତେ ଏତିକି ନିର୍ଯ୍ୟାତନା ଦେଇଚି ।

ଉଷା ମତେ ସିଧାସଳଖ ଅନେଇଁ ଜବାବ୍ ଦେଲା - ସେମିତି କହିବ ନାହିଁ ମା ! ସିଏତ ମୋ ହାତଗୋଡ଼ ଧରି କ୍ଷମା ମାଗିଛନ୍ତି । କହିଛନ୍ତି ଭୁଲ ହୋଇଯାଇଛି ବୋଲି । ଅବିଶ୍ୱାସର ପ୍ରଶ୍ନ ଉଠୁଚି ଆଉ କେଉଁଠି ? ଯେତେ ଯାହା ହେଲେ ବି ମୋର ସ୍ୱାମୀ ସିଏ ।

ଉଷା କଥା ଶୁଣି ମୁଁ କ୍ରମଶଃ ଅସହିଷ୍ଣୁ ହେବାକୁ ଆରମ୍ଭ କଲି । ହୃଦୟଙ୍ଗମ କଲି ଯେ ଧୀରେ ଧୀରେ ମୋ ଭିତରେ କ୍ରୋଧର ଉଦ୍ରେକ ହେଉଛି । ଉଷାର ବୋକାମିର ପରିଣାମ, ମୁଁ ସ୍ପଷ୍ଟ ଭାବରେ ଦେଖିବାକୁ ପାଇଲି ମୋ ଆଖି ଆଗରେ । ଦେଖିବାକୁ ପାଇଲି ଯେ ସ୍ୱାମୀତ୍ୱର ଦ୍ୱାହି ଦେଇ ଏବଂ ମିଥ୍ୟା ଚାଟୁବାକ୍ୟରେ ଉଷାକୁ ଆପ୍ଲୁତ କରି କୌଣସିମତେ କେଶ୍‌ଟି ବନ୍ଦ କରାଇବାକୁ ଅର୍ଜ୍ଜୁନ ଏବେ ତତ୍ପର । ସେଇଥିପାଇଁ ତାର ଏଇ ତଥାକଥିତ ଚାରିତ୍ରିକ ପରିବର୍ତ୍ତନ । ଉଷାକୁ ତାର ନିର୍ବୋଧତା ସଂପର୍କରେ ସଚେତନ କରାଇଦେବା ସମୀଚୀନ ହେବ ବୋଲି ଭାବିଲେ ବି ଶେଷପର୍ଯ୍ୟନ୍ତ ନୀରବ ରହିଲି ମୁଁ । କାରଣ ମୁଁ ଜାଣିଥିଲି ଉଷା ମନରେ ମୁଁ ସୃଷ୍ଟିକରିବାକୁ ଯାଉଥିବା ସମସ୍ତ ସଂଶୟ ଦୂର କରିବାଲାଗି ଅର୍ଜ୍ଜୁନ ପାଇଁ ମାତ୍ର ଗୋଟିଏ ରାତିଇ ଥିଲା ଯଥେଷ୍ଟ । ଉଷା ଏବେ ଯେଉଁ ରୂପରେ ମୋ ସାମ୍ନାରେ ଠିଆ ହୋଇଥିଲା, ସେ ରୂପ ମୋ ପାଇଁ ଥିଲା ସଂପୂର୍ଣ୍ଣ ରୂପେ ଅଜଣା । ବିନା ବାକ୍ୟବ୍ୟୟରେ ମୁଁ ଘରଆଡ଼େ ପାଦ ବଢ଼ାଇଲି ।

ଏ ଘଟଣାର ପ୍ରାୟ ଦୁଇମାସ ପରେ ଆଜି ସକାଳେ ପୁନର୍ବାର ଉଷା ଆସିଥିଲା ମୋ ପାଖକୁ । ଅର୍ଜ୍ଜୁନ ଦ୍ୱାରା ବିତାଡ଼ିତା ହୋଇ । ମୋର ସନ୍ଦେହ ସଠିକ୍ ଥିଲା । ଉଷାକୁ ମିଥ୍ୟାପ୍ରେମର ସ୍ୱପ୍ନ ଦେଖାଇ ନିଜ କାମଟି ହାସିଲ୍ କରିନେବା ଥିଲା ଅର୍ଜ୍ଜୁନର ଲକ୍ଷ୍ୟ ଏବଂ ତାହା ହିଁ ସିଏ କରିଥିଲା ଶେଷପର୍ଯ୍ୟନ୍ତ । ଅର୍ଜ୍ଜୁନର ଛଳନାମୟ ଆଶ୍ୱାସନାର ଶରବ୍ୟ ହୋଇ କମିଶନରୁ କେଶ୍‌ଟି ଉଷା ଉଠାଇଆଣିଥିଲା । ଏବଂ ତା' ପରେ ପରେଇ ଉଷାକୁ ଧକ୍କା ଦେଇ ଘରୁ ବାହାର କରି ଜେମି ପାଖକୁ ଫେରିଯାଇଥିଲା ଅର୍ଜ୍ଜୁନ ।

- ଏବେ ତା ହେଲେ କଅଣ କରିବୁ ଠିକ୍ କରିଚୁ ?

- ଯେଉଁ ଓକିଲବାବୁଙ୍କ ଘରେ କାମ କରେ, ତାଙ୍କୁ କହିଚି । ସିଏ କହିଛନ୍ତି କୋର୍ଟରେ କେଶ୍‌ଟିଏ ଦାଖଲ୍ କରିଦେବେ । ତାଙ୍କ ପଇସା ନେବେନି । ଖାଲି କୋର୍ଟରେ ଯାହା ଖର୍ଚ୍ଚ ସେତିକି ନେବେ । ମା ଓ ଭାଇ ସାହାଯ୍ୟ କରିବେ କହିଛନ୍ତି

- ସେ ଓକିଲ ବାବୁ ସତରେ ଭାରି ପରୋପକାରୀ । ଅନେକ ସାହାଯ୍ୟ କଲେଣି ତତେ । ତେବେ ତୋର ମନେଥିବ, ଠିକ୍ ଏଇଆ ହବ ବୋଲି ମୁଁ ଆଗରୁ

ତତେ କହିଥିଲି । ତୁ ଅବଶ୍ୟ ମୋ କଥା ଶୁଣିଲୁନି ସେତେବେଳେ । ନିଜେ ରୋଜଗାର କରି ଆରାମରେ ଚଳୁଥିଲୁ । ବାପଘରର ଆଶ୍ରା ବି ରହିଛି ତୋ ପାଇଁ, ଯାହା କି ସଚରାଚର ସବୁ ଝିଅଙ୍କୁ ମିଳେନି । ତଥାପି ତୁ ଫେରିଗଲୁ ସେ ବଦ୍‌ମାସ୍ ପାଖକୁ । ମୁଁ କିଞ୍ଚିତ୍ ରୁଷ୍ଟ ହୋଇ ଉଷ୍ମା ପ୍ରଦର୍ଶନ କଲି ଉଷା ଉପରେ । ଉଷା ସଜଳ କଣ୍ଠରେ କହିଲା - ଭୁଲ୍ ହେଇଯାଇଚି ମା । ଆଉ ସେ କଥା ପକାନା । ତେବେ ଏଥରକ ତମେ ଦେଖିବନି କି ଅବସ୍ଥା କରିବି ମୁଁ ତାକୁ ! ମିଠାକଥାରେ ଭୁଲିଯିବା ମଣିଷ ମୁଁ ନୁହେଁ ଆଉ । ପୁଅକୁ ଯଦି ରାସ୍ତାରେ ନାକ ନ ରଗଡ଼େଇଛି ତ ମୁଁ ନନ୍ଦରାଜାର ଝିଅ ନୁହେଁ । ଉଷା ପ୍ରଚୁର ପରିମାଣରେ ଗରଳ ଉଦ୍‌ଗାର କରି ଅର୍ଜୁନକୁ ଅଭିସଂପାତ ଦେବାକୁ ଲାଗିଲା । କିଛି ସମୟ ପରେ କହିଲା - ମା, ମୁଁ କିନ୍ତୁ ଆସିଥିଲି ତମକୁ ସେ ଆଜ୍‌ବେଷ୍ଟସ୍ ଘରଟି ମାଗିବାକୁ । ଭାରି ଶାନ୍ତିରେ ଓ ଆରାମରେ ଥିଲି ମୁଁ ଏଠି । ମୋ କପାଳ ମନ୍ଦ, ନିଜ ଦୋଷରୁ ଛାଡ଼ିକି ଗଲି ଏଠୁ । ମା, ମନା କରିବନି । ସେ ଘର ବଖରିକ ଦିଅ ମତେ ରହିବାକୁ । ବଦଳରେ ବାରିବଗିଚା କାମ କରିଦେବି ପଛେ । ବେଳ ଅବେଳରେ ଘରକାମରେ ବି ସାହାଯ୍ୟ କରିଦେବି ।

ଉଷାର ଶତ ଅନୁନୟ ସତ୍ତ୍ୱେ ମୁଁ କିନ୍ତୁ ତାକୁ ଘର ଦେଇନି । ଫେରେଇ ଦେଇଛି ତାକୁ । କାରଣ ମୁଁ ଜାଣେ, କୋର୍ଟ କେଶ୍ ଚାଲିଲା ପରେ ଅର୍ଜୁନ ପୁନର୍ବାର ଆସି ହାଜର ହେବ ଉଷା ପାଖରେ । ଏବଂ କେତୋଟି ପ୍ରତାରଣାମୟ ରଂଗିନ୍ ଓ ପ୍ରଣୟସିକ୍ତ ନିଶୀଥ ବଦଳରେ କିଣିନେବାକୁ ସକ୍ଷମ ହେବ ଉଷାର ତଥାକଥିତ ପତିସୋହାଗୀ ହୃଦୟ । ଉଷା ପୁନର୍ବାର ଫେରିଯିବ ତା ପାଖକୁ, ପୁନର୍ବାର ନିର୍ଯ୍ୟାତିତା ହେବାପାଇଁ । ଏବଂ ଏ ଘଟଣାର ପୁନରାବୃତ୍ତି ଘଟୁଥିବ ବାରମ୍ବାର ! ବାରମ୍ବାର !

ବୁଝିପାରିଲି ! ଏ ଦେଶର ଉଷାମାନଙ୍କର ଶତ୍ରୁ ଅର୍ଜୁନମାନେ ନୁହନ୍ତି, ସେମାନଙ୍କର ଶତ୍ରୁ ସେମାନେ ନିଜେ ।



# ଯଥା ରାମସ୍ୟ ସୀତା

ଲୀନାର ଟେଲିଫୋନ୍ ପାଇ ଘରେ ପହଞ୍ଚିଲାବେଳକୁ ଦିନ ପ୍ରାୟ ଅଢ଼େଇଟା । ଫୋନ୍ ପାଇଥିଲି ଗୋଟାଏ ବେଳେ । ରିକ୍ସା ଓ ବସ୍ ଧରି ଯାଉ ଯାଉ ପୂରା ଦେଢ଼ଘଣ୍ଟା ଲାଗିଗଲା ।

ପହଞ୍ଚିଦେଖେ, ଘରର ଆବହାଓ୍ୱା ବେଶ୍ ଗୁମ୍‌ସୁମ୍ । ନିର୍ଜ୍ଜନ ଦ୍ୱିପ୍ରହରର ଶବ୍ଦବିହୀନ ଘରେ, ଲୀନା ତା ବଖରାରେ ଚୁପ୍‌ଚାପ୍ ବସିରହିଛି । ବାପା ବେଡ୍‌ରୁମ୍‌ର ଆରାମଚୌକୀଟିରେ ବସି କଅଣ ସବୁ ପୁରୁଣା କାଗଜପତ୍ର ମନଯୋଗ ସହକାରେ ନିରୀକ୍ଷଣ କରି ଲାଗିଛନ୍ତି । ହାତରେ ହାଣ୍ଡଲବାଲା ବହଳ ଯବକାଚ, କାଟାରାକ୍ଟ ଯୋଗୁ ବାପାଙ୍କର ଦୃଷ୍ଟିଶକ୍ତି ଏବେ କ୍ଷୀଣ । ଆଉ ଏ ଗଳ୍ପର ମୁଖ୍ୟନାୟିକା ବୋଉ, ଡ଼ବଲ୍ ବେଡ୍‌ର ଗୋଟିଏ କଡ଼ରେ ଭ୍ରୂଣପରି ଜାକିଜୁକି ହୋଇ ଓ ପଣତକାନିଟି ଘୋଡ଼େଇ ହୋଇ ଆଖିବୁଜି ଶୋଇଛି, କିମ୍ବା ଶୋଇବାର ବାହାନା କରୁଛି । କେବଳ ନାସାରନ୍ଧ୍ର ଦୁଇଟି ଓ କାନଲତି ପାଖର ଗୁଚ୍ଛଟିଏ କାଶଶୁଭ୍ର କେଶ ବାଦ୍ ଦେଲେ, ବାକି ସାରା ଶରୀର ରଙ୍ଗ ଉଠିଯାଇଥିବା ସମ୍ବଲପୁରୀ ଶାଢ଼ୀଟିରେ ଆବୃତ । ବୋଉର ଶୋଇବାର ଭଙ୍ଗୀରୁ ଇ ବୋଉର ଉଷ୍ଣ ମିଜାଜ୍‌ର ସୂଚନା ପାଇଲି । ବୋଉ ରାଗିଲେଇ ଏଇଭଳି ଜାକିଜୁକି ହୋଇ ପଣତକାନିରେ ଦେହ ଘୋଡ଼େଇ ହୋଇ ଶୁଏ ।

ଲୀନାକୁ ଆସି ପଚାରିଲି - କାହିଁକି ରାଗିଛି ବୋଉ ? ଏମିତି ବିବ୍ରତ ହୋଇ ଟେଲିଫୋନ୍ କଲୁ ଯେ ।

ଲୀନା ବିଷନ୍ନ ସ୍ୱରରେ କହିଲା - ନାନୀ ! ଆଜି ସକାଳୁ ସକାଳୁ ବାପା ବୋଉଙ୍କ ଭିତରେ ଭାରି ଗଣ୍ଡଗୋଳ । ବାପାବୋଉ ଦିହେଁ ଠିକ୍ ଦିନ ବାରଟାରେ ଖାଆନ୍ତି । ରନ୍ଧାବଢ଼ା କରି ଆଗ ବୋଉକୁ ଖାଇବାକୁ ଦେଲି ଯେ ସେ ରାଗିକରି ରୁଟି ଫିଙ୍ଗିଦେଲେ । ବାପାଙ୍କ ପାଇଁ ଭାତ ବାଢ଼ିବାକୁ ଗଲାରୁ କହିଲେ ତାଙ୍କୁ ବି ଖାଇବାକୁ ଦେଇପାରିବୁନି । ରହନ୍ତୁ ସିଏ ଉପାସ ! ଭାତଥାଳି ଛଡ଼େଇ ନେଲେ ମୋ ହାତରୁ । ବାଧ ହୋଇ ତମକୁ ଟେଲିଫୋନ୍ କଲି । ବୋଉ ଡ଼ାଇବେଟିସ୍ ରୋଗୀ । ବାପାଙ୍କର ବି ବୟସ ହେଲାଣି । ମତେ ଭାରି ବ୍ୟସ୍ତ ଲାଗିଲା । ମୁଁ ତ ବହୁତ ସାନ । ସେମାନଙ୍କୁ ଜୋର୍ କରି କିଛି କହିବିପାରୁନି । ଏଣେ ଦୁହିଁଙ୍କୁ ଉପାସ ଭୋକରେ ବସିରହିବାର ଦେଖି ଦେହ ବି ସହୁନି । ଅବସ୍ଥା ମୋର ରୀତିମତ୍ ଖରାପ ।

ମୁଁ କହିଲି - ବାପା ତ ସନ୍ଥ ସ୍ୱଭାବର ମଣିଷ । ଜୀବନରେ ଦିନେ କାହାଉପରେ ରାଗିନାହାନ୍ତି କି ଜୋର୍‌କରି ପଦେକଥା କାହାକୁ କହିନାହାନ୍ତି । ସିଏ କଅଣ ପାଟି

କରିବେ ? ଏଇ ବୋଉ ତାଙ୍କ ସାଙ୍ଗେ କଳିଗୋଳ କରିଥିବ । ବକର ବକର କରିବା ତା ସ୍ୱଭାବ । ମୁହୂର୍ତ୍ତେ ବି ଚୁପ୍ ହେଇ ରହିପାରେନି ।

ମୋ କଥାରେ ମୁଣ୍ଡଟୁଙ୍ଗାରି ନୀରବ ସମ୍ମତି ଜଣାଇଲା ଲୀନା ।

ଅଠାଅଶି ବର୍ଷର ବୋଧଶକ୍ତି ରହିତ ବାପା ଏବଂ ଚଉସ୍ତରି ବର୍ଷର ଆଂଶିକ ପକ୍ଷାଘାତ ଗ୍ରସ୍ତ ବୋଉ ଭିତରେ ମଝିରେ ମଝିରେ ହେଉଥିବା ଏଇ ଦାମ୍ପତ୍ୟ କଳହ ସହିତ, ଆମେ - ତାଙ୍କର ପରିଣତବୟସ୍କ ପୁତ୍ରକନ୍ୟାର ଗୋଷ୍ଠୀଟି, ବେଶ୍ ଭଲଭାବରେ ପରିଚିତ । ବାପା ସଂସାରରେ ଥାଇବି ବୈରାଗୀ । ଦୁଃଖ ହେଉ ବା ସୁଖ, ତାଙ୍କର ପ୍ରତିକ୍ରିୟା ସଦାସର୍ବଦା ଏକାପରି । ବୋଉର ସ୍ୱଭାବ କିନ୍ତୁ ଠିକ୍ ଏହାର ବିପରୀତ । ସଂସାରର ମୋହମାୟାରେ ଆକଣ୍ଠ ନିମଜ୍ଜିତ ଏବଂ ସେଇ ହେତୁରୁ ଚିଡ଼୍‌ଚିଡ଼ା ମଧ୍ୟ । ବୋଉ ବାପଘର ବଂଶର ସଭିଏଁ ଥିଲେ କ୍ଷଣକୋପୀ ଏବଂ ଉତ୍ତରାଧିକାରୀ ସୂତ୍ରରେ ବୋଉ ମଧ୍ୟ କିଛି ପରିମାଣରେ ଉକ୍ତ ଗୁଣଟିର ଅଧିକାରିଣୀ ।

ଧୈର୍ଯ୍ୟ ଓ ସହନଶକ୍ତି ଆଦୌ ନ ଥିଲା ବୋଉର । ଆମକୁ କିଛି କହିଲେ, ଯୁକ୍ତି ତର୍କ କରି ଆମେ ପାଲ୍‌ଟା ଜବାବ୍ ଦେଉଥିଲୁ । ରାଗତକ ତେଣୁ ସିଏ ସୁଝାଉଥିଲା ବାପାଙ୍କ ଉପରେ । ସ୍ୱଳ୍ପବାକ୍ ବାପା କିନ୍ତୁ କେବେ ବି ବୋଉର କୌଣସି କଥାର ଉତ୍ତର ଦେଉନଥିଲେ । ଅବଶ୍ୟ ଏହାର ଫଳ କଦବା କେମିତି ଓଲ୍‌ଟା ହେଉଥିଲା । ବୋଉ ଭାବୁଥିଲା ବାପା ତା କଥାକୁ ଅବମାନନା କରୁଛନ୍ତି ଏବଂ ଏହା ତାର କ୍ରୋଧକୁ ସମୟ ବିଶେଷରେ ବଳବତ୍ତର କରୁଥିଲା ।

ବୋଉର ଏଇ ତରଳ ପାରଦ ପରି ଉଠ୍‌ପଡ୍ ହେଉଥିବା ମିଜାଜ୍‌ଟି ପ୍ରତି ବାପା କିନ୍ତୁ ଥିଲେ ଆଶ୍ଚର୍ଯ୍ୟଜନକ ଭାବରେ କ୍ଷମାଶୀଳ । କାହିଁକି ଓ କେତେ ପରିମାଣରେ କ୍ଷମାଶୀଳ ଥିଲେ, ତାହାର ନଜିର୍ ଅବଶ୍ୟ ମୁଁ ଥରଟିଏ ପାଇଥିଲି । ବୋଉର ଅସହିଷ୍ଣୁତା ସଂପର୍କରେ ଥରେ ବାପାଙ୍କ ସାମ୍ନାରେ କିଛି ବିରୂପ ମନ୍ତବ୍ୟ କରିଥିଲି ଏବଂ ବାପା ତାଙ୍କର ଧୀର, ସମାହିତ ଗଳାରେ ଯେଉଁ ଉତ୍ତରଟି ମତେ ଦେଇଥିଲେ, ତହିଁରେ ସ୍ତବ୍ଧ ହେଇଯାଇଥିଲି । ବାପା କହିଥିଲେ - ବୋଉକୁ ସେଭଳି କହିବୁନେଇଁ ମା । ଅନେକ ସ୍ୱାର୍ଥତ୍ୟାଗ କରିଛନ୍ତି ସିଏ ଆମପାଇଁ । ସାରା ଜୀବନ ଧରି ଏ ସଂସାରର ଭାର ବହନ କରି ଆସିଛନ୍ତି । ଘର, ପରିବାର, ବନ୍ଧୁ, କୁଟୁମ୍ବ - ସଭିଙ୍କର ଜଂଜାଳ ସହିଛନ୍ତି ବର୍ଷ ବର୍ଷ ଧରି । ତମେମାନେ ସମସ୍ତେ ତ ତାଙ୍କରି ହାତରେ ମଣିଷ । ଘରକଥା ମୁଁ କଅଣ କେବେ କିଛି ବୁଝିଚି ? ଥରେ ଭାବିଲୁ । ସିଏ ନ ଥିଲେ ମୋ ପରି ଲୋକର ଅବସ୍ଥା କଅଣ ହେଇଥାଆନ୍ତା ?

- ନାନୀ, କଅଣ ଏତେ ଭାବି ଲାଗିଚ ? ଲୀନାର ଅଚାନକ୍ ଡ଼ାକରେ ମୋର ସ୍ୱପ୍ନଭଙ୍ଗ ହେଲା । ଚାହିଁ ଦେଖିଲି, ଲୀନାର ଉପାସିଆ ମୁହଁଟି ଶୁଖି ନିଷ୍ପ୍ରଭ । ଓଢ଼ଣା ତଳେ ଆଖି ଦୁଇଟି ଦୁଃଖ ଓ ଶୋକରେ ଛଳଛଳ । ନମ୍ର ଓ ସୁଧୀରା ଝିଅଟି ଆମଘରକୁ

ଆସିଛି ମାତ୍ର ତିନିମାସ ହେଲା । ସାନଭାଇ ବାହାଘର ପରେ ପତ୍ନୀକୁ ଘରେ ଛାଡ଼ି ଫେରିଯାଇଛି ଆମେରିକା । ଭିସା କାଗଜପତ୍ର ଠିକ୍‌ହେଲେ ଆସି ଲୀନାକୁ ନେଇଯିବ ।

ମୁଁ କହିଲି - ନାଇଁ, ଏଇ ବାପାବୋଉଙ୍କ କଥା ଭାବୁଥିଲି । ତୁ ନୂଆନୂଆ ଏଇ ପରିସ୍ଥିତିରେ ପଡ଼ିଛୁ ବୋଲି ତତେ ବୋଧେ କିଛିଟା ଅଡୁଆ ଲାଗୁଛି । ଆମର କିନ୍ତୁ ଏସବୁ ଦେଖି ଦେଖି ଦେହସୁହା ହେଇଗଲାଣି । ଆମେ କେବେ କୌଣସି ପ୍ରାଧାନ୍ୟ ଇ ଦେଇନୁ ଯା ଉପରେ । ଆଜିକାଲିତ ବାପାବୋଉ କଳି ଲାଗିଲେ ଆମକୁ ଭାରି ମଜା ଲାଗେ । ଦଳକ ଯାକ ଆମେ ହୋ ହୋ ହୋଇ ହସୁ । ଖାସ୍ କରିକି ବୋଉ ଯେତେବେଳେ କହେ ବାପା ତାକୁ ଭଲପାଉନାହାନ୍ତି ବୋଲି ।

- ନାଇଁ ନାନୀ, ବୋଉଙ୍କୁ ଏଭଳି ରାଗିବାର ମୁଁ କେବେ ବି ଦେଖିନି । ଦେଖୁନ ! ବାପାଙ୍କୁ ଉପାସ ରଖେଇ ଦେଇଛନ୍ତି ଜିଦ୍ କରି । ନିଜେ ବି ଭୋକଉପାସରେ ବସିଛନ୍ତି ଏଯାଏ ।

- ରାଗିଲେ ରୁଷିକି ନ ଖାଇବା ତାର ପୁରୁଣା ଅଭ୍ୟାସ । ରାଗଚୋଟରେ କଅଣ ଯାତୁସ୍ୟାତୁ କହିଦେଇଛି ବାପାଙ୍କୁ । ବାପା ଉପାସ ରହିଲେ ସିଏ ସହିବ ? ବାପାଙ୍କ ଖାଦ୍ୟପେୟ ଉପରେ ତାର ଭାରି ନଜର । ସେଦିନ ଶୁଣିଲୁନି, ବାପାଙ୍କୁ ସିଏ ବଳେଇ ବଳେଇ ଭାତ ଖୁଆଉଥିବାର ଦେଖି ବଡ଼ଭାଇ କେମିତି ଚିଡ଼େଇକି କହୁଥିଲା, "ବୋଉ ଲୋ ! ତୁ ଭାବୁଛୁ ବୋଧେ ବେଶୀ ବେଶୀ କରି ଖୁଆଇଦେଲେ ବାପା ନବେବର୍ଷରେ ଟୋକା ହେଇଯିବେ । ନା !"

ମୋ କଥା ଶୁଣି ଫିକ୍‌କରି ହସିଉଠିଲା ଲୀନା ।

ମୁଁ କହିଲି - ଦିହେଁ ତ ବୁଢ଼ାବୁଢ଼ୀ ହେଲେଣି । ପିଲାମାନଙ୍କର ଝଂଝାଳ ସବୁ ଶେଷ । କାମଦାମ ବି କିଛି ନାହିଁ । ପାଖରେ ପୁଅଝିଅ ବା ନାତିନାତୁଣୀ ଯୋଡ଼ିଏ ଥିଲେ ହୁଏତ ତାଙ୍କର ସମୟଟା କଟିଯାଆନ୍ତା । ତା' ବି ହେଇପାରିନି । ଆମେ ସଭିଏଁ ରହିଲୁ ଦୂରରେ । ଖାଲିଟାରେ ବସି ବସି କରିବେ କଅଣ ? ଖୁମ୍ପାଖୁମ୍ପି ଚଲେଇଛନ୍ତି ନିଜ ନିଜ ଭିତରେ । ବାପା ତେବେ ବି ଏ ବୟସରେ ବହିପତ୍ର ଘାଣ୍ଟୁଛନ୍ତି । ବୋଉର ତ କାମଧନ୍ଦା କିଛି ନାହିଁ । ଦିନଯାକ ବାପାଙ୍କ ସାଙ୍ଗେ ଲାଗିଛି । ହେଲେ ବାପାଙ୍କ ପ୍ରତି ଭାରି ଟାଣ ତାର । ଦେଖିଲୁନି ! ସେଦିନ ବାପାଙ୍କୁ ଧରି ବାଥ୍‌ରୁମ୍ ନବ ବୋଲି ତରବରିଆ ହେଇ ଖଟରୁ ଓହ୍ଲାଉ ଓହ୍ଲାଉ କେମିତି ଦୁଲ୍ କରି ପଡ଼ିଲା ।

ଲୀନା କହିଲା - ଷ୍ଟ୍ରୋକ୍‌ପରେ ବୋଉଙ୍କର ବାଁ ଗୋଡ଼ଟା ଅନେକାଂଶରେ ଦୁର୍ବଳ ହୋଇପଡ଼ିଛି ।

ମୁଁ ପଚାରିଲି - ଆଜି କଳିକଜିଆର ସୂତ୍ରପାତ ହେଲା କେମିତି ? କେଉଁ କାରଣରୁ ? ବୋଉର ପାଟିତୁଣ୍ଡ ତ ସବୁ ବେକାର କଥାରୁ ଆରମ୍ଭ ହୁଏ ।

ଲୀନା କହିଲା - ନିହାତି ତୁଚ୍ଛ କଥାରୁ ନାନୀ । ବୋଉ ସକାଳେ ଗାଧୋଇ ସାରି ଯେଉଁ ଶାଢ଼ୀଟି ପିନ୍ଧିଲେ ସେଇଟା ଗୋଟିଏ ଜାଗାରେ ଟିକିଏ ଚିରାଥିଲା । ବାପାଙ୍କ ଆଖିପଡ଼ିଯିବାରୁ କହିଲେ, "ଆଲମାରୀରେ ଏତେ ଶାଢ଼ୀ ରଖିଚ । ଚିରା ଶାଢ଼ୀ ପିନ୍ଧୁଚ କାହିଁକି ?" ବାସ୍ କଥା ଏତିକି । ଏଇକଥାରୁ କେଉଁ ମହାଭାରତ ଯୁଗର ପୁରୁଣା କଥା ସବୁ ମନେପକାଇ ବାପାଙ୍କ ଉପରେ ବୋଉ ରାଗିକି ଅଗ୍ନିବାଣ ।

- ଓହୋ ! ବୋଉପାଇଁ କିଣା ହୋଇଥିବା ଶାଢ଼ୀଟି ବାପା ବୁଢ଼ୀମା'ଙ୍କୁ ଦେଇଦେଇ ଥିବାର ସେଇ ପୁରୁଣା କାହାଣୀ ତ ।

- ତମେ କେମିତି ଜାଣିଲ ନାନୀ ? ଠିକ୍ ଏଇ କଥା ।

- ସେ ଐତିହାସିକ ଉପାଖ୍ୟାନ ନେଇ ଅଜସ୍ର ଥର ବାପାଙ୍କ ସାଥିରେ କଳି କରିଛି ବୋଉ । ମୋ ଜନ୍ମ ଆଗର ଇତିହାସ । ଏବଂ ସେ ଇତିହାସ ଏକାଧିକଥର ଶୁଣି ଶୁଣି ଆମ୍ଭମାନଙ୍କର ପ୍ରାୟ ମୁଖସ୍ଥ ।

ଘଟଣାଟି ବୋଉ ନୂଆ ବାହାହେବା ବେଳର । ବାପା କୁଆଡ଼େ ଥରେ ନବବିବାହିତା ପତ୍ନୀଙ୍କ ପାଇଁ ଶାଢ଼ୀଖଣ୍ଡିଏ କିଣିକି ଆଣିଥିଲେ । ଶାଢ଼ୀ କିଣିବା ପରଦିନ ଗାଁରୁ ବୁଢ଼ାବାପା ଆସି ପହଞ୍ଚିଥିଲେ କଟକରେ । ଏବଂ ବୁଢ଼ାବାପା ଗାଁକୁ ଫେରିଯିବା ସମୟରେ, ସେ ଶାଢ଼ୀଟି ବୋଉଠାରୁ ମାଗି ନେଇ ବାପା ପଠେଇ ଦେଇଥିଲେ ବୁଢ଼ୀମା'ଙ୍କ ପାଇଁ । ଦୀର୍ଘ ଷାଠିଏ ବର୍ଷ ତଳର ଏଇ କାହାଣୀଟିକୁ ନେଇ ଅତି କମ୍‌ରେ ଷାଠିଏ ଥର ବୋଉ ବାପାଙ୍କ ଆଗରେ ତୀବ୍ର ସ୍ୱରରେ ଫରିୟାଦ୍ କରିଥିବାର ଆମେ ସବୁ ଦେଖିଛୁ ।

ଲୀନା କହିଲା - ବୋଉ ଏମିତିରେ କିନ୍ତୁ ଭାରି ଭଲ । ତେବେ ଏ ବୟସରେ ଏତେ ରାଗିବାଟା ତାଙ୍କ ପାଇଁ ଠିକ୍ ନୁହେଁ । ନିଜେ ଇ ନିଜର ଦେହ ଖରାପ କରି ବସୁଛନ୍ତି । ସହଜେ ହାଇବ୍ଲଡ୍‌ପ୍ରେସର୍ ରୋଗୀ ।

ମୁଁ କହିଲି - ମଣିଷମାନେ ବୁଢ଼ାବୁଢ଼ୀ ହୋଇଗଲେ ବେଶୀ ଖିଟ୍‌ମିଟ୍ ଲାଗନ୍ତି ବୋଧହୁଏ । ମୋ' ଶାଶୁ ଘରେ ବି ସେଇ ଏକା କଥା । ପାଖରେ ଥିବା କନିଷ୍ଠା ପୁତ୍ରବଧୂଟି ପ୍ରତି ମୋ ଶ୍ୱଶୁର ଅତ୍ୟନ୍ତ ସ୍ନେହଶୀଳ । ଆଉ ତାକୁ ବେଶୀ ଭଲପାଉଥିବା ହେତୁ ମୋ ଶାଶୁଙ୍କର ତୀବ୍ର ଅଭିମାନ ମୋ ଶ୍ୱଶୁରଙ୍କ ପ୍ରତି । ଦିନେ ଘରେ ଚିନି ନାହିଁ ବୋଲି ମୋ ସାନ ଜା' କହିବାରୁ ଶ୍ୱଶୁର ସାଙ୍ଗେ ସାଙ୍ଗେ ଯାଇ ବଜାରରୁ ଦି କିଲୋ

ଚିନି କିଣି ନେଇ ଆସିଲେ । ଆଉ ମୋ ଶାଶୁ ଏଇଥିପାଇଁ ତାଙ୍କ ସହିତ କଳିକରି ତିନିଦିନ ରୁଷିକି ଶୋଇଲେ । ଶ୍ୱଶୁରଙ୍କ ଉପରେ ରାଗ - ସେଦିନ ମୋର ପାନପତ୍ର ସରିଯାଇଥିଲା ଯେ ସିଧାସଳଖ ମତେ କହିଦେଇ ଖରାରେ ଚାଲିକି ଯାଇପାରିବନି । ଆଜି କେମିତି ଉଦୁଉଦିଆ ଦି'ପହରଟାରେ ଦୌଡ଼ିକି ଯାଇ ବୋହୂପାଇଁ ଚିନି ନେଇ ଆସିଲ ? ଦୁହିଁଙ୍କର ବାଦାନୁବାଦର ଉଗ୍ରତା ଦେଖି ଆମେ ଛଅଜଣଯାକ ପ୍ରାପ୍ତବୟସ୍କ ପୁତ୍ର ଓ ପୁତ୍ରବଧୂ ସେଦିନ ହସି ହସି ନୟାନ୍ତ ।

କଥାଟି କହୁ କହୁ ମୁଁ ହସି ପକାଇଲି । ଲୀନା ହସିଲା ମୋ' ସହିତ ତାଳ ଦେଇ । ଆମ ହସକୁ ପ୍ରତିହତ କରି ଢଂ ଢଂ କରି କାନ୍ଥଘଣ୍ଟାରେ ତିନିଟା ବାଜିଲା ଏତିକିବେଳେ ।

ଲୀନା କହିଲା - ନାନୀ, ଆଉ ଗପ କରିବାନି । ଅନେକ ଡେରି ହେଲାଣି । ତମେ ବରଂ ଯାଇ ଦି ଜଣଙ୍କୁ ବୁଝାବୁଝି କରେଇ କୌଣସିମତେ କିଛି ଟିକିଏ ଖୁଆଇ ଦିଅ । ସକାଳେ ବାପା ଖାଲି ଅଧଗିନେ ହେବ ଛେନା ଖାଇଥିଲେ । ଆଉ ବୋଉ ପିଇଥିଲେ ମାତ୍ର ଗିଲାସଟିଏ ହର୍ଲିକ୍ସ୍ । ବେଳ ଆସି ଏତେ ହେଲାଣି । ଦିହେଁ ଅତିମାତ୍ରାରେ ବୃଦ୍ଧ । ପୁଅମାନେ ବାହାରେ । କାହାର କଅଣ ହେଲେ ମୁଁ ଏକୁଟିଆ ଯେ ହଇରାଣ ହୋଇଯିବି ।

- ଠିକ୍ ଅଛି । ତୁ ବି ଆ' ମୋ ସାଙ୍ଗରେ । ତୁ ଅଖିଆ ଅଛୁ ଜାଣିଲେ ବୋଉ ମନ ଠିକ୍ ତରଳି ଯିବ ଦେଖିବୁ । ତତେ ଭାରି ଭଲ ପାଏ ତ !

ଲୀନାକୁ ସାଥିରେ ଧରି ମୁଁ ମଝିଘରେ ପଶିଲି । ବାପାଙ୍କୁ ପ୍ରଣାମ କଲାବେଳକୁ ବାପା ମୁହଁ ଟେକି ମୋତେ ଚାହିଁଲେ । ପ୍ରଥମେ ଠିକ୍ ଚିହ୍ନିପାରିଲେନି । ପରେ ଚିହ୍ନିପାରି ଆଶୀର୍ବାଦ କଲେ । ବୁଝିପାରିଲି ବାପାଙ୍କର ସ୍ମୃତିଶକ୍ତି ଧୀରେ ଧୀରେ ଦୁର୍ବଳ ହୋଇ ଆସୁଛି ।

ବାପା ଦେଖୁଥିବା କାଗଜଖଣ୍ଡିକୁ ନିର୍ଦ୍ଦେଶ କରି ପଚାରିଲି - ଏଇଟା କଅଣ ବାପା ?

- ଏଇଟା ଗୋଟିଏ କବିତା । ମୋ ଛାତ୍ରାବସ୍ଥାରେ ଲେଖିଥିଲି । ମୁଁ ପାଟ୍ନାରେ ପଢ଼ିଲାବେଳେ ଥରେ ଗାନ୍ଧିଜୀ ଆସିଥିଲେ । ସିଏ ଡଙ୍ଗାରେ ନଦୀପାର୍ ହୋଇ ଗଲାବେଳେ ମୁଁ ତାଙ୍କୁ ଦେଖିଥିଲି । ଆଉ ଏଇ କବିତାଟି ହଷ୍ଟେଲ୍‌କୁ ଫେରିଆସି ଲେଖିଥିଲି । ତୁ ଶୁଣିବୁ ? ବାପା ଛନ୍ଦୋବଦ୍ଧ କବିତାଟି ଆବୃତ୍ତି କବିତାକୁ ଆରମ୍ଭ କଲେ ଓ ପଦୁପଦୁ କାନ୍ଦି ପକେଇଲେ । ଅତୀତର ସ୍ମୃତିଚାରଣ କରୁକରୁ କାନ୍ଦି

ପକାଇବାର ଏଇ ଅଭ୍ୟାସଟି ବାପା ସଦ୍ୟ ଆହରଣ କରିଥିବାର କେଇଦିନ ହେଲା ଲକ୍ଷ୍ୟ କରୁଥିଲି ।

ବାପାଙ୍କ କବିତାଟି ଶୁଣିସାରି ମୁଁ ଯାଇ ବୋଉକୁ ଉଠାଇଲି । ହଲେଇ ଦେଇ କହିଲି ବୋଉ ! କଅଣ ଦେହ ଭଲ ନାହିଁକି ? ଲୀନା କହୁଥିଲା ଏ ଯାଏ ସବୁ ଖିଆପିଆ କରିନ ବୋଲି । ତମେ ଡାଇବେଟିସ୍ ରୋଗୀ । ବାପା ବି ଆଦୌ ଭୋକ ସହିପାରନ୍ତିନି । ଖାଇନ କାହିଁକି ?

ବୋଉ ମୋ କଥା ଶୁଣି କଡମୋଡି ଉଠିବସିଲା ଖଟରେ । କହିଲା - ଭଲ ହେଲା । ତୁ ଆସି ପହଞ୍ଚିଛୁ । ଏବେ ବୁଝ୍ ମୋ କଥା । ମୁଁ ଆଉ ଏ ଲୋକସାଥିରେ ନରହେ । ବହୁତ ହେଇଗଲା । ସାରାଟା ଜୀବନ ମତେ ବେଖାତିର କରି ଆସିଲେ । ଯାହା ଅବସ୍ଥା ମୁଁ ହେଲିଣି ମୁଁ ଜାଣେ । ତାଙ୍କୁ କହ ମତେ ଏବେ ନେଇ ପୁରୀ ଅନାଥାଶ୍ରମରେ ଛାଡ଼ିଦେଇକି ଆସିବେ । ମୁଁ ଜାଣିସାରିଲିଣି ସଂସାରରେ ମୋର ନିଜର ବୋଲି କେହି ନାହିଁ ।

ପଢୁଥିବା କାଗଜରୁ ମୁହଁ ଉଠାଇ ମୃଦୁହସି ପରିହାସ କରିବା ଭଙ୍ଗୀରେ ବାପା ଟୀପ୍ପଣୀ କାଟିଲେ - ପୁରୀରେ ତମକୁ ରଖିଲାପରି ଅନାଥାଶ୍ରମ ଅଛି ବୋଲି ତମେ କେମିତି ଜାଣିଲ ?

ବୋଉ ତା ବଡ ବଡ ଡୋଳାରେ ବାପାଙ୍କ ଆଡେ ଏକ ଅଗ୍ନିବର୍ଷୀ ଦୃଷ୍ଟି ନିକ୍ଷେପ କରି କହିଲା "ମତେ ଚିଡାନା କହି ଦେଉଛି । ଭଲ ହେବନି । ମୁଁ ମୋ ଝିଅସାଙ୍ଗରେ କଥାବାର୍ତ୍ତା କରୁଛି । ତମସାଥିରେ ପାଟି ଫିଟେଇବାକୁ ମୋର ଆଦୌ ଇଚ୍ଛା ନାହିଁ ।" ବୋଉ କଥାଶୁଣି ବାପା ନିର୍ବିକାର ଭାବରେ କାଗଜଟିରେ ପୁନଃ ମନୋନିବେଶ କଲେ ଓ ବୋଉ କିଛି ସମୟ ନୀରବ ରହି ମତେ କହିଲା - ଏତେ ପୁଅଝିଅ ଜନ୍ମ କଲି । ମୋ' କପାଳକୁ ସମସ୍ତେ ତମେ ତମ ବାପପଟିଆ । ମୋ'ର କେଉଁ ଆଉ ବାପ ଭାଇ ବଞ୍ଚିଛନ୍ତି ଯେ ବାପଘର ବଳ ଦେଖେଇବି । ସବୁଆଡୁ ମୁଁ ନିରାଶ୍ରୟ । ମୃତ ପିତା ଏବଂ ଜ୍ୟେଷ୍ଠଭ୍ରାତାଙ୍କୁ ସ୍ମରଣ କରି ବୋଉ ସୁକୁ ସୁକୁ କରି କାନ୍ଦିବାକୁ ଆରମ୍ଭ କଲା ।

ମୁଁ କହିଲି - ଥାଉ, ଥାଉ, ତୁଚ୍ଛାଟାରେ କନ୍ଦାକଟା କରନା । ହେଲେ ତମେ ଯେତେ ଯାହା କହ ପଛେ ଗୋଟିଏ କଥା ମୁଁ ଠିକ୍ ଜାଣିଛି । ବାପାଙ୍କ ଉପରେ ତମର ଏ ରାଗ ଖାଲି ଲୋକ ଦେଖାଣିଆ । ବାପାଙ୍କୁ ନିଜେ ହଜାରକଥା ଶୁଣାଉଥିବ, କିନ୍ତୁ ଆଉ କିଏ ପଦେ କଅଣ କହିଦେଲେ ନାଗସାପ ପରି ଚୋଟ ମାରିବ ତାକୁ । ସେଥରକ ବାପା କେମିତି କଲିକତା ଯାଇ ଫେରିବାରେ ଦି'ଚାରିଦିନ ଡେରି କରିଦେଲେ

ଯେ ଦାଣପିଣ୍ଡାରେ ବସିକି କାନ୍ଦୁଥିଲ ! ଭୁଲିଗଲଣି ? "ଆଉ ଜୀବନରେ ମାଛ ଖଣ୍ଡିଏ ଖାଇପାରିବିନି" କହି ବାହୁନା ପକେଇ ଥିଲ ପରା !

- ବୁଝିଲୁ ! ମୁଁ ସେଇମିତିଆ ଅଲାଜୁକ ମଣିଷ ବୋଲି ମାଛ ଖଣ୍ଡିଏ ଖାଏ । ଆଉ କିଏ ହେଇଥିଲେ ଛିଙ୍କ କରି ଦିଅନ୍ତା ସେ ମାଛକୁ । ତାଙ୍କରି ସାନଭାଇ ବାହାହେଲା ବେଳେ ନିଭତି ରାତିରେ ଲୁଚେଇକି ବଜାରରୁ ମାଂସ ତରକାରୀ ଆଣୁଥିଲେ ଭାରିଯା ପେଇଁ । ଇଏ ଦିନେ କେବେ ଖବର କରିଛନ୍ତି ମୁଁ ଖାଇଲି କି ନଖାଇଲି ? ତାଙ୍କ ବଅଁଶଯାକଙ୍କୁ ରାନ୍ଧିବାଢି ଦେଇ ସବାଶେଷରେ ଆଳୁପୋଡା, ଆମ୍ବୁଲଚକଟା ଲଗେଇ ବର୍ଷ ବର୍ଷ ଭାତ ଖାଇଚି । ଜାଣନ୍ତି ସିଏ ସେ କଥା ? ଖାଇ ଖାଇକି ମାଛ ଟିକିଏ ଖାଏ ଯେ ସେଥିପାଇଁ ରାତି ପାହିଲେ ମତେ ଖୁଣ୍ଟା ଦେବେ ।

ବୋଉ କହିଥିବା ଏଇ ମନ୍ତବ୍ୟଟିରେ ଅବଶ୍ୟ କିଞ୍ଚିତ୍ ସତ୍ୟତା ଥିଲା । ବାପା ଥିଲେ ସଂପୂର୍ଣ୍ଣ ଶାକାହାରୀ । ପିଆଜ, ରସୁଣ ପ୍ରତି ବି ବିତୃଷ୍ଣା ଥିଲା ତାଙ୍କର । ବୋଉ କେତେବେଳେ କେମିତି ପଖାଳଭାତ ସାଥିରେ ଶୁଖୁଆ ଭାଜି ଖାଇଲେ ବାପା ତାଙ୍କ ସ୍ୱଭାବସୁଲଭ ଧୀରସ୍ୱରରେ କହୁଥିଲେ - କାହିଁକି ସେ ଶୁଷମୀନ ଗୁଡ଼ାକ ଖାଉଛ ? ଦେହ ଖରାପ ହେବ । ମୁଁ କହିଲି - ମାଛ, ମାଂସ ଖିଆ ତ ଏମ୍ତିରେ ବାପା ପସନ୍ଦ କରନ୍ତିନି । ତାଙ୍କରି ପ୍ରଭାବରୁ ଆମେ ଅଧା ଭାଇଭଉଣୀ ମଧ ନିରାମିଷାଶୀ ହୋଇଗଲୁ । ତେବେ ସତ କହିଲ ! ଅନ୍ୟ କେଉଁ କଥାରେ ବାପା କେତେବେଳେ ହେଲେ ତମକୁ କିଛି କହିଛନ୍ତି ? ମିଛଟାରେ ନିନ୍ଦୁଚ ତାଙ୍କୁ ।

- ହଁ ତା' କହିବୁନି କାହିଁକି ? ଏତେ କଷ୍ଟ କରି ଦଶମାସ ଲେଖାଏଁ ପେଟରେ ଧରିଲି । ଶେଷକୁ ତମେମାନେଇ ସବୁଠୁ ବଡ଼ ଶତ୍ରୁ ହେଲ ମୋର । ପଚାର ତାଙ୍କୁ । ଚାରି ଚାରିଟା ବାଳୁତ ଛୁଆଙ୍କ ସାଥିରେ ମୋତେ ଗାଁରେ ଛାଡି ଦେଇ ପାଠ ପଢ଼ିବାକୁ ଗଲେ ଲଣ୍ଡନ । ମୁଁ ବଞ୍ଚିଛି କି ମରିଛି ଦିନେ ଖବର କରିଛନ୍ତି ? ଚିଠି ଲେଖୁଥିଲେ ତାଙ୍କ ବାପାଙ୍କୁ ଓ ବଡଭାଇଙ୍କୁ । କେତେଖଣ୍ଡ ଚିଠି ଦେଇଛନ୍ତି ମତେ ପଚାର ।

ମୁଁ କହିଲି - ଆହା ! ଘରର ମୁରବୀ ଥିଲେ ବୁଢାବାପା । ତାଙ୍କୁ ଚିଠି ନଲେଖି ତମକୁ ଲେଖିଥିଲେ ହୁଏତ ବୁଢାବାପାଙ୍କୁ ସେଇଟା ଅଶୋଭନୀୟ ମନେହୋଇଥାଆନ୍ତା । ସେ କାଳର ଚଳଣୀ ଅଲଗା ଥିଲାତ ! ତାଛଡ଼ା ବୁଢାବାପାଙ୍କୁ ଲେଖା ଚିଠିରୁତ ବାପାଙ୍କ ଖବର ସବୁ ପାଇଯାଉଥିଲ ତମେ । ଅସୁବିଧା ଆଉ କଅଣ ?

-ହଁ, ଏବେ ତୁ ବଡ ବଡ କଥା କହିବୁନି କାହିଁକି ? ବାବୁଲନ୍ଗବେଇଙ୍କୁ ତୁ ଯେତେବେଳେ ଆସାମରୁ ଏଠିକି ଆସିଥିଲୁ ବିନୟ ପରା ଦିନକୁ ଯୋଡେ ଲେଖାଏଁ ଚିଠି ଲେଖୁଥିଲେ ତତେ ! ଦିଦିନ ଚିଠି ନଆସିଲେ ବସିକି କାନ୍ଦୁଥିଲୁ । ମତେ କଅଣ ଉପଦେଶ ଶୁଣାଉଛୁ ଆଜି ?

ମୁଁ ହସି ହସି କହିଲି - ସେ ସବୁ କେଉଁ ଯୁଗର କଥା । ଆଜିକାଲି ପଦକରୁ ଦିପଦ କଥା ବି ସିଏ କହନ୍ତିନି ମୋ' ସହିତ ।

ବୋଉ କିନ୍ତୁ ମୋ'କଥା ଶୁଣିସାରି ବି ପ୍ରତିକ୍ରିୟା ଶୂନ୍ୟ ଭାବରେ ଏବଂ ଏକ ଅନୁଦ୍ଧତ ଭଙ୍ଗୀରେ ଗୁମ୍ ହୋଇ ବସିରହିଲା ଖଟଉପରେ । ମୁଁ ବୋଉର ପାଦ ଆଉଁଷୁ ଆଉଁଷୁ କହିଲି - ଆଚ୍ଛା, ଆଚ୍ଛା, ମାନୁଛି ସବୁ ଦୋଷ ବାପାଙ୍କର । ତମ କଥାରେ ବି କିଛି ଓଜନ ଅଛି ନିଶ୍ଚୟ । ଗୋଟିଏ ଦେବତାକୁ ମଣ୍ଡପରେ ବସାଇ ପୂଜାର୍ଚ୍ଚନା କରାଯାଇପାରେ । କିନ୍ତୁ ତାଙ୍କୁ ନେଇ ଘର ସଂସାର କରିବା ଯେ କାଠିକର ପାଠ ଏକଥା ପୃଥିବୀରେ ସମସ୍ତେ ଜାଣନ୍ତି । ତେବେ ଏ ବୟସରେ ଏଇ ସାମାନ୍ୟ କଥାକୁ ନେଇ ରୁଷିକି ଭାତ ନଖାଇଲେ ଲାଭ କଅଣ ? ଚାଲ, ଖାଇବ ଚାଲ ।

ବୋଉ କହିଲା - ତୁ ଯେତେ ଯାହା କହିଲେ ବି ଏ ଘରେ ଆଉ ମୁଁ ଅନ୍ନଜଳ ନଛୁଏଁ । ତାଙ୍କୁ ବି କେମିତି କିଏ ଭାତ ଦେବ ମୁଁ ଦେଖିବି । ଭଲମନ୍ଦ ଖାଇକି ବଳୁଆ ହେଲାରୁ ମୋ ଉପରେ ବେଶୀ ଭାଉ ଦେଖାଉଛନ୍ତି । ରହନ୍ତୁ ଉପାସ ଦୁଇଦିନ । ବଳେ ସାବାଡ୍ ହୋଇଯିବେ ।

ମୁଁ କହିଲି - ଠିକ୍ ଅଛି । ତମେ ଦିଜଣ ରୁଷାରୁଷି ହୋଇ ଖାଇବା ବନ୍ଦ କରିଦେଲ । ହେଲେ ଏ ଛୁଆଟା କି ଦୋଷ କଲା ? ତମେ ନଖାଇଲାରୁ ଲୀନା ଯେ ଭୋକ ଉପାସରେ ବସିରହିଛି ସକାଳୁ । ତା' ବାପା ମାଆଙ୍କର ଗେହ୍ଲାଝିଅ । ନୂଆହୋଇ ଆସିଛି ତମଘରକୁ । ଯେତିକି ପାରୁଚି ବିଚରା ପ୍ରାଣପଣେ ଚେଷ୍ଟାକରି ରାନ୍ଧି ବାଢ଼ିକି ଦେଉଛି ବି ତମକୁ । ତମ ପୁଅ ଭରସା କରି ତାକୁ ଛାଡିକି ଯାଇଛି ତମ ପାଖରେ । କାଲିକି କାଲି ସିଏ ଯେତେବେଳେ ଶୁଣିବ ତା'ସ୍ତ୍ରୀ ତୁମଯୋଗୁ ଉପାସଭୋକରେ ରହିଛି, କଅଣ ଭାବିବ ସିଏ ତମ ବିଷୟରେ ? ଥରଟେ ଚାହିଁକି ଦେଖ ତ ତା ମୁହଁକୁ ! ଭୋକ ଓ ମନସ୍ତାପରେ କଳାକାଠ ପଡ଼ିଗଲାଣି ବିଚରା । ତମ ହୃଦୟରେ ଦୟାମାୟା ଟିକିଏ ନାହିଁ ? ଭଲ ମା ହେଇଚ ତମେ !

ମୋ କଥାଶୁଣି ବୋଉ ଲୀନାକୁ ପାଖକୁ ଟାଣିଆଣି ଓ ଖଟରେ ବସାଇ ଲୁହ ଛଳଛଳ ଆଖିରେ ତା ମୁଣ୍ଡକୁ ଆଉଁଷି ଦେବାରେ ଲାଗିଲା । ଲକ୍ଷ୍ୟକଲି ଏ ପର୍ଯ୍ୟନ୍ତ ଟାଣ ଟାଣ ହୋଇ ରହିଥିବା ବୋଉ ମୁହଁର ମାଂସପେଶୀ ସବୁ କ୍ରମଶଃ ନମନୀୟ ହେବାକୁ ଆରମ୍ଭ କରିଛି । ବୁଝିପାରିଲି, ଔଷଧ ମୋର ଠିକ୍ କାମ୍ କରିଛି ।

ଓର ବୁଝି ଲୀନା କାନ୍ଦ କାନ୍ଦ ସ୍ୱରରେ କହିଲା - ବୋଉ, ଆପଣଙ୍କ ଦେହ ଅସୁସ୍ଥ । ଥରେ ଷ୍ଟ୍ରୋକ୍ ହୋଇ ହସ୍‌ପିଟାଲରେ ପନ୍ଦରଦିନ ପଡିକି ଆସିଛନ୍ତି । ବାପାଙ୍କୁ ବି ନବେ ପାଖାପାଖି ବୟସ ହେଲାଣି । ବହୁତ ସେବାଯତ୍ନରେ ତାଙ୍କୁ ଏବେ ରଖିବା

କଥା । ଏଭଳି ଉପାସ ରହିଲେ ସିଏ ଯେ ଉଠିପାରିବେନି ଆଉ । ଆପଣ କିଛଣ ଖାଇସାରିଲେ ମୁଁ ନାନୀଙ୍କୁ ବି ଖାଇବାକୁ ଦେବି । ମୋ' ଫୋନ୍ ପାଇ ଅଖିଆ ଅପିଆ ଭୁବନେଶ୍ୱରରୁ ପଳେଇ ଆସିଛନ୍ତି ସିଏ ।

ବୋଉ ମୋତେ ଚାହିଁ ନରମ ସ୍ୱରରେ କହିଲା - ତୁ ଏଯାଏ କିଛି ଖାଇନୁ ମା ? ଫ୍ରିଜ୍‌ରେ ସୁନ୍‌ପାମ୍‌ଡି ଅଛି । ଆଣିକି ଖା' । କାଲି ଜଣେ ଭଦ୍ରଲୋକ ରାଉରକେଲାରୁ ଆସିଥିଲେ ଯେ ବୁଲୁବୁଡୀ ତାଙ୍କ ହାତରେ ପଠେଇଛି ।

ମୁଁ ବୁଝିପାରିଲି । ବୋଉର ରାଗ ଓ ଅଭିମାନର ତୀବ୍ରତା ଧୀରେ ଧୀରେ ହ୍ରାସ ପାଇବାରେ ଲାଗିଲାଣି । ଲୀନାକୁ କହିଲି - ଯା' ତ ! ଆଗ ବାପାଙ୍କୁ ଖାଇବାକୁ ଦେଇଦେ । ତା'ପରେ ବୋଉ, ତୁ, ମୁଁ ଏକା ସାଥିରେ ଖାଇବା । ଭାରି ଭୋକ ଲାଗିଲାଣି ମତେ ।

ଲୀନା ଖଟରୁ ଉଠି ବାପାଙ୍କୁ ପଚାରିଲା - ବାପା, ସାନ ଟେବ୍‌ଲ୍‌ଟି ପକାଇ ଏଇଠି ଭାତ ଦେବି ?

ବାପା କହିଲେ - ନା, ନା - ତମେ ଏତେ କଷ୍ଟ କରନା । ରୋଷେଇ ଘରେ ବଡ଼ପିଡ଼ା ପକେଇ ମତେ ଖାଇବା ବାଢ଼ିଦିଅ । ମୁଁ ଯାଉଛି ସେଇଠିକି ।

ଲୀନା ଓ ମୁଁ ସାଥି ହୋଇ ରୋଷେଇଘରକୁ ଗଲୁ । ବାପା ବି ଆସିଲେ ଆମ ପଛେ ପଛେ । ଲୀନା ପରିପାଟୀ କରି ଭାତ ତରକାରୀ ବାଢ଼ିଦେଲା ବାପାଙ୍କୁ । ବାପା ଚଳୁ କରି ଠିକ୍ ଖାଇବା ଆରମ୍ଭ କରିବାକୁ ଯାଉଛନ୍ତି, ତା'ର ଅସାଡ ବାମ ଗୋଡଟିକୁ ଟାଣି ଟାଣି ବୋଉ ରୋଷେଇଘର ଆଡକୁ ଆସୁ ଥିବାର ଆମ ନଜରରେ ପଡିଲା ।

ଲୀନା କହିଲା - ନାନୀ, ବୋଉ ତ ପୁ'ଣି କଅଣ ଇଆଡେ ଆସିଲେଣି । ଆଉ କଅଣ ବାପାଙ୍କୁ କିଛି କହିବେକି ?

ମୁଁ କହିଲି - ନାଇଁ ମଁ ! ବାପା ତ ଖାଇ ବସିଲେଣି । ଏବେ ଆଉ ସିଏ ପାଟି କଲେ କିଏ ଶୁଣୁଛି ତା କଥା ?

ଆମ କଥାବାର୍ତ୍ତା ଭିତରେ ବୋଉ ଆସି ପହଞ୍ଚିଯାଇଥିଲା ଆମ ପାଖରେ । ହାତରେ ତା'ର ସାନ କଂସା ଥାଳିଆଟିଏ ଏବଂ ସେ ଥାଳିଆରେ ଦୁଇଟି ସୁନ୍‌ପାମ୍‌ଡିର ଟିକିଆ ଓ କିଛି ଅଙ୍ଗୁର କୋଳି । ଅଙ୍ଗୁରକୋଳି ମୁଁ ସାଥିରେ ଆଣିଥିଲି ଆସିଲାବେଳେ ।

ବୋଉ ଗମ୍ଭୀରଭଙ୍ଗୀରେ ଏବଂ ମୁହଁରେ ପ୍ରୟାସଜନିତ ଏକପ୍ରକାର ଭାବଲେଶହୀନ ଅଭିବ୍ୟକ୍ତି ଆଣି ଥାଳିଆଟି ଦୁମ୍ କରି କଚାଡି ରଖିଲା ବାପାଙ୍କ ସାମ୍‌ନାରେ ।

ବାପା କହିଲେ - ଯାକୁ ସବୁ କିଏ ଆଣିଲା ?

- କିଏ ଆଉ ଆଣିବ ? ତମରି ଗେହ୍ଲା ଝିଅମାନେ । ମୋ'ପାଇଁ ପଛେ ବିସ୍କୁଟପ୍ୟାକେଟ୍‌ଟେ ଆଣିବାକୁ କାହାରି ମନେପଡିବନି । ହେଲେ ବାପ ପାଇଁ ଗୁଳ୍‌ଗୁଳ୍ କରି ଜିନିଷ ବୋହି ଲାଗିଥିବେ । କିଏ କମ୍‌ପ୍ଲାନ୍ ଟିଣ ଆଣିଲାଣି ତ କିଏ ମିଠାଦହି । କିଏ ବା ପାଞ୍ଚଟଙ୍କିଆ ରସଗୋଲା । ତମେ ଇ ଏକା ପୁଣ୍ୟ କରିଥିଲ ଦେଖୁଛି । ମୋ' ବାପା ମା' ସତେ ଅବା ମତେ ଗୋଟେଇ ଆଣିଥିଲେ କେଉଁଠୁ ।

କଥା କହୁ କହୁ ବୋଉର ଅଚାନକ ବାପାଙ୍କ ଥାଳିରେ ବଢ଼ା ହୋଇଥିବା ଭାତ ଉପରେ ନଜର ପଡିଲା । "ଏତେ କମ୍ ଭାତ ଦେଇଛୁ ଯେ ତୋ ବାପାଙ୍କୁ," ବୁଲିପଡି ପଚାରି ବ୍ସିଲା ଲୀନାକୁ । ଉତ୍ତରଟି କିନ୍ତୁ ଲୀନା ବଦଳରେ ବାପା ଇ ଦେଇଦେଲେ । କହିଲେ - ନାଇଁ, ନାଇଁ । ମୁଁଇ ଲୀନାକୁ କହିଲି ମୋତେ ଯୋଡିଏ ନାଆଁକୁ ଅନ୍ନ ଦେବା ପାଇଁ । ବେଶୀ ହେଲେ ଖାଇପାରିବିନି ।

- ଏ ଭାଷା କଅଣ ତମ ମା'ଙ୍କଠୁ ଶିଖିଚ ? ସିଏ ଯେମିତି ଖାଇବେ ଥାଳିଏ, ଆଉ କହି ଲାଗିଥିବେ ମୋତେ ଯୋଡିଏ ଭାତ ଦେବୁ, ଯୋଡିଏ । ଯେମିତି ମା', ସେମିତି ପୁଅ । କହୁ କହୁ ଢାଳିଚଟୁରେ ଚଟୁଏ ଭାତ ଆଣି ବାପାଙ୍କର ବାରମ୍ୱାର ବାରଣ ସତ୍ତ୍ୱେ ବୋଉ ଜବରଦସ୍ତ ତାଙ୍କ ଥାଳିରେ ଅଜାଡି ଦେଲା । ତା'ପରେ ଗ୍ୟାସ୍ ଉପରେ ବସିଥିବା କ୍ଷୀର ଡେକ୍‌ଚିରୁ ଗିନେ ସରମିଶା କ୍ଷୀର ଆଣି ବାପାଙ୍କ ପାଖରେ ଥୋଇ ଦେଇ କହିଲା - ସେ ଡାଲି ପୂରା ଥଣ୍ଡା ହୋଇଗଲାଣି, ତମେ ଖାଇପାରିବନି । ତାକୁ ରଖିଦେଇକି ଏଇ ଉଷୁମ କ୍ଷୀର ଗୋଳେଇ ଗୋଳେଇକି ଭାତ ଖାଇଦିଅ ।

ବାପା କହିଲେ - ନାଇଁ ମଁ । ତମେ ଡାଇବେଟିସ୍ ରୋଗୀ । ଭାତ ନଖାଇ ରୁଟି ଖାଉଛ । କ୍ଷୀର ଟକ ବରଂ ଥାଉ । ତମେ ରୁଟି ବୁଡେଇକି ଖାଇବ ।

-ଆ ହା, ହା ହା । ଯିଏ ଶୁଣିବ କହିବ ସ୍ତ୍ରୀ ପାଇଁ କି ଦରଦ । ଏ ଦରଦ ଗୁଡାକ କେଉଁଠି ଲୁଚିକି ଥିଲା ଆଜିପର୍ଯ୍ୟନ୍ତ ? ହେଇଟି ! ମୁଁ କହିଦେଉଛି, ସେ ଡାଲି ଆଡ଼େଇ ଦେଇକି କ୍ଷୀର ଗୋଳେଇକି ଭାତ ଖାଅ । ମୁଁ ଜଗିକି ବସିଲି ଏଠି । ସେତକ ସବୁ କ୍ଷୀର ଭାତ ତମେ ଶେଷ କରିବ, ତେବେ ଯାଇକି ମୁଁ ଉଠିବି ।

ବାପାଙ୍କ ଭାତରେ ଅଧ ଗିନେ ହବ କ୍ଷୀର ଢ଼ାଳିଦେଇ ଓ ମୁହଁରେ ଏକ ତୃପ୍ତିମୟ ସୁଖୀସୁଖୀ ଭାବ ଆଣି, ବାପାଙ୍କୁ ନିର୍ନିମେଷ ନୟନରେ ଚାହିଁ ବୋଉ ତାଙ୍କ ସାମ୍‌ନାରେ ବସି ରହିଲା ।

ଲୀନା ଓ ମୁଁ ପରସ୍ପରକୁ ଚାହିଁ ମୃଦୁହସି ଆଗପଛ ହୋଇ ବାହାରି ଆସିଲୁ ରୋଷେଇଘରୁ ।



# ସ୍ୱର୍ଗାଦପି ଗରୀୟସୀ

ବୋଉର ଜନ୍ମକାହାଣୀଟି ଭାରି ଅଦ୍‌ଭୂତ । ଅବିଶ୍ୱସନୀୟ ମଧ୍ୟ ।

ପ୍ରାୟ ଅଷ୍ଟଦଶକ ପୂର୍ବର ଏକ ନିପଟ ମଫସଲୀ ଗାଁ - ଅନୁନ୍ନତ ଓ କୁସଂସ୍କାରଗ୍ରସ୍ତ । ମୁଖ୍ୟ ଘରଠାରୁ ବେଶ୍ ଦୂରରେ ବାରିର ବାଉଁଶବୁଦା, ଜଡାବଣ ଓ କଦଳୀ କିଆରୀ ପାଖରେ ଥିବା କ୍ଷୁଦ୍ର ଢ଼ିଙ୍କିଶାଳଟି ହେଉଥିଲା ଅନ୍ତୁଡ଼ିଘର । ତାଙ୍କର ତୃତୀୟ ସନ୍ତାନଟିକୁ ଆଈ ଜନ୍ମ ଦେଇଥିଲେ ସେଇଠି ।

ଶିଶୁଟିର ଜନ୍ମଦିନ ପରର ଘଟଣା । ସନ୍ଧ୍ୟା ଉତ୍ତୀର୍ଣ୍ଣ ହୋଇଛି । ଗାଁ ଉପରକୁ ଓହ୍ଲାଇ ଆସିଛି ନିଶୂନ୍‌ରାତିର ଥକ୍‌ଥକ୍ ଜମାଟବନ୍ଧା ଅନ୍ଧକାର । ଢ଼ିଙ୍କିଠାରୁ କିଯତ୍ ଦୂରରେ, ଠିକ୍ ଦରଜାପାଖରେ କନ୍ଥାଘୋଡ଼ି ହେଇ ଶୋଇଛନ୍ତି ଆଈ । ପାଖରେ ନବଜାତକଟି । ବାରିପାଖ କଲରାବୁଦା ତଳୁ ନାଗସାପଟିଏ ବାହାରି, କନ୍ଥାଘୋଡ଼ି ହୋଇ ଶୋଇଥିବା ଆଈ ତଥା ଶିଶୁସନ୍ତାନଟିର ପେଟ ଉପରେ ସର୍ ସର୍ କରି ଚାଲି, ପ୍ରବେଶ କଲା ଘରଭିତରେ ଏବଂ ସେଇ ଚରମ ଭୟଭୀତ ମୁହୂର୍ତ୍ତରେ ଏକରକମ ଜ୍ଞାନଶୂନ୍ୟ ହେଇ ଆଈ ବାହାରିଆସିଲେ ପଦାକୁ । ବାହାରେ ଠିଆ ହେଇ ଚାହିଁଲାବେଳକୁ ସାପଟି ଶିଶୁଟିର ମୁଣ୍ଡପାଖରେ ଥିବା କାଠଖୁଣ୍ଟରେ ଗୁଡ଼େଇ ହେଇ ଏବଂ ଫଣାଟି ଠିକ୍ ଶିଶୁଟିର ମୁଣ୍ଡଉପରେ ଟେକି ନିଶ୍ଚଳଭାବରେ ବସିରହିଛି ସେ ପ୍ରାୟାନ୍ଧକାର ଘର ଭିତରେ । ଆଖିର ମଣିଦୁଇଟି ତାର ଚକ୍ ଚକ୍ କରୁଛି ଦୀପାଲୋକରେ ।

ସାପଟିକୁ ଦେଖି ଏକରକମ ସ୍ୱୟଂଚାଳିତ ଅବସ୍ଥାରେ ଏବଂ ବିଚାରଶକ୍ତି ରହିତ ହେଇ ଆଈ ପଳାଇ ଆସିଥିଲେ ବାହାରକୁ । ସର୍ପାଘାତର ଭୟରେ ବୁଦ୍ଧି ହେଇଯାଇଥିଲା ଜଡ଼ । ସେଇ ମୁହୂର୍ତ୍ତରେ ଶିଶୁଟିକୁ ଉଠାଇ କୋଳରେ ଧରି ଆସିବା ପାଇଁ ତାଙ୍କ ନିଷ୍କ୍ରିୟ ମସ୍ତିଷ୍କଟି ତାଙ୍କୁ ଆଦେଶ ଦେବାପାଇଁ ଭୁଲିଯାଇଥିଲା । ବର୍ତ୍ତମାନ କିନ୍ତୁ ଘଟଣାଟିର ଭୟାବହତା ହୃଦୟଙ୍ଗମ କରି କାନ୍ଦିବାକୁ ଲାଗିଲେ । ଜଡ଼ ହେଇଗଲେ ସାଇପଡ଼ିଶା, ଭାଇବନ୍ଧୁ କୁଟୁମ୍ବ । ସଭିଏଁ ତଟସ୍ଥ, ସଭିଏଁ ନିର୍ବାକ୍ ।

ଏହା ଅବଶ୍ୟ ସର୍ବଜନବିଦିତ ଯେ ସର୍ପ ଦଂଶନ କରେ କେବଳ ଆତ୍ମରକ୍ଷା ପାଇଁ । ପୁରୁଣାଲୁଗାରେ ଆବୃତ ହୋଇ ନିଦ୍ରା ଯାଇଥିବା ଶିଶୁଟି ଦିଶୁଥିଲା ଗୋଟିଏ କନାପୁତୁଳି ପରି ଏବଂ ସର୍ପର କ୍ରିୟାକଳାପରେ କୌଣସି ପ୍ରକାର ବାଧା ସୃଷ୍ଟି କରୁନଥିଲା । ତେଣୁ ତାକୁ ଆକ୍ରମଣ କରିବା କଥା ସ୍ୱାଭାବିକ୍ ଭାବରେ ସାପଟିର ମନକୁ ଆସିନଥିଲା । ଭୟ ଥିଲା ଶିଶୁଟି ନିଦ୍ରାରୁ ଉଠି ହଲ୍‌ଚଲ୍ ହେଲେ କିମ୍ବା

ହାତଗୋଡ଼ ଛାଟି କାନ୍ଦିଲେ । ଭୟ ଥିଲା ତାହେଲେ ତାର ଗତିଶୀଳ ଶରୀରଟି ନିଶ୍ଚିତରୂପେ ସର୍ପକୁ ଆକର୍ଷଣ କରିବ । ଏଇ ପରିସ୍ଥିତିରେ ଘର ଭିତରେ ପଶି ଶିଶୁଟିକୁ ଆଣିବା କାମଟି ମଧ୍ୟ ଥିଲା ଦୁରୂହ । ଶିଶୁଟିକୁ ରକ୍ଷା କରିବାର କୌଣସି ବାଟ ତେଣୁ କାହାରି ମୁଣ୍ଡକୁ ଜୁଟିଲାନି ।

ଶେଷକୁ ବୁଦ୍ଧି କାଢ଼ିଲେ ଅଜାଙ୍କର ଯୁବାବୟସୀ ସାନଭାଇ ସନାତନ । ଗଜାଟୋକା, ଶକ୍ତିମାନ୍ ଶରୀର । ବାହାରେ ଅନ୍ଧାରୁଆ ଜାଗାରେ ଥିଇର୍ କି ଛିଡ଼ାହେଇ ସତର୍କତାର ସହିତ ହାତ ବଢ଼ାଇ ଧରିଲେ ଦରଜାପାଖରେ ଶୋଇଥିବା ଶିଶୁଟିର ପାଦର ବୃଦ୍ଧାଙ୍ଗୁଷ୍ଠି । ଏବଂ ତା'ପରେ ଧୀରେ ଧୀରେ ସମଗ୍ର ପାଦଟି । ବାହାରେ କାନିପାତି ଅର୍ଦ୍ଧବୃତ୍ତାକାରରେ ଠିଆହେଇ ରହିଲେ ମହିଳାଗଣ । ସନାତନ ଓର ଦେଖି ଗୋଟିଏ ଝଟ୍କାରେ ଶିଶୁଟିକୁ ଟାଣି ଫିଙ୍ଗିଦେଲେ ବାହାରକୁ । ସମୟ ନେଇଥିଲା ଗୋଟିଏ ମୁହୂର୍ତ୍ତର ଭଗ୍ନାଂଶ ମାତ୍ର । ଘଟଣା କଅଣ ସାପଟି ବୁଝିବା ପୂର୍ବରୁ, ଶିଶୁଟି ତା ସମ୍ମୁଖରୁ ହୋଇଥିଲା ଗାୟବ୍ । ଶିଶୁଟି ଯାଇ ପଡ଼ିଲା ବାଟଜଗି ଧାଡ଼ିବାନ୍ଧି ଠିଆ ହେଇଥିବା ଜଣେ ମହିଳାଙ୍କ କୋଳରେ । ସାପଟିକୁ ଲାଠିରେ ପିଟି ମାରିଦେବା, ଯା' ପରେ ବେଶ୍ ସହଜସାଧ ହୋଇପଡ଼ିଥିଲା ।

ଘଟଣାଟି ଅତିମାତ୍ରାରେ ନାଟକୀୟ, କିନ୍ତୁ ନିରାଟ ସତ । କାହାଣୀଟି କେବଳ ବୋଉ ମୁହଁରୁ ନୁହେଁ, ଅଜାଘରେ ସଭିଙ୍କ ମୁହଁରୁ ବାରମ୍ବାର ଶୁଣିଛି । ଚମତ୍କାର ନାଁଟିଏ ଥିଲା ବୋଉର - ସୁରେଖା । କିନ୍ତୁ ଅଜାଘରର ଅନେକ ବୟୋଜ୍ୟେଷ୍ଠ ବ୍ୟକ୍ତି ବୋଉକୁ ସ୍ନେହରେ ଡ଼ାକୁଥିଲେ ସାପୋଇ – ଶୈଶବରେ ସାପ ତା' ମୁଣ୍ଡଉପରେ ଫଣା ଟେକିଥିବା ହେତୁ । ବୋଉ ରାଗିଗଲେ ସବୁବେଳେ ଆମକୁ ଓ ବାପାଙ୍କୁ କହୁଥିଲା - ତମେ ସବୁ ମତେ କଅଣ ବୋଲି ପାଇଚକି ? ଖୋଦ୍ ନାଗସାପ ଫଣାଟେକି ମତେ ଜଗିଥିଲା । ମୋ' ରାଗ ତମେ ଜାଣିନ" ।

ନାଗସାପ ଫଣା ଟେକିଥିବା ହେତୁ ହେଉ, କିମ୍ବା ଜନ୍ମଗତ କାରଣରୁ ହେଉ, ବୋଉ ଥିଲା କିନ୍ତୁ ବଦ୍‌ରାଗୀ । ପିଲାଦିନେ ଦେଖିଛି, ବାପାଙ୍କ ଉପରେ ବେଳେ ବେଳେ ବେଶ୍ ରାଗିଯାଉଥିଲା । ସେତେବେଳେ ବାପାଙ୍କ ସପକ୍ଷରେ ଯୁକ୍ତି ବାଢ଼ୁଥିଲି । କିନ୍ତୁ ବଡ ହୋଇ ବୁଝିଲି - ବୋଉର ସେ ରାଗ ଥିଲା ଯଥାର୍ଥ । ବାପା ଥିଲେ ସଂସାର ପ୍ରତି ପୂର୍ଣ୍ଣମାତ୍ରାରେ ନିସ୍ପୃହ । ପୋଥିପୁସ୍ତକ ବ୍ୟତୀତ ଅନ୍ୟ କିଛି ବୁଝୁନଥିଲେ । ବସ୍ତୁତଃ ସଂସାରର ସମସ୍ତ ଦାୟିତ୍ୱ ବୋଉକୁ ହିଁ ତୁଲାଇବାକୁ ପଡୁଥିଲ । ବୋଉ ବେଳେବେଳେ ବ୍ୟତିବ୍ୟସ୍ତ ହୋଇ ଯାଉଥିଲା ସେଥିରେ । ବୈରାଗୀ ମଣିଷଟିଏ ନେଇ ଘର କରିବା ପାଇଁ ଛାତିରେ ବେଶ୍ ଦମ୍ଭ ଦରକାର ।

ସାରା ଜୀବନ ବକରବକର୍ ହେଉଥିବା ମୁଖରା ମଣିଷଟି କିନ୍ତୁ ମୃତ୍ୟୁର ପ୍ରାୟ ଦେଢବର୍ଷ ଆଗରୁ ପୂରାପୂରି ଚୁପ୍ ହୋଇଗଲା । ବାପାଙ୍କୁ ସେତେବେଳେ ନବେବର୍ଷ ଓ ବୋଉ ପଞ୍ଚସ୍ତରି ଟପିଛି । ଷ୍ଟ୍ରୋକ୍ ହୋଇ ବୋଉର ଗୋଟିଏ ପଟ ଅଙ୍ଗ ପ୍ରତ୍ୟଙ୍ଗ ହୋଇଗଲା ପକ୍ଷାଘାତ ଗ୍ରସ୍ତ । ଦିନେ ବାପାଙ୍କୁ ଡାକି କହିଲା "ତମେ ତ ଜଣେ ସାଧୁପୁରୁଷ ବୋଲି ଲୋକେ କହନ୍ତି । ଦେବତା ଭଳିଆ । ମତେ କହିଦିଅ - ମୁଁ ଜୀବନରେ କି ପାପ କରିଥିଲି ଯେ ଏଭଳି କଷ୍ଟ ପାଉଛି" । ବାପା କିଛି ସମୟ ଆଖିବୁଜି ଧ୍ୟାନମଗ୍ନ ହୋଇ ବସିଲେ । ତା'ପରେ କହିଲେ "ତୁମେ ବିଶ୍ୱାସ କର । ତମେ ଭାରି ଭଲମଣିଷଟିଏ । ଜୀବନରେ କୌଣସି ନିଷିଦ୍ଧ କାମ କରିନ । କିନ୍ତୁ ବେଳେବେଳେ କ୍ରୋଧିତ ହୋଇ ମୋତେ ବିଚାରିପଦ କଥା କହିଚ । ସେଇଟା ତମର କରିବା ଉଚିତ୍ ନଥିଲା । ଏହାପରେ ବାପାଙ୍କୁ ଆଜ୍ଞା, ଆପଣ କରି କଥା କହିବାକୁ ଲାଗିଲା ବୋଉ - ଆଜ୍ଞା, ଆପଣ ଭାତ ଖାଇଲେଣି ନା ନାହିଁ ? ବାହାରେ ନବୁଲି ଖଟରେ ଆସି ଶୋଇ ପଡନ୍ତୁ ଇତ୍ୟାଦି ଇତ୍ୟାଦି । ବୋଉର ଏତାଦୃଶ ବାର୍ତ୍ତାଳାପ ଆମ୍ଭମାନଙ୍କୁ କିଛିଟା ହସର ଖୋରାକ୍ ଯୋଗାଇଲା ମଧ୍ୟ ।

ତା'ପରେ ଦିନେ ଅଚାନକ ବୋଉର ଅବସ୍ଥା ହୋଇଉଠିଲା ସାଂଘାତିକ, ନିଃଶ୍ୱାସ ନେବାରେ ଅସମ୍ଭବ କଷ୍ଟ । ଆମ୍ବୁଲାନ୍ସ୍ ଡାକି ନର୍ସିଂହୋମ୍‌କୁ ନେବାର ବନ୍ଦୋବସ୍ତ କରିବାକୁ ବାଧ୍ୟ ହେଲୁ । ବିଛଣାରୁ ଟେକି ବୋଉକୁ ଷ୍ଟ୍ରେଚରରେ ନେଲାବେଳେ ହଠାତ୍ ପିଣ୍ଡାରେ ବାପାଙ୍କୁ ଠିଆ ହୋଇଥିବାର ଦେଖି ବୋଉ ଷ୍ଟ୍ରେଚରଟି ତଳେ ରଖିବା ପାଇଁ ଠାରିଲା ଏବଂ ଷ୍ଟ୍ରେଚରଟି ବାପାଙ୍କ ନିକଟରେ ରଖିବା ପରେ, ଚଳପ୍ରଚଳ ହେଉଥିବା ଡାହାଣ ହାତଟି ବଢ଼ାଇ ବାପାଙ୍କର ଚରଣ ସ୍ପର୍ଶ କଲା । ତା' ଜୀବନକାଳ ଭିତରେ ସେଇ ବୋଧହୁଏ ବାପାଙ୍କୁ ବୋଉର ପ୍ରଥମ ପ୍ରଣାମ - ଏବଂ ଶେଷ ମଧ୍ୟ ।

ନର୍ସିଂହୋମ୍‌ରେ ପହଞ୍ଚି ସାରିଲା ପରେ ଇ ଆଖିବୁଜିଲା ବୋଉ । ଘରକୁ ନେଇ ଆସିଲୁ ତାକୁ । ମୋ ଭାଇ ବାପାଙ୍କୁ କହିଲା "ବାପା, ବୋଉ, ଚାଲିଗଲା" । ବାପା କିଛି ବୁଝି ପାରିଲେନି । କହିଲେ "ଆଉ ଟିକିଏ ଭଲ ଡାକ୍ତର ଦେଖାଅ । ବୋଉ ନିଶ୍ଚୟ ସୁସ୍ଥ ହୋଇଯିବେ" । ଦାଣ୍ଡରେ ଅନ୍ତ୍ୟ ଡେଙ୍ଗୁରା ବାଜିଲା, ହଳଦୀପାଣିରେ ଗାଧେଇ ବୋଉ ପିନ୍ଧିଲା ରଂଗ ଟହଟହ ନାଲି ଶାଢ଼ୀ । ବାପାଙ୍କୁ ଆମେ ଧରି ଧରି ନେଇ ଆସିଲୁ ବୋଉକୁ ସିନ୍ଦୂର ପିନ୍ଧାଇ ଦେବାପାଇଁ । ନୂଆ ସିନ୍ଦୂର ପୁଡିଆ ଖୋଲି, ବାପା ବୋଉର ଧୋବଫରଫର ପାଚିଲାବାଳ ଆଡ଼େଇ ସୁନ୍ଥାରେ ସିନ୍ଦୂର ଭରିଦେଲେ । ବାପାଙ୍କ ହାତଥରି କିଛି ସିନ୍ଦୂରଗୁଣ୍ଡ ଖସିପଡ଼ିଲା ବୋଉ କପାଳରେ । ବାପା ତାକୁ ଲିପିଦେଲେ କପାଳ ସାରା । ଚିରନିଦ୍ରାରେ ଶୋଇଥିବା ବୋଉର ହାତଟି ଥିଲା ତା

ଛାତି ଉପରେ । ଆଶ୍ଚର୍ଯ୍ୟ କଥା - ଠିକ୍ ଏତିକିବେଳକୁ ଛାତିରୁ ହାତଟି ଖସି ପଡ଼ିଲା ଯାଇ ବାପାଙ୍କ ପାଦ ଉପରେ । ବାପାଙ୍କର ମସ୍ତିଷ୍କ ଥିଲା ଧୂମାୟିତ । ଠିକ୍ କରି କଣ ଘଟୁଛି ବୁଝି ପାରୁ ନଥିଲେ । ଆମେ ଆଣି ବାପାଙ୍କୁ ବିଛଣାରେ ଶୁଆଇ ଦେଲୁ । ଗୁଚ୍ଛ ଗୁଚ୍ଛ ଲାଲ୍ ଗୋଲାପରେ ବୋଉକୁ ରାଜରାଣୀ ବେଶରେ ସଜାଇ ପୁଅମାନେ ବୋହି ନେଇଗଲେ ସ୍ୱର୍ଗଦ୍ୱାର ।

ଅସ୍ଥିକଳସ ନେଇ ମୋ ଭାଇମାନେ ଫେରୁ ଫେରୁ ସକାଳ । ତୁଳସୀ ଚଉରା ପାଖରେ କଳସଟି ମାଟିରେ ପୋତିଲା ବେଳେ ବାପା ବାଡିଟି ଧରି ଧୀରେ ଧୀରେ ଚାଲିକି ଆସି ପିଣ୍ଡାକଡରେ ଠିଆହେଲେ । "କଅଣ କରୁଛ ସେଠି" ? ପଚାରିଲେ ମୋ ଭାଇକୁ । "ଏଇଟା ପରା ବୋଉର ଅସ୍ଥି ବାପା ! ପରେ ସୁବିଧା ଦେଖି ନେଇକି ସଙ୍ଗମରେ ପକେଇଦେଇ ଆସିବୁ" । ଭାଇ ଉତ୍ତର ଦେଲା । ହଠାତ୍ ବାପାଙ୍କ ମସ୍ତିଷ୍କରେ ଜମା ହୋଇଥିବା ବୁଢ଼ିଆଣୀ ଜାଲ ସବୁ ସଫା ହୋଇଗଲା ଅବା । ବାପା ବୁଝି ପାରିଲେ ବୋଉ ଆଉ ନାହିଁ । ବୁଝିପାରିଲେ ଏକାନବେ ବର୍ଷରେ ତାଙ୍କୁ ଏକୁଟିଆ ସାହାହୀନ ଭାବରେ ଛାଡ଼ି ବୋଉ ବିଦାୟ ନେଇଛି ତାଙ୍କଠୁ । ବାପା କହିଲେ "ମୋତେ ନଜଣେଇ କାହିଁକି ନେଇଗଲ ବୋଉକୁ ? ଆଗରେ ଖଇ କଉଡି ବିଞ୍ଚି ବିଞ୍ଚି ମୁଁ ଯେ ଯାଇଥାଆନ୍ତି ତାଙ୍କ ସାଥିରେ ।" ବାପାଙ୍କର ଗଳା ବାଷ୍ପରୁଦ୍ଧ ହେଲା । ଆଉ କଥା କହିପାରିଲେନି - ଥକା ହୋଇ ବସିପଡ଼ିଲେ ଆରାମଚୌକୀରେ । ଆମେ ସବୁ ଚକିତ ହୋଇ ବାପାଙ୍କୁ ଚାହିଁଲୁ । ବାପାଙ୍କ ପେଚୁଆ ଆଖିରୁ ଆଷାଢ଼ର ଧାର ନିଗିଡି ଆସୁଥିଲା ।



# 'ଭାଇ'

ସିଏ ଜନ୍ମ ହୋଇଥିଲା ହରିରାଜପୁର ଗାଁ'ର ମାଟିଗୋବର ଲିପା ପ୍ରାୟାନ୍ଧକାର ଢିଙ୍କିଶାଳରେ । ଗାଁ ଗହଳରେ, ଘରଠାରୁ ଈଷତ୍ ଦୂରରେ ଥିବା ଢିଙ୍କିଶାଳଟି ଅନ୍ତୁଡ଼ିଘରର କାମ ଦେଉଥିଲା । ଏକୋଇଶିଆ ଦିନଇ ନବଜାତକ ଓ ତାର ଜନନୀ - ଉଭୟ ଘରଭିତରକୁ ପ୍ରବେଶାଧିକାର ଲାଭ କରୁଥିଲେ । ତା' ପୂର୍ବରୁ ସେମାନେ ରହୁଥିଲେ ଅସ୍ପୃଶ୍ୟ ।

ବୋଉ ତା'ର ଦ୍ୱିତୀୟ ସନ୍ତାନଟିର ଜନ୍ମପାଇଁ ବାପଘରକୁ ଯାଇଥିଲା । ବାପାଙ୍କର ଭୟଥିଲା - ହୁଏତ କଟକରେ ବୋଉ ଯଥେଷ୍ଟ ଯତ୍ନ ଓ ଶୁଶ୍ରୂଷା ପାଇବନି ବୋଲି । ଘରେ ଅନ୍ୟ କେହି ବୟୋଜ୍ୟେଷ୍ଠ ବ୍ୟକ୍ତି ନ ଥିଲେ । ମୁଁ ବି ଥିଲି ନିହାତି ସାନ । ତେଣୁ ଅଜା ଯେତେବେଳେ ବୋଉକୁ ସାଥିରେ ତାଙ୍କ ଗାଁକୁ ନେଇଯିବାପାଇଁ ଇଚ୍ଛାପ୍ରକାଶ କରିଥିଲେ, ବାପା ବିନା ଦ୍ୱିଧାରେ ରାଜି ହୋଇଯାଇଥିଲେ ।

ମୋ' ଭାଇ ଜନ୍ମ ହୋଇଥିଲା ମୋ ମାମୁଁଙ୍କର ପୁଆଣିଘର ଦିନ । ମାମୁଁ ଥିଲେ ତିନିକନ୍ୟାରେ ଏକମାତ୍ର ପୁତ୍ରସନ୍ତାନ - ଭାରି ଅଲ୍ୟଳ । ପିଲାଦିନେ ବାହାଘର ହୋଇଥିଲା । ଝିଅ ବଡ଼କନିଆ ହେଲାପରେ ଆସିଥିଲା ଶାଶୁଘରକୁ । ପୁଆଣିଘର ହୋଇଥିଲା ବେଶ୍ ଜାକଜମକରେ । ଜାତି ଜାତି ଯୌତୁକ ସାମଗ୍ରୀ ଧାଡ଼ି ଧାଡ଼ି ଶଗଡ଼ରେ ଲଦି, କଇଁଫୁଲ ପରି ତୋରା ବୋହୂଟି ପହଞ୍ଚିଲା ଘରେ । ଗାଁ ଯାକ ଲୋକ ଦାଣ୍ଡରେ ବସି କ୍ଷିରୀପିଠା ଖାଉଛନ୍ତି, ଜନ୍ମହେଲା ମୋ ଭାଇ ।

- କମଳା ମା ! ସୁରେଖାର ପୁଅଟିଏ ହୋଇଚି ଲୋ ! ହେଲେ ଦୁର୍ବଳିଆଟିଏ, ରଙ୍ଗ ବି କଳା । ବୋଉ ପାଖରେ ଥିବା ଗ୍ରାମ୍ୟଧାଇଟି, କୁଆଁ କୁଆଁ ରାବଶୁଣି କବାଟପାଖେ ଅଧୀରଚିତ୍ତରେ ଅପେକ୍ଷାରତା ମୋ ଆଈଙ୍କି ପାଟିକରି ଜଣାଇ ଦେଇଥିଲା ।

- ଆଲୋ ପଛପଟକୁ ମୁହଁ ଥିଲେ ବି ଅଣ୍ଡିରିପୁଅ । କଳାଗୋରାରୁ କଅଣ ମିଳିବ ମତେ ? ଭଲକି ଦେଖିକି ଖାଲି କହ । ପୁଅ ନା ଝିଅ । ଆଈ ଜବାବ୍ ଦେଇଥିଲେ । ଧାଇଟି ଆଉଥରେ ଭଲକି ଦେଖିଥିଲା ଓ ବୋଉର ପୁତ୍ରସନ୍ତାନ ପ୍ରାପ୍ତିର ଖବରଟି ଦୋହରାଇଥିଲା । ନୂଆ ବୋହୂଟି ସମେତ୍ ସଭିଏଁ ହସିଉଠିଥିଲେ ଉଲ୍ଲାସରେ । ଭଣ୍ଡାରୀ ହାତରେ ଜେଜେବାପାଙ୍କ ପାଖକୁ ଖବର ଗଲା । ମୋ ଭାଇ ଥିଲା ଜେଜେବାପାଙ୍କର ପ୍ରଥମ ପୌତ୍ର । ସେ ପର୍ଯ୍ୟନ୍ତ ତାଙ୍କର ଅନ୍ୟ ଦୁଇଜଣ ପୁତ୍ରଙ୍କର କେବଳ ଗୋଟିଏ ଲେଖାଏଁ କନ୍ୟାସନ୍ତାନ ଥିଲେ ।

ମୋ ବୋଉ ଯେ ମୋ ଭାଇର ଏଇ ଜନ୍ମକାହାଣୀଟି କେତେଥର ବଖାଣିଛି ଆମ ଆଗରେ ତାର ଇୟତ୍ତା ନାହିଁ । ତା'ରିଠୁ ଶୁଣା ମୋ ଭାଇର ଜନ୍ମ ସମ୍ବନ୍ଧୀୟ ଆହୁରି ଅନେକ ଉପାଖ୍ୟାନ ମଧ ।

ଭାଇ ଜନ୍ମହେଲା ପରେ ଗ୍ରାମ୍ୟ ଧାଈଟି କୁଆଡ଼େ ନାହି କାଟିବା ପାଇଁ ତା ଖୋଷଣୀରୁ ଗୋଲାପି ରଙ୍ଗର ଦନ୍ତୁଡ଼ା ଶାମୁକାଟିଏ ବାହାର କରିଥିଲା । ଗାଁ ଗହଳରେ ଛୁରୀ ବା କତୁରୀର ଚଳଣୀ ନ ଥିଲା ସେତେବେଳେ । ଫୁଲନାଡ଼ କଟାହେଉଥିଲା ଅଦାନ୍ତୁଆ ଶାମୁକାଟିଏ ବ୍ୟବହାର କରି । ଏହା ଫଳରେ ପ୍ରଚୁର ରକ୍ତକ୍ଷରଣ ହୋଇ ଅନେକ ଶିଶୁ ମୃତ୍ୟୁମୁଖରେ ପଡୁଥିଲେ ମଧ । ଗ୍ରାମ୍ୟସଂସ୍କୃତି ସହିତ ପରିଚିତା ମୋ'ର ସ୍ୱାସ୍ଥ୍ୟ ସଚେତନା ବୋଉ କଟକରୁ ଗଲାବେଳେ ନୂଆ ବ୍ଲେଡ୍‌ଟିଏ କିଣିନେଇ ଯାଇଥିଲା ସାଥିରେ । ଅନ୍ତୁଡ଼ିଶାଳରେ ପଶିବା ପୂର୍ବରୁ ତାହାକୁ ଗରମପାଣିରେ ଫୁଟାଇ ରଖିଥିଲା ନିଜ ପାଖରେ । ଏବଂ ଧାଈଟିକୁ ନିର୍ଦ୍ଦେଶ ଦେଇଥିଲା ସେଇ କ୍ଷୁରରେ ନାହିକାଟିବା ପାଇଁ ।

ଅଶିକ୍ଷିତା ଧାତ୍ରୀଟି ଏତାଦୃଶ ବସ୍ତୁଟିଏ ତା' ଜୀବନରେ କେବେ ଦେଖିନଥିଲା । ନାଲି ଆଖି ଦେଖାଇ ବୋଉକୁ ଧମ୍‌କେଇଥିଲା - ଗାଁ' ଯାକର ସବୁଛୁଆଙ୍କ ନାହି କାଟିଲି ଏଇ ଶାମୁକାରେ । ଆଉ ଆଜି ତୁ ସହରିଆଣୀ ହେଇଗଲୁ ବୋଲି ମତେ ନୂଆ ପାଠ ପଢ଼େଇବାକୁ ବସିଛୁ ! ବୋଉ କିନ୍ତୁ ତା' ଜିଦ୍‌ରେ ଥିଲା ଅଟଳ । ଅଗତ୍ୟା ରାଗରେ ଗର୍ ଗର୍ ହେଉଥିଲେ ସୁଦ୍ଧା ଧାଈଟି ବ୍ଲେଡ୍ ସାହାଯ୍ୟରେ ଶିଶୁଟିର ନାହି କାଟିଥିଲା ଏବଂ ତାକୁ ପରିଷ୍କାର କରି କନାଗୁଡ଼େଇ ଶୁଆଇ ଦେଇଥିଲା ବୋଉ ପାଖରେ ।

ଅନ୍ତୁଡ଼ିଶାଳ କଣରେ ଜଳୁଥିବା କାଠଗଡ଼ର କୁହୁଡ଼ିଆ ଧୂଆଁ ଭିତର କନାଟି ଟେକି ତରୁଣୀ ବୋଉ ନିରେଖିଥିଲା ତା ଶିଶୁସନ୍ତାନଟିକୁ । କେଉଁଠି କିଛି ଖୁଣ ନାହିଁ ତ ! ଶିଶୁଟି ଅବଶ୍ୟ ଥିଲା ଭାରି କମନୀୟ । ବର୍ଣ୍ଣରେ ସାବନ । ନାକନକ୍ସା ଚମତ୍କାର ଓ ନିଖୁନ୍ । ଶିଶୁଟି କିନ୍ତୁ ଯେତେବେଳେ ହତାଗୋଡ଼ଛାଟି କାନ୍ଦିବାକୁ ଆରମ୍ଭ କଲା, ତା ଗୋଡ଼ ଦୁଇଟି ଆଣ୍ଠୁପାଖରେ ଜାକି ହୋଇ ରହିଥିବାର ବୋଉ ଲକ୍ଷ୍ୟ କଲା । ଏବଂ ତାର ସାଙ୍ଗେ ସାଙ୍ଗେ ମନେପଡ଼ିଲା ଗର୍ଭାବସ୍ଥାରେ ସିଏ ପେଟରେ ପାଇଥିବା ଏକ ଆଘାତର କଥା । ସନ୍ଦେହ କଲା, ହୁଏତ ଇଏ ସେଇ ଆଘାତର ଫଳ ।

ଦୁର୍ଘଟଣାଟି ଘଟିଥିଲା ଏଇଭଳି । ଆମ କଟକ ବଗିଚାରେ ଦୁଇଟି ପିଜୁଳି ଗଛ ଥିଲା । ଫଳ ଫଳୁଥିଲା ପ୍ରଚୁର । ବଡ଼ ବଡ଼ ରସାଳ, ସୁସ୍ୱାଦୁ ଫଳମାନ । କିନ୍ତୁ ବାନରଦଳଙ୍କର ଆକ୍ରମଣରେ ଗୋଟିଏ ବି ଫଳ ରହୁନଥିଲା ଗଛରେ । ଦିନଟିଏ ମାଙ୍କଡ଼ଦଳକୁ ଘଉଡ଼ାଇବା ପାଇଁ ହାତରେ ଲାଠିଟିଏ ଧରି, ବୋଉ ସାହସ କରି

ଅଗ୍ରସର ହେଉଥିଲା ପିଜୁଳିଗଛଆଡ଼େ । ବୋଉକୁ ଦେଖି ଦଳକଯାକ ବାନର ପଳାୟନ କରିଥିଲେ । କିନ୍ତୁ ତନ୍ମଧ୍ୟରୁ ବୟୋଜ୍ୟେଷ୍ଠ ବୃହଦାକାର ହନୁମାଙ୍କଡ଼ଟି ହିଂସ୍ର ମୁଖଭଙ୍ଗୀ କରି ଚିହିଁକି ଆସିଥିଲା ବୋଉଆଡ଼େ । ବୋଉ ବିପନ୍ନ ବୋଧକରି ଦୌଡ଼ିଆସିଲାବେଳକୁ, ପେଟପାଖରେ ଧକ୍କା ଖାଇଥିଲା ବାରିମଝିରେ ଥିବା କୂଅଟିର ଉଞ୍ଚବାଡ଼ ଦେହରେ । ଏହା ଅବଶ୍ୟ ଏଭଳି କିଛି ଭୟପ୍ରଦ ଘଟଣା ନଥିଲା ଏବଂ ବୋଉ ଏହାକୁ ସଂପୂର୍ଣ୍ଣ ରୂପେ ଭୁଲିଯାଇଥିଲା । କିନ୍ତୁ ଶିଶୁଟି ଗୋଡ଼ ସଳଖୁନଥିବା ଦେଖି ତାର ଏବେ ମନେପଡ଼ିଯାଇଥିଲା କେଇମାସ ତଳର ସେ ଦୁର୍ଘଟଣାଟିର କଥା ।

ଗ୍ରାମ୍ୟ ପରିବେଶ । ସହରଠାରୁ ଦୂର । ଡ଼ାକ୍ତର ପରାମର୍ଶ ପାଇବା ଥିଲା ଅସମ୍ଭବ । ବୋଉର ବିବ୍ରତ ମସ୍ତିଷ୍କ କିନ୍ତୁ ଉପାୟ ଖୋଜିବୁଲିଲା ତ୍ୱରାନ୍ୱିତ ଗତିରେ । ଆଇଙ୍କୁ କହିଲା ଦୁଇଟି ଚିକ୍କଣ ହୋଇ ଚନ୍ଛାହୋଇଥିବା ସାନ ସାନ ବାଉଁଶପାତିଆ ଯୋଗାଡ଼ କରିଦେବାପାଇଁ । ଗାଁରେ ଘରେ ଘରେ ବାଉଁଶବୁଦା । ପାତିଆ ଯୋଡ଼ିଏ ସଂଗ୍ରହ ହେଇଗଲା ନିମିଷକରେ । ବୋଉ ଶିଶୁଟିର ଗୋଡ଼ ସିଧାକରି, ଚାଖଣ୍ଡେ ଲମ୍ବର ସରୁ ବାଉଁଶ ପାତିଆଟି ତା ଆଣ୍ଠୁପାଖରେ ଲଗାଇ, ତା ଉପରେ ଶାଢ଼ୀଚିରା ଧୋବକନାର ହାଲ୍‌କା ବ୍ୟାଣ୍ଡେଜ୍‌ଟିଏ ଭିଡ଼ିଦେଲା ଯତ୍ନକରି । ଦୁଇଦିନ ଉତାରୁ ବ୍ୟାଣ୍ଡେଜ୍‌ଟି ଖୋଲିଲାବେଳକୁ ଗୋଡ଼ଦୁଇଟି ସଳଖି ଯାଇଥିଲା । ପୁତ୍ରସନ୍ତାନଟିକୁ ନିରେଖି, ବୋଉର ଅହେତୁକ ମନଃପୀଡ଼ା ବି ଦୂର ହେଇଗଲା ଅଚିରେ । ଛାତି ଭିତର ଟଳମଳ ହେଇଉଠିଲା ବାତ୍ସଲ୍ୟର ପ୍ଲାବନରେ ।

ସେଇ ଭାଇଟି କାଳକ୍ରମେ ବଡ଼ ହେଲା । ଏବଂ ତା ସହିତ ମୁଁ ବି । ଥିଲୁ ତଳଉପର ଭାଇଭଉଣୀ । ପିଲାଦିନୁ ଦିହିଙ୍କ ଭିତରେ ମାଡ଼ଗୋଳ, କଳିକଜିଆ । ମତେ ଦେଖିଲେଇ ଲାଗିଯାଉଥିଲା ମୋ ସହିତ । ଥିଲା ହାସ୍ୟରସିକ ଓ ମଉଜିଆ ।

କେଇବର୍ଷ ତଳେ, କଟକରେ ଆମର ଜଣେ ପଡ଼ୋଶୀ ବୃଦ୍ଧାଙ୍କର ମୃତ୍ୟୁ ଘଟିଥିଲା । ଯାଇଥିଲି ଶେଷଦର୍ଶନ ପାଇଁ । ଏବଂ ଏକ ଅଭୂତପୂର୍ବ କାରୁଣ୍ୟର ଦୃଶ୍ୟ ଦେଖିଥିଲି ସେଠି । ଖବରପାଇ ଦୁଇଘଣ୍ଟା ପରେ ପାଖ ଗାଁ'ରୁ ଆସି ପହଞ୍ଚିଥିଲେ ସେ ବୃଦ୍ଧାଙ୍କର ପକ୍ୱକେଶ ଓ ଲୋଳଚର୍ମର ସାନଭାଇଟି । ପହଞ୍ଚିଯାଇ ଚିରନିଦ୍ରିତା ନାନୀର ପାଦଦୁଇଟି ଜାବୁଡ଼ି ଧରି ତା ଉପରେ ମଥାଲୁଚାଇ କାନ୍ଦିଥିଲେ । କହିଥିଲେ - ପିଲାଦିନୁ କେତେ କଳିକଜିଆ, କେତେ ମାଡ଼ଗୋଳ । ସବୁ ଭୁଲି ଆଜି ଆଗରୁ ବାଟକାଟି ଚାଲିଗଲୁ କେମିତି ?

ଦୃଶ୍ୟଟି ମନରେ ଦାଗ କାଟିଥିଲା । ଏବଂ ଘରକୁ ଆସି ତାହା ବୋଉକୁ କହିଥିଲି । ଭାଇ ପାଖରେ ବସି ପାନ ଭାଙ୍ଗୁଥିଲା । ମୁରକି ହସି କହିଲା - ନାନୀ !

ତୁ ଏସବୁ କଥା ମତେ ଶୁଣେଇ ଶୁଣେଇ କହୁଛୁ, ନା ? ଭାବୁଛୁ ବୋଧେ ତୁ ଚାଲିଗଲାବେଳକୁ ମୁଁ ଯାଇ ତୋ ପାଖରେ ଏମ୍ତି ବସି କାନ୍ଦିବି ଓ ଏଇ ଡ଼ାଇଲଗ୍ କହିବି । ଭୁଲିଯା, ଭୁଲିଯା । ଏସବୁ କିଛି ମୁଁ ନ କରେ ।

- ମୁଁ ଜାଣେ ତୁ ଠିକ୍ ଏଇଆ ଇ କରିବୁ । ଏମ୍ତି କାନ୍ଦିବୁ ଓ ଏଇ ଡ଼ାଇଲଗ୍ କହିବୁ । ଦୃଶ୍ୟଟି ଯେ ହୁବହୁ ମୋ ମନଶ୍ଚକ୍ଷୁରେ ଦେଖିପାରୁଚି ମୁଁ ଏବେ । ମୁଁ ମୃଦୁହସି ଜବାବ୍ ଦେଇଥିଲି ।

ଆଶ୍ଚର୍ଯ୍ୟ କଥା । ମୁଁ ସେତେବେଳେ ମୋ ମନଶ୍ଚକ୍ଷୁରେ ଦେଖିଥିବା ସେ ଦୃଶ୍ୟଟିର ଅବିକଳ ପୁନରାବୃତ୍ତି ଘଟିଲା ଏବେ । ଡ଼ାଇଲଗ୍ ବି ଥିଲା ସେଇଆ । ଖାଲି ଯାହା ମୁଖ୍ୟପାତ୍ର ଦୁଇଟି ସ୍ଥାନ ପରିବର୍ତ୍ତନ କରିଥିଲେ ପରସ୍ପର ଭିତରେ । ମୋ ଭାଇ ଜାଗାରେ ଥିଲି ମୁଁ ଓ ମୋ ଜାଗାରେ ଥିଲା ମୋ ଭାଇ । ବିଗତ ସରସ୍ୱତୀ ପୂଜାଦିନ ଅଚାନକ୍ ହାର୍ଟଆଟାକ୍‌ରେ ପ୍ରାଣ ହରାଇଥିବା ମୋ ସାନଭାଇଟିର ମୁଣ୍ଡକୁ ଆଉଁଷି ମର୍ମନ୍ତୁଦ ଯନ୍ତ୍ରଣାରେ ଛଟପଟ ହେଇ ମୁଁ କହିଥିଲି ସେଇ ଏକା ଡ଼ାଇଲଗ୍, ଯାହା କି ଭବିଷ୍ୟତରେ କେବେହିନେ ତା ଠାରୁ ଶୁଣିବି ବୋଲି ଆଶା କରିଥିଲି - ପିଲାଦିନୁ କେତେ କଳିକଜିଆ, କେତେ ମାଡ଼ଗୋଳ । ସବୁ ଭୁଲି ଆଜି ଆଗରୁ ବାଟକାଟି ଚାଲିଗଲୁ କେମିତି ?



# 'କାଳୀଚରଣ ଓ ଗପସପ'

ମୁଁ ଡ଼ାକୁଥିଲି ତାଙ୍କୁ ନାଁ ଧରି - କାଳୀ । ଆଉ ସିଏ ମତେ ଡ଼ାକୁଥିଲେ ଭାଉଜ । କାହିଁକି, କେତେବେଳେ ଓ କିପରି ଏ ସଂପର୍କଟି ସ୍ଥାପିତ ହୋଇଥିଲା, ଆଜି ଆଉ ମନେ ନାହିଁ ।

ପରିଚୟ ହୋଇଥିଲା ବେଶ୍ ଅପ୍ରତ୍ୟାଶିତ ଭାବେ । ପ୍ରାୟ ପାଞ୍ଚବର୍ଷତଳର କଥା । ନୂଆନୂଆ କଲମ ଧରୁଥିଲି ସେତେବେଳେ । ଜୀବନ କଟିଥିଲା ଓଡ଼ିଶା ବାହାରେ । ଏଠାର ସବୁ ସମ୍ବାଦପତ୍ରର ନାଁ ସହିତ ପରିଚିତ ନ ଥିଲି । ବିଶେଷ କରି ଅପେକ୍ଷାକୃତ ଅଳ୍ପବୟସ୍କ 'ଅନୁପମ ଭାରତ' ସହିତ । ଜଣେ ଅଧ୍ୟାପିକାଙ୍କଠାରୁ ପ୍ରଥମଥର ପାଇଁ ଶୁଣିଥିଲି ସମ୍ବାଦପତ୍ରଟି ସଂପର୍କରେ । ଉନ୍ନତମାନର କାଗଜଟିଏ ବୋଲି ମନ୍ତବ୍ୟ କରିଥିଲେ ।

ସ୍ୱନକ୍ଷତ୍ର ସଂଖ୍ୟାପାଇଁ ତେଣୁ ଲେଖାଟିଏ ପଠାଇଦେଇଥିଲି । ଲେଖାଟିର ପ୍ରକାଶନ ସଂପର୍କରେ ଅବଶ୍ୟ ଥିଲି ସନ୍ଦିହାନ । ଲେଖା ପଠାଇବାର ପ୍ରାୟ ଦୁଇମାସପରେଦିନେ ସଂଧ୍ୟାରେ କଲିଙ୍ଗ୍ ବେଲ୍ ବାଜିଲା । ଦରଜା ଖୋଲି ଦେଖେ ଜଣେ ଅପରିଚିତ ଭଦ୍ରବ୍ୟକ୍ତି । ବୟସ ଖୁବ୍ ବେଶୀ ନୁହେଁ । ଉଜ୍ଜ୍ୱଳ ଶ୍ୟାମବର୍ଣ୍ଣର ସ୍ୱାସ୍ଥ୍ୟବାନ୍ ଚେହେରା । ଗୋଲ୍ ମୁହଁ ଓ ପୂରନ୍ତ ଗାଲ । ସଫେଦ୍ ସ୍ମିତରେ ମୁହଁ ଉଜ୍ଜ୍ୱଳ କରି ପଚାରିଲେ - ଆପଣ କଅଣ କାନନ ମିଶ୍ର ? ମୁଣ୍ଡ ଟୁଙ୍ଗାରିଲି । ହାତରେ ଧରିଥିବା ଅର୍ଦ୍ଧ ନୂଆ ପତ୍ରିକାଟି ବଢ଼େଇ ଦେଇ କହିଲେ - ମୁଁ କାଳୀଚରଣ ପଣ୍ଡା । ଅନୁପମ ଭାରତର । କଥାଟି ଏଭଳି ନମ୍ର ଓ ଅନୁଦ୍ଧତ ଭଙ୍ଗୀରେ କହିଥିଲେ ସତେ ଅବା ସମ୍ବାଦପତ୍ର ଦପ୍ତରରେ କାମ କରୁଥିବା ଜଣେ ବେତନଭୁକ୍ତ ସାଧାରଣ କର୍ମଚାରୀ ମାତ୍ର । ଭୁଲ୍ ଭାଙ୍ଗିଥିଲା ତାଙ୍କ ସହିତ ଆଳାପ କରିସାରିଲା ପରେ ।

ସେଇ ଥିଲା ପ୍ରଥମ ପରିଚୟ । ଗପତଳେ ଲେଖାଥିବା ଠିକଣାରୁ ଜଣେ ସ୍ୱଳ୍ପପରିଚିତା ଲେଖିକାଙ୍କର ଘର ଖୋଜି ପତ୍ରିକାଟି ସ୍ୱୟଂ ଆସି ତାଙ୍କ ପାଖରେ ପହଞ୍ଚାଇଦେବାର ଭବ୍ୟ ଆଚରଣଟି ମୁଗ୍ଧ କରିଥିଲା ମତେ । ମୁଗ୍ଧ କରିଥିଲା ତାଙ୍କର ଶିଷ୍ଟ, ସଂଯତ ଓ ସୁମଧୁର ବାର୍ତ୍ତାଳାପ ।

ବେଶ୍ କିଛି ସମୟ ବସିଥିଲେ ସେଦିନ । ଗପ ବି କଲେ ଅନେକ । ସମ୍ବାଦପତ୍ର କଥା, ସ୍ୱପରିବାରର କଥା । ଜାଣିଲି ଘର ତାଙ୍କର ବରହମ୍ପୁର । ଏଠି ରହନ୍ତି ଏକା । ସାଥିରେ ସ୍କୁଲ୍‌ପଢୁଆ ସାନ ପୁଅଟିକୁ ଧରି । ଅନୁପମ ଭାରତର ଗୋଟିଏ ଅଫିସ୍ ଅଛି ଏଠି ।

- ପତ୍ନୀ ସେଠି ଏକୁଟିଆ ? ପଚାରିଲି ।

- ଆମର ତ ସଂଯୁକ୍ତ ପରିବାର । ଘର ଛାଡ଼ି ଆସିବା ମୋ ସ୍ତ୍ରୀଙ୍କ ପକ୍ଷରେ ସମ୍ଭବ ନୁହେଁ । ତେଣୁ ଝିଅ ଦୁଇଟିଙ୍କ ସହ ରହଣୀ ତାଙ୍କର ବ୍ରହ୍ମପୁରରେ । ତା' ଛଡ଼ା ମୋର ତ ଯିବା ଆସିବା ଲାଗି ରହିଛି । ମୃଦୁହସି ଜବାବ୍ ଦେଲେ ।

ଯା' ପରେ ପରେ କେତେବେଳେ କେମିତି ଫୋନ୍‌ରେ ପଦେ ଅଧେ କଥାଭାଷା । କେଇମାସ ପରେ ଶୁଣିଥିଲି ଆଉ ଭୁବନେଶ୍ୱରରେ ରହୁନାହାନ୍ତି ବୋଲି । ଶୁଣିଥିଲି ଅବସ୍ଥିତି ଏବେ ବ୍ରହ୍ମପୁରରେ ।

ମୋ' ଘରକୁ ତାଙ୍କର ଦ୍ୱିରାଗମନ ଏହାର ପ୍ରାୟ ବର୍ଷକ ପରେ । ଦିନେ ସନ୍ଧ୍ୟାରେ ଅଚାନକ୍ ଆସି ପହଞ୍ଚିଯାଇଥିଲେ । ବିନା ଖବର୍‌ରେ । କଅଣ ଗୋଟିଏ ପର୍ବ ଥିଲା ସେଦିନ । ପ୍ଲେଟରେ ପିଠା ଓ କେକ୍ ନେଇ ସାମ୍ନାରେ ରଖିଲି । କେବଳ କେକ୍ ଖଣ୍ଡିକ ଉଠାଇ ନେଲେ । କହିଲେ - ଭାଉଜ, ଆଜି ପେଟ ଭର୍ତି । ଆଜିର ଖାଇବାଟା ବାକି ରହିଲା ତମ ଉପରେ ।

ବିନୟ ଥିଲେ ଘରେ । ତିନିହେଁ ମିଶି ମଉଜିଆ ଖୁସି ଗପ କଲୁ ଅନେକ ସମୟ ଧରି । ଖୁସି ଗପ ମଝିରେ କଥାର ଖିଅ କାଟି ହଠାତ୍ କହିଉଠିଲେ - ଭାଉଜ, ତମେ ଆମ ପେପର୍‌ରେ ନିୟମିତ ଭାବରେ ଗୋଟିଏ ସ୍ତମ୍ଭ ଲେଖିବ ?

- ଯାଃ ! ମୁଁ ଏମିତି କିଛି ସ୍ୱନାମଧନ୍ୟା ଲେଖିକା ନୁହେଁ । ଆଉ ତମ ପେପର୍‌ଟି ବେଶ୍ ନାମୀ । ପରିହାସ କରୁଚ ନିଶ୍ଚୟ ।

- ନାଇଁ ଭାଉଜ । ମୁଁ ସତରେ କହୁଛି । ସନ୍ ଟାଇମସ୍ ପାଇଁ ତମେ ପ୍ରତି ବୁଧବାର ଲେଖୁଥିଲ ନା । ଆମପାଇଁ ବି ପ୍ରତି ବୁଧବାର ଗୋଟିଏ ଲେଖାଏଁ ଫିଚର ଲେଖ । ମୁଁ ଆଜି ମୁଖ୍ୟତଃ ସେଇକଥା କହିବାକୁ ଆସିଛି । - ଲେଖିବି ଯଦି ରବିବାର ଦିନ ଇ ଲେଖିବି । ଛୁଟିଦିନ ହେତୁ ଲୋକମାନେ ସେଦିନ ବେଶ୍ ଆରାମ୍‌ରେ ବସି ପେପର ପଢ଼ନ୍ତି । ଆଉ ଖବରକାଗଜର ଠିକ୍ ମଝିପୃଷ୍ଠାରେ ମତେ ଜାଗା ଦବ, ମୁଁ କହିଲି ।

ହସିଲେ ମୋ କଥା ଶୁଣି । କହିଲେ - ତାକୁ ଫିଫ୍‌ଥ କଲମ କହନ୍ତି । ଠିକ୍‌ଅଛି, ତମଲେଖା ସେଇଠି ଛାପିଦେବା । ଅଳ୍ପ ସମୟ ଅଟକି ପୁଣି କହିଉଠିଲେ - ନାଁ କଅଣ ଦେବା ସେ କଲମ୍‌ଟିର ?

ମୁଁ କହିଲି - ଗପସପ ।

- ଠିକ୍ ଅଛି । ସେଇ ନାଁ ଇ ରହିଲା । ତମେ ଆଜିଠୁ ଲେଖା ଆରମ୍ଭ କରିଦିଅ । ଏଇ ରବିବାର ଛାଡ଼ି ଆସନ୍ତା ରବିବାରଠାରୁ ଗପସପ ଛପା ଆରମ୍ଭ ହେବ । ଆଉଗୋଟିଏ ସାନ ଅନୁରୋଧ । ମୁଁ ପଅରଦିନ ଫେରିଯାଉଛି ବରହମ୍ପୁର । ଏଇ ରବିବାର ସୌରଭ ପୃଷ୍ଠାପାଇଁ ଗପଟିଏ ଲେଖିଦିଅ କାଲି ଭିତରେ । ମୁଁ ଗଲାବେଳେ ନେଇଯିବି । ଚା'ର ଶେଷ ଢୋକ ସହିତ ତାଙ୍କର ଶେଷ ବାକ୍ୟଟି ଉଚ୍ଚାରଣ କରି ଉଦ୍ୟତ ହେଲେ ଯିବାପାଇଁ ।

ଲୋକପଠାଇ ଗପଟି ନେଇଯାଇଥିଲେ ଦିନକପରେ । 'ଅନୁରାଗ' ଶୀର୍ଷକ ସେ ଗପଟି ପ୍ରକାଶ ବି ପାଇଗଲା ସେଇ ରବିବାରର ସାହିତ୍ୟ ପୃଷ୍ଠାରେ । ଏବଂ ତା ପର ରବିବାରଠାରୁ ଧାରାବାହିକ ଭାବରେ ପ୍ରକାଶ ପାଇଲା ଗପସପ ।

ଗପସପ ଲେଖାର ଏଇଥିଲା ମଙ୍ଗଳାଚରଣ । ସ୍ତମ୍ଭଟି ଲେଖିଥିଲି ଦୁଇହଜାର ମସିହାରେ - ପ୍ରାୟ ସାରାବର୍ଷ ଧରି । ମଝିରେ ବିନୟଙ୍କର ହାର୍ଟ ଅପରେସନ୍ ବେଳେ କିଛିଦିନ ପାଇଁ ଲେଖା ବନ୍ଦ୍ ଥିଲା କେବଳ । ଶେଷ ଲେଖା ଛପା ହେଉଥିଲା ଡ଼ିସେମ୍ବର ମାସର ଶେଷ ରବିବାର ଦିନ ।

କାଳୀ କିନ୍ତୁ ବାରମ୍ବାର ତାଗିଦା ଦେଇ ଲାଗିଥିଲେ ଗପସପ ପୁଣି ଥରେ ଆରମ୍ଭ କରିବାପାଇଁ । ଏବଂ ଏଇ ଗପସପର ପୁନର୍ଲିଖନ ସଂପର୍କରେ ଥରଟେ ତାଙ୍କ ସହିତ ଆଲୋଚନା କଲାବେଳେ କେଜାଣି କେମିତି ମୋ' ମୁହଁରୁ ଅଚାନକ୍ ବାହାରିଗଲା - କାଳୀ । ତମେ ମୋର ଗପସପର ଲେଖାଗୁଡ଼ିକ ଏକତ୍ର କରି ବହିଟିଏ ଛପେଇଦବ ? କଥାଟି କହିସାରି କିନ୍ତୁ ଅନୁତପ୍ତ ହେଲି । ମନେହେଲା - କାଳୀ ନିଶ୍ଚୟ କୌଣସି ଏକ ବାହାନା କରି କଥାଟି ଟାଳିଯିବେ । ମନେହେଲା - ତୁଚ୍ଛାଟାରେ ମୁହଁ ଖୋଲି ନିଜର ମର୍ଯ୍ୟାଦା ନଷ୍ଟ କଲି ଅବା ।

କିନ୍ତୁ ମୋର ଏତାଦୃଶ ଭାବନାପାଇଁ ମତେ ସଂପୂର୍ଣ୍ଣରୂପେ ଲଜ୍ଜିତ କରି, ଦ୍ୱିଧା ବିହୀନ କଣ୍ଠରେ କାଳୀ ତତ୍କ୍ଷଣାତ୍ ଜବାବ୍ ଦେଲେ - ତମପାଖରେ ଲେଖାଗୁଡ଼ିକର କପିଥିବ ତ । ଡ଼େରି ନ କରି ଡ଼ି.ଟି.ପି. ପାଇଁ ପଠେଇ ଦିଅ ମୋ ପାଖକୁ । ବହି ଛାପିଦେବା ।

ପଚାରିଲି - ତମେ କେଉଁଠୁ ଟେଲିଫୋନ୍ କରୁଛ ? ବରହମ୍ପୁରରୁ ନା ଭୁବନେଶ୍ୱରରୁ ? ଯଦି ଭୁବନେଶ୍ୱରରେ ଅଛ ଘରକୁ ଆସୁନ ।

ଉତ୍ତରଦେଲେ - ମୁଁ ବରମୁଣ୍ଡା ବସ୍‌ଷ୍ଟାଣ୍ଡରୁ କହୁଚି । ଏଇ ସାଙ୍ଗେ ସାଙ୍ଗେ ବରହମ୍ପୁର ବସ୍‌ରୁ ଓହ୍ଲାଇଲି । ଆଜି ରାତିରେ ଦିଲ୍ଲୀ ଯିବି । ହାତରେ ସମୟ ନାହିଁ । ଖାଲି ଗପସପ କଥା ମନେପକାଇଦେବା ପାଇଁ ତୁମକୁ ଫୋନ୍ କଲି ।

ପାଠକମାନଙ୍କଠାରୁ ଅନୁରୋଧ ଆସୁଚିତ ! ଶୀଘ୍ର ଆରମ୍ଭ କରିବା ସେ କଲମ୍‌ଟି । କାଳୀ ଫୋନ୍ ଛାଡ଼ିଦେଲେ । ଏବଂ ମନ ମୋର ସହସା କୃତଜ୍ଞତାରେ ଆର୍ଦ୍ର ହୋଇଉଠିଲା ତାଙ୍କ ପାଇଁ । ମୋ' ପରି ଜଣେ ଅର୍ବାଚୀନା ଲେଖିକାର ଲେଖାପ୍ରତି ତାଙ୍କର ପ୍ରଗାଢ଼ ମମତ୍ୱବୋଧ ଦେଖି ।

କାଳୀ କିନ୍ତୁ କଥାରେ ଥିଲେ ପକ୍‌କା । ଅସମ୍ଭବ କାର୍ଯ୍ୟବ୍ୟସ୍ତତା ସତ୍ତ୍ୱେ ଦାୟିତ୍ୱ ନେଇ ମୋ ବହିଟି ଛାପିଦେଲେ ଶେଷ ପର୍ଯ୍ୟନ୍ତ । ଏବେ ମନେପଡ଼େ - ବହିଟି ଛପାହେଲାବେଳେ ମଝିରେ ମଝିରେ ଫୋନ୍ କରି କେତେ ବ୍ୟତିବ୍ୟସ୍ତ ନ କରିଛି ମୁଁ ତାଙ୍କୁ । ଗୋଟିଏ ଅବୋଧ ଶିଶୁପରି କିମ୍ବା ଗୋଟିଏ ମୂର୍ଖ ମଣିଷପରି ଧରିନେଇଥିଲି ଯେମିତି ଅନୁପମ ଭାରତର ମାନେଜିଂ ଡ଼ିରେକ୍ଟରଙ୍କର କାନନ ମିଶ୍ରଙ୍କର ଗପସପ ବହି ଛପାଇବା ବ୍ୟତୀତ ଅନ୍ୟ କୌଣସି ଗୁରୁତର କାମ ନାହିଁ ଏ ପୃଥିବୀରେ । ମୋ'ର ଏତାଦୃଶ ଅହେତୁକ ବ୍ୟସ୍ତତା ଏବଂ ପିଲାଳିଆମି ସତ୍ତ୍ୱେ, କାଳୀଙ୍କର ଥରଟେ ବି ଧୈର୍ଯ୍ୟଚ୍ୟୁତି ହେଇଥିବାର ମନେପଡୁନି । ହସି ହସି କହୁଥିଲେ - କାମ ସରିଆସିଲାଣି ଭାଉଜ । ତମେ ଏତେ ବ୍ୟସ୍ତ ହୁଅନାତ ।

ବହିଟି ଛପା ସରିଲାପରେ ତାଙ୍କୁ ଅନୁରୋଧ କରିଥିଲି ମୋ ପାଖକୁ କେତୋଟି କପି ପଠାଇ ଦେବାପାଇଁ । ପଠେଇ ଦେଇଥିଲି ବହିର ଦାମ୍ ।

ଫୋନ୍‌ରେ କହିଲେ - ଭାଉଜ ! ତମେ ଏଭଳି ରାଗିଯାଇଛ ଯେ, ତୁମକୁ କେମିତି ତୁଷ୍ଟ କରିବି ଭାବି ଭାବି କିଛି କୂଳକିନାରା ପାଉନି ।

- ନାଇଁ ତ ! ତୁମ୍ଭାଟାରେ ରାଗିବି କାହିଁକି ? ଏ ବୟସରେ କନିଷ୍ଠମାନଙ୍କ ପ୍ରତି ଉଷ୍ମା ପ୍ରଦର୍ଶନ କରିବା କଅଣ ଶୋଭାପାଏ ?

- ବହିର ଦାମ୍ ପଠେଇଦେଲ ଯେ । ଭାବିଲି ତମପାଖକୁ ବହିପଠେଇବାର ଡ଼େରି ହେଲା ବୋଲି ରୁଷିଯାଇଛ ।

- ଆରେ ନା, ନା । ତମେ ଏତେ ଟଙ୍କା ଖର୍ଚ୍ଚ କରି ବହି ଛପେଇଦେଲ । ମୋର ତ ସେଥିପାଇଁ କୃତଜ୍ଞ ହେବା କଥା । ବନ୍ଧୁ କୁଟୁମ୍ବଙ୍କୁ ଉପହାର ଦବାପାଇଁ ଦି ଚାରିଟା ବହି ମୋର ଦରକାର । ତମ ଭାଇନା କଅଣ ସେତିକି ଟଙ୍କା ମତେ ଦେଇପାରିବେନି ?

- ଭାଇନାଙ୍କୁ କହିଦେବ ଟଙ୍କା ପଠେଇବା ଦରକାର ନାହିଁ । ତାଙ୍କର ସ୍ନେହାଶୀର୍ବାଦ ଆମ ଉପରେ ଥିଲେ ହେଲା । ସେତିକି ଯଥେଷ୍ଟ । ଫୋନ୍‌ରେ ହସିହସି ଜବାବ୍ ଦେଲେ ।

ବହି ପଞ୍ଚୁଯାଇଥିଲା ତା ପରଦିନ । ସାଥିରେ ଇଫାଫା ମୁଦ ହେଇ ପଠାଇଥିବା ଟଙ୍କାତକ ମଧ । ସ୍ୱପ୍ନକୁ ସାକାର କରି ମାତ୍ର କେଇଟାବର୍ଷ ଭିତରେ ବୁନିୟାଦ୍ ସ୍ଥାପନା କରିଗଲେ ଚମତ୍କାର ସମ୍ବାଦପତ୍ରଟିର । ପ୍ରଚୁର ପରିଶ୍ରମ କରିବାକୁ ପଡ଼ିଥିବ ନିଶ୍ଚୟ । ସମ୍ବାଦପତ୍ରର ପ୍ରଚ୍ଛଦପଟରେ ଥିବା ସେ ନିରଳସ ପରିଶ୍ରମର ଟିକିନିଖି ଖବର ମୁଁ ଜାଣେନି । ମୁଁ ତ ଅନୁପମ ଭାରତର ଏମ୍.ଡ଼ି.କୁ ଜାଣିନଥିଲି । ଜାଣିଥିଲି ସାମ୍ବାଦିକତା ଓ ବ୍ୟବସାୟିକତାର ଊର୍ଦ୍ଧ୍ୱରେ ଥିବା ସେଇ ଭଦ୍ର, ମନୋଜ୍ଞ ଓ ଉଷ୍ଣସ୍ୱଭାବର ମଣିଷଟିକୁ ।

ମାନବିକତାବୋଧ ଓ ସୌଜନ୍ୟ ଥିଲା ଅପରିସୀମ । ବିନୟଙ୍କର ହାର୍ଟ ଅପରେସନ୍ ବେଳେ ବାରମ୍ବାର ଫୋନ୍ କରି ଖବର ନେଉଥିଲେ । ପଚାରୁଥିଲେ – ଭାଉଜ ତୁମେ ଏକୁଟିଆ ମଣିଷ । ମୁଁ ଯଦି କିଛି କାମରେ ଆସିପାରେ, ସଙ୍କୋଚ ନ କରି ମତେ ଜଣାଅ । କହୁଥିଲେ – ଭାଇନାଙ୍କର ସ୍ୱାସ୍ଥ୍ୟ ସାମାନ୍ୟ ଫେରିଆସିଲେ ଦିହେଁଣ ଯାକ ମିଶି କିଛି ଦିନ ପାଇଁ ବରହମ୍ପୁର ଆସ । ମନ ପରିବର୍ତ୍ତନ ହେଇଯିବ । ପୁଅ ସପରିବାର ଆମେରିକାରୁ ଆସିଛି ଶୁଣି ଜିଦ୍ କରିଥିଲେ – ନାତି, ନାତୁଣୀକୁ ଗୋପାଳପୁର ବୁଲେଇ ଦେଖେଇଦବା ଭାଉଜ । କେବେ ଆସିବ ଦିନ ଠିକ୍ କରି ମତେ ଜଣାଅ । ମୁଁ ଅଛି ଏଠି । କିଛି ଅସୁବିଧା ହେବନି ତମର । ମୋର ଦୁର୍ଭାଗ୍ୟ – ତାଙ୍କର କୌଣସି ନିମନ୍ତ୍ରଣ ମୁଁ ରକ୍ଷା କରିପାରିନି ।

ମୋ' ବାପାଙ୍କ ଦେହାନ୍ତ ପରେ, ଏକାଦଶାହ ଦିନ ଆମଘରେ ଉପସ୍ଥିତ ହେବାପାଇଁ ନିମନ୍ତ୍ରଣ ପତ୍ରଟିଏ ମୋ ଭାଇ ପଠାଇଦେଇଥିଲା ତାଙ୍କ ପାଖକୁ । ବରହମ୍ପୁରରୁ କଟକ ଆସିବା ତାଙ୍କ ପକ୍ଷରେ ସମ୍ଭବ ନ ଥିଲା । କିନ୍ତୁ ତାଙ୍କୁ ପ୍ରତିନିଧିତ୍ୱ କରିବାପାଇଁ ତାଙ୍କ ସଂସ୍ଥାର ଜଣେ ଭଦ୍ରବ୍ୟକ୍ତିଙ୍କୁ ନିର୍ଦ୍ଦିଷ୍ଟ ଦିନ ପଠାଇଦେଇଥିଲେ ଆମ ଘରକୁ – ଆମ ଦୁଃଖଦ ମୁହୂର୍ତ୍ତରେ ସମବ୍ୟଥୀ ଭାବରେ ଆମ ପାଖରେ ଠିଆହେବାପାଇଁ । ତାଙ୍କ କଟକ ଅଫିସ୍‌ର ପ୍ରତିନିଧି, ରାତି ନଅଟାରେ ଆମ ସହିତ ମିଶି ମହାପ୍ରସାଦ ସେବନ କଲାବେଳେ ଜଣାଇଥିଲେ – ସାରାଦିନ କୁଆଡ଼େ ଏମ୍.ଡ଼ି. ସାହେବଙ୍କଠାରୁ ଏକାଧିକ ଟେଲିଫୋନ୍ ତାଙ୍କ ପାଖକୁ ଆସିଥିଲା । କୌଣସି ମତେ ସମୟ କରି ଆମଘରକୁ ଯାଇ ପରିବାରର ସଦସ୍ୟମାନଙ୍କୁ ଭେଟିବା ପାଇଁ ।

କେତେସବୁ ସାନ ସାନ କଥା ତାଙ୍କ ସଂପର୍କରେ ମନେ ପଡ଼େ ଏବେ । କଥା ସବୁ ସାନ ସାନ । କିନ୍ତୁ ଚେତେଇ ଦିଏ ବିରାଟ ହୃଦୟର ମଣିଷଟି ବିଷୟରେ । ଗପସପ ଛପାହେଲାବେଳେ, ସମ୍ବାଦପତ୍ରର କପି ନିୟମିତ ପଠାଉଥିଲେ ମୋ ପାଖକୁ । ଗପସପ ଲେଖା ଦିନେ ବନ୍ଦ୍ ହେଲା । ସମ୍ବାଦପତ୍ର ଆସିବା କିନ୍ତୁ ବନ୍ଦ୍ ହେଲାନି । ବରଂ ବାରମ୍ବାର ଫୋନ୍ କରୁଥିଲେ । ଖବରକାଗଜ ଠିକ୍‌ଠାକ୍ ମିଳୁଛି ନା ନାହିଁ ବୋଲି । ଦିନେ ବିନୟ କହିଲେ – ତମର ବାର୍ଷିକଗ୍ରାହକ ହବାର ଦେୟ କେତେ

କହତ । ମୁଁ ଚେକ୍ ଲେଖିଦେବି । ମୃଦୁହସି ଆଲୋଚନାଟି ଏଡ଼େଇଗଲେ ଅନ୍ୟ ପ୍ରସଙ୍ଗର ଅବତାରଣା କରି । ମୋତେ ଚାହିଁ କହିଲେ - ଭାଉଜ, ମୋର ପଇସା ଦରକାର ନାହିଁ । ଦରକାର ଭଲ ଲେଖା । ତମେ ବରଂ ପଇସା ବଦଳରେ ଭଲ ଲେଖା ଦିଅମତେ ।

ପ୍ରତିବର୍ଷ ନୂଆବର୍ଷରେ ପଠାଉଥିଲେ ଦୁଇଟି କ୍ୟାଲେଣ୍ଡର, ଗୋଟିଏ ଚମତ୍କାର ଡ଼ାଇରୀ ଏବଂ ଦୁଇଟି ବଡ଼ ଆଇସ୍‌କ୍ରିମ୍ ସ୍ଲାବ୍ ଆକାରର ନଡ଼ିଆପାତି ଓ କାଜୁମିଶା ଚିନିପାଗରନ୍ଧା କୁଡୁମୁଡ଼ିଆ ଜରିମୋଡ଼ା ମୁଆଁ । ଭାରି ଲୋଭନୀୟ ଥିଲା ସେ ମୁଆଁର ସ୍ୱାଦ । ତାଙ୍କର ସ୍ନେହ ଓ ଶ୍ରଦ୍ଧା ଗୋଳେଇ ହେଇ ସେ ମୁଆଁ ସତେ ଅବା ହେଇଯାଉଥିଲା ଟିକିଏ ଅଧିକତର ଭାବରେ ମିଷ୍ଟ ।

ମନେପଡ଼େ ଦୁଇହଜାର ଏକ ମସିହାର ନଭେମ୍ବର ଦଶତାରିଖଟିର କଥା । ସନ୍ଧ୍ୟା ଉତ୍ତୀର୍ଣ୍ଣ । କଲିଂବେଲ୍ ବାଜିଲା । କବାଟ ଖୋଲି ଦେଖେ, ବାହାରେ କାଳୀଙ୍କ ଭଗ୍ନୀପତି ଶ୍ରୀ ଭଗବାନ ପଣ୍ଡା ଠିଆ । ହାତରେ ଅନୁପମ ଭାରତର ସ୍ୱନକ୍ଷତ୍ର ସଂଖ୍ୟା ।

ଭଗବାନ କହିଲେ - ଭାଉଜ, ତମ ଲେଖା ବାହାରିଛି । କମ୍ପ୍ଲିମେଣ୍ଟାରି କପି ନେଇ ଆସିଛି । ଯେତେ ଅନୁରୋଧ କଲେ ବି ବସିଲେନି ଭଗବାନ । କହିଲେ - କ୍ଷମା କରିବ ଭାଉଜ । ଆଜି ବସିବାକୁ ବେଳ ନାହିଁ । ମୁଁ ଗାଡ଼ି ନେଇ ଆସିଛି ତ ! ଫେରିଗଲେ ଗାଡ଼ି ସାଙ୍ଗେ ସାଙ୍ଗେ ବରହମ୍ପୁର ଫେରିଯିବ । ଆଜି ଯାଏ । ଆଉଦିନେ ବରଂ ଆସିବି । ତରତର କରି ସିଡ଼ି ଓହ୍ଲାଇ ଚାଲିଗଲେ ଭଗବାନ୍ ।

କେଇମାସ ପରେ ଥରେ ଘରେ ବସି ଗପ କଲାବେଳେ ଭଗବାନ କହିଲେ - ଭାଉଜ, ଜାଣ ? ସେଦିନ କାଳୀଭାଇନା ବସିଥିଲେ ଗାଡ଼ିରେ । ମତେ କହିଲେ- ତୁ ଏକୁଟିଆ ଯାଇ ବହି ଦେଇଆ । ମୁଁ ଗଲେ ଭାଉଜ ଚା' ଜଳଖିଆ ନ ଖୁଆଇ ଛାଡ଼ିବେନି । ବରହମ୍ପୁର ଯିବାରେ ମୋର ଡ଼େରି ହେଇଯିବ ।

ବେଳେ ବେଳେ ଭାବେ - ଫାଟକ ସାମ୍ନାରୁ ଏଭଳି ଭାବରେ କେବେବି ତ ଫେରିଯାଇ ନାହାନ୍ତି କାଳୀ ? କାହିଁକି ଫେରିଗଲେ ସେଦିନ ? ଏହା କଅଣ ଭବିତବ୍ୟ ଥିଲା ? ଆସି ଘଣ୍ଟାଏ ଏଠି ବସିଥିଲେ ହୁଏତ ଯାତ୍ରାର ସେ ବାରବେଳା କଟିଯାଇଥାଆନ୍ତା । ସମୟର ସାମାନ୍ୟ ଆଗପଛର ହେର୍‌ଫେର୍‌ରେ ଦୁର୍ଘଟଣାର ସେ ନିର୍ଦ୍ଦିଷ୍ଟ ମୁହୂର୍ତ୍ତଟି ହୁଏତ ଅପହୁଞ୍ଚ ହେଇ ରହିଯାଇଥାଆନ୍ତା ଶେଷପର୍ଯ୍ୟନ୍ତ । ଦଇବ ଦଉଡ଼ି ହେଇ ଏଇମିତି ମଣିଷକୁ ଦୁର୍ବିପାକକୁ ଟାଣିନିଏ ସତେ । ତାଙ୍କପାଖରେ ହାଜିରା ଦେବାପାଇଁ, ଧର୍ମରାଜ, ଅଚାନକ୍ ଏଇଭଳି ଭାବରେ ତାଙ୍କର ଜରୁରୀ ପରୱାନା ଜାରି କରିଦିଅନ୍ତି ଅବା ।

କାଳୀଙ୍କ ସହିତ ଶେଷ କଥାବାର୍ତ୍ତା ତାଙ୍କ ଦେହାବସାନର ମାତ୍ର କେଇଦିନ ପୂର୍ବରୁ । ଟେଲିଫୋନ୍‌ରେ କହିଲେ - ଭାଉଜ, ଅଣତିରିଶ ତାରିଖ ଦିନ ଆମର ବେଶ୍ ବଡ଼ କାର୍ଯ୍ୟକ୍ରମ । ଗଭର୍ଣ୍ଣର ଆସୁଛନ୍ତି । ସ୍ୱନକ୍ଷତ୍ର ସଂଖ୍ୟା ଉନ୍ମୋଚନ ହବ । ଯେମିତି ହେଲେ ଆସ । ଯାଇନଥିଲି । ଏବେ ଭାବେ ଯାଇଥିଲେ ହୁଏତ ଭଲ ହୋଇଥାଆନ୍ତା । ଶେଷ ବିଦାୟ ପୂର୍ବରୁ ମଣିଷଟି ସହିତ ଥରେ ଦେଖାହୋଇଥାଆନ୍ତା ।

ଅନୁପମ ଭାରତରେ, ଦୁଇହଜାର ମସିହାରେ ଲେଖୁଥିଲି ଗପସପ ସ୍ତମ୍ଭଟି । ବର୍ଷକର ନୀରବତା ପରେ ଦୁଇହଜାର ଦୁଇ ମସିହା ଆରମ୍ଭରେ ପୁନର୍ବାର ଲେଖିଲି ଗୋଟିଏ ସ୍ତମ୍ଭ ଅନୁପମ ଭାରତରେ । ସ୍ତମ୍ଭଟିର ନାଁ ଏଥରକ ଥିଲା ଭିନ୍ନସ୍ୱର । ଅନେକ ପାଠକପାଠିକା ଯା ଭିତରେ ପଚାରିଛନ୍ତି - ବେଶ୍ ତ ଚାଲିଥିଲା ଗପସପ । ଭିନ୍ନସ୍ୱର ଲେଖିଲେ କାହିଁକି ? ଉତ୍ତରଟି ଏ ପର୍ଯ୍ୟନ୍ତ ସଭିଙ୍କୁ ଦେଇପାରିନି । ଏଇ ସୁଯୋଗରେ ସେ ଉତ୍ତରଟି ଦେଇଦେଉଛି ଆଜି ।

କାଳୀଙ୍କ ଦେହାନ୍ତ ପରେ ଗୋଟିଏ ଲେଖା ଲେଖିଥିଲି ଅନୁପମ ଭାରତରେ । ଲେଖାଟିର ଶେଷ ପାରାଗ୍ରାଫ୍‌ଟି ଥିଲା ଏଇଭଳି -

"କାଳୀ, କଥାଥିଲା ଗପସପ ଆଉଥରେ ଆରମ୍ଭ କରିବା ବୋଲି । ସେ ସ୍ତମ୍ଭଟି ଯେ ଭାରି ପ୍ରିୟ ଥିଲା ତମର । ହେଲେ ମତେ କ୍ଷମାକର । ତୁମ ସହିତ ଗପସପର ମଧ୍ୟ ଆଜି ମୃତ୍ୟୁ ଘଟିଛି । ଗପସପ ଲେଖିବା ମୋ ପକ୍ଷରେ ବୋଧହୁଏ ଆଉ ସମ୍ଭବ ନୁହେଁ । ଲେଖିବାକୁ ବସିଲେ ଇ ମନେପଡ଼ିବ ତମକଥା । କଲମରୁ ସ୍ୟାହି ନ ଝରି ଝରିବ ଲୁହ । ଲୁହରେ କଅଣ କୌଣସି ଲେଖା ଲେଖା ଯାଇପାରେ ? ଆଶ୍ଚର୍ଯ୍ୟକଥା । ଗପସପ ଭିତର ଦେଇ ମୋ ଜୀବନରେ ଭେଟିଥିବା ଅଜସ୍ର ଚରିତ୍ର ମୂର୍ତ୍ତିମନ୍ତ ହୋଇ ଆସିଛନ୍ତି ଲୋକଲୋଚନକୁ । କିନ୍ତୁ ତୁମେ ଯେ ଦିନେ ମୋ ଗପସପର ନାୟକ ହୋଇ ତା ଭିତରକୁ ପଶିଆସିବ, ଏକଥା ମୁଁ ସ୍ୱପ୍ନରେ ବି ଭାବି ନ ଥିଲି ।

ଗପସପ ଶୃଙ୍ଖଳାର ଇଏ ମୋର ଶେଷ ଲେଖା - ତୁମପାଇଁ, ତୁମ ସ୍ମୃତିରେ"

- କାଳୀଙ୍କ ସହିତ ଇ ମୃତ୍ୟୁ ଘଟିଥିଲା ମୋ ଗପସପ ଶୃଙ୍ଖଳାର । ସେଇଥିପାଇଁ ଲେଖିଥିଲି ଭିନ୍ନ ଶୀର୍ଷକର ଲେଖା - ଭିନ୍ନସ୍ୱର ।



# 'ଗୋଟିଏ ଭଲ ମଣିଷର କାହାଣୀ'

## (୧)

ନରମ ସକାଳର ଝିଲ୍‌ମିଲ୍ ସୁନେଲି ଖରାରେ ଭିଜି ଭିଜି ବିଲମଝିର ହିଡ଼େ ହିଡ଼େ ଆଗପଛ ହେଇ ଛୁଟି ସରିଲେ ସ୍କୁଲ ଯାଉଥିଲେ ଦୁଇଭାଇ । ପଛେପଛେ ଲୁଗାପଟା ଓ ମୁଆଁଉଖୁଡ଼ାର ବିରାଟକାୟ ଗଣ୍ଠିଲିଟି ମୁଣ୍ଡରେ ବହନ କରି ଦିହଲଗା ପୁରୁଖା ହଳିଆ । ଭାଇ ଯୋଡ଼ିକ ପାଠ ପଢୁଥିଲେ ବାଙ୍କୀ ହାଇସ୍କୁଲ୍‌ରେ । ପଥୁରିପଡ଼ା ଗ୍ରାମ ଜମିଦାର ଶ୍ରୀ ମହାଦେବ ତ୍ରିପାଠୀଙ୍କର ଜ୍ୟେଷ୍ଠ ଓ ମଧ୍ୟମ ପୁତ୍ର ।

ଅପରିଆଣୀ ବଡ଼ଭାଇ ଥିଲେ ଚଗଲା । ସ୍କୁଲ ଯିବାକୁ ନାମଙ୍ଗ । ଗହୀରବାଟତକ କୌଣସି ମତେ କଟୁଥିଲା । କିନ୍ତୁ ଯେମିତି ସ୍କୁଲ୍ କୋଠାଘରଟି ଦୃଶ୍ୟମାନ ହେଉଥିଲା, ଚଗଲା ବଡ଼ଭାଇ ବୁଲିପଡ଼ି  ଓ କାନ୍ଦି କାନ୍ଦି ଏକାନିଃଶ୍ୱାସରେ ଦୌଡ଼ୁଥିଲେ ଗାଁ ଆଡ଼େ । ତାଙ୍କ ପଛେ ପଛେ ଫେରିଯିବାପାଇଁ ତାଙ୍କୁ ଅନୁନୟ କରି କରି ତାଙ୍କ ସାନଭାଇଟି । ଏବଂ ସବାଶେଷକୁ ଗଣ୍ଠିଲିମୁଣ୍ଡା ହଳିଆ ।

ତିନିହେଁ ଆଗପଛ ହୋଇ ଦୌଡ଼ି ଦୌଡ଼ି ଘରେ ପହଞ୍ଚିଲାବେଳକୁ ଦ୍ୱିପ୍ରହର । ପ୍ରାୟତଃ ସେତିକି ବେଳକୁ ଭୋଜନାନ୍ତେ ଦାଣ୍ଡପିଣ୍ଡାରେ ବସି ପିତା ହସ୍ତପ୍ରକ୍ଷାଳନ କରୁଥିଲେ । ସ୍ୱୟଂ ଥିଲେ ବିଦ୍ୟାର ପୂଜାରୀ । ଜାଣିଥିଲେ ଏଇ ପ୍ରତ୍ୟାବର୍ତ୍ତନ ଦୁଷ୍ଟ ଜ୍ୟେଷ୍ଠପୁତ୍ରର ହିଁ କାମ । ମଧ୍ୟମ ପୁତ୍ରଟି ଯେ ଅତି ସୁଧାର । କ୍ରୋଧ ବଶତଃ ହାତରେ ଧରିଥିବା ବିରାଟକାୟ ପିତଳଗଡୁରେ ପାହାରେ ଦିପାହାରେ ଦେଉଥିଲେ ଜ୍ୟେଷ୍ଠପୁତ୍ରକୁ । ଦ୍ୱିତୀୟ ପୁତ୍ରଟି କିନ୍ତୁ କେବେ ବି ଶାସ୍ତି ପାଉନଥିଲା । କରଣ ପିତା ବୁଝୁଥିଲେ ବଡ଼ଭାଇ ଫେରିଆସିବାରୁ ସାନଭାଇଟି ବାଧ୍ୟ ହେଇ ଫେରିଆସିଛି ।

ସେତେବେଳର ସେଇ ସୁଧାର ପୁତ୍ରଟି ହେଉଛି କୁଞ୍ଜବିହାରୀ ଉର୍ଫ ଡ଼କ୍ଟର କୁଞ୍ଜବିହାରୀ ତ୍ରିପାଠୀ ଉର୍ଫ ମୋ ବାପା । ପିଲାଦିନୁ ହିଁ ଥିଲେ ଶିଷ୍ଟ, ମିତଭାଷୀ ଓ ବିନୀତ ସ୍ୱଭାବର । ତାଙ୍କ ପିଲାଦିନର ଅନେକ କାହାଣୀ ବୁଢ଼ୀମା'ଙ୍କଠୁ ଶୁଣି ବୋଉ ଆମ୍ଭମାନଙ୍କ ଆଗରେ ବର୍ଣ୍ଣନା କରିଛି । ଉପରୋକ୍ତ ଉପାଖ୍ୟାନଟି ତନ୍ମଧ୍ୟରୁ ଗୋଟିଏ ।

ବାପାଙ୍କୁ ବର୍ଣ୍ଣନା କଲାବେଳେ ପ୍ରାୟତଃ ବିଜ୍ଞଜନମାନେ ଦେବୋପମ ଓ ଋଷିପ୍ରତିମ ଶବ୍ଦ ଦୁଇଟି ବ୍ୟବହାର କରନ୍ତି । ମତେ ଲାଗେ ଯେମିତି ବାପା ଅନ୍ୟ କାହା ସହିତ ନୁହଁନ୍ତି, କେବଳ ତାଙ୍କରି ସହିତ ହିଁ ତୁଳନୀୟ । କାରଣ ମୁନିଋଷି ମାନେ କେବେ କେମିତି କ୍ରୋଧାନ୍ୱିତ ହେବାର ପ୍ରମାଣ ରହିଛି । ଦେବତାମାନଙ୍କର ସ୍ଖଳନର ଉଦାହରଣ ରହିଛି ମଧ୍ୟ । ବାପା କିନ୍ତୁ ଚିରଜୀବନ ରହିଗଲେ କ୍ରୋଧଶୂନ୍ୟ ଓ ନିଷ୍କଳୁଷ ।

ଧୂଳିମାଟିର ସଂସାରରେ ରହିସୁଦ୍ଧା ଧୂଳିକଣାଟିଏ କେଉଁଦିନ ଲାଗିଲାନି ଦେହରେ ବା ମନରେ । ପବିତ୍ର, ପରିଚ୍ଛନ୍ନ ଜୀବନଟିଏ ଯାପନ କରିଗଲେ ନବେବର୍ଷ ଧରି ।

ବାପାଙ୍କୁ କେବେ ଜୀବନରେ ଅସଂଯତ କଥାପଦେ କହିବାର ଶୁଣିନି । ସମ୍ଭାଷଣ ଥିଲା ମଧୁର ଓ ଆନ୍ତରିକ । ଭାଷା ଥିଲା ମୃଦୁ । ସ୍ୱର ଉତ୍ତୋଳନ କରି ଦିନେ କାହା ସହିତ କଥା କହିନାହାନ୍ତି ନା ଦେଇଛନ୍ତି କାହାରି ମନରେ କଷ୍ଟ । ପୃଥିବୀର ସବୁତକ ଗରଳ ନିଃଶବ୍ଦରେ ପାନକରି ନୀଳକଣ୍ଠ ହୋଇଯାଇଛନ୍ତି ପଛେ, ଦିନେ କାହାପ୍ରତି ହିଂସା, ଦ୍ୱେଷ ବା ବୈରଭାବ ପୋଷଣ କରିନାହାନ୍ତି । ନା ପରଚର୍ଚ୍ଚା କରିଛନ୍ତି ନା ପର ନିନ୍ଦା ଶୁଣିଛନ୍ତି । ଆତ୍ମପ୍ରଚାର ବିହୀନ, ଅନହଂକୃତ ସ୍ୱଭାବ । ଶେଷ ପର୍ଯ୍ୟନ୍ତ ତାଙ୍କ ଜୀବନ ରହିଯାଇଛି ଆଦର୍ଶବାଦର ଏକ ଖୋଲା, ଅମ୍ଳାନ ପୋଥି ହୋଇ ।

ତାଙ୍କ ସଂପର୍କରେ କିଏ କଅଣ କହିଲା, କିମ୍ବା କିଏ କିପରି ବ୍ୟବହାର କଲା, ସେ ସଂପର୍କରେ ଥିଲେ ସଂପୂର୍ଣ୍ଣ ରୂପେ ନିଃସ୍ପୃହ । ତାଙ୍କର ବ୍ୟବହାର ସଦାସର୍ବଦା ଥିଲା ସୌଜନ୍ୟମୂଳକ । ଏଇ ପରିପ୍ରେକ୍ଷୀରେ ଗୋଟିଏ ସାନଘଟଣା ମୋର ମନେପଡ଼େ ।

ପରିଣତ ବୟସର ବାପା ଥରେ ଯାଇଥିଲେ ଗାଁକୁ । ଜେଜେବାପା ଥିଲେ ଜମିଦାର ଓ ପ୍ରଚୁର ଭୂସଂପତ୍ତିର ମାଲିକ । ଜେଜେବାପା ଓ ଦଦେଇଙ୍କ ମୃତ୍ୟୁପରେ ଗାଁ ଘର ହେଇଗଲା ମୁରବୀବିହୀନ । ସ୍ୱାଭାବିକ୍ ଭାବରେ କୁଟୁମ୍ବମାନଙ୍କ ଭିତରେ ଜମିସଂକ୍ରାନ୍ତୀୟ ଗଣ୍ଡଗୋଳ ବାରମ୍ବାର ଉପୁଜୁଥିଲା । ବାପା ଗାଁରେ ପହଞ୍ଚିଲା ପରେ, ଜଣୈକା ମହିଳା - ସଂପର୍କରେ ବାପାଙ୍କର ଦୂର ସଂପର୍କର ଭ୍ରାତୃଜାୟା - ଉକ୍ତ ଜମିଉପରେ ମାଲିକାନା ଜାହିର୍ କରି ବାପାଙ୍କୁ ଅତ୍ୟନ୍ତ ଅଶାଳୀନ ଭାଷାରେ ଗାଳିଗୁଲଜ କରିଥିଲେ । ବାପା ତାଙ୍କ ସ୍ୱଭାବ ସୁଲଭ ଭଙ୍ଗୀରେ ନୀରବ ରହିଥିଲେ । ଏମିତିରେ ବି ବାପା କଥା କହନ୍ତି କମ୍ । ଦୈବାତ୍ ତା' ପରଦିନ ଉକ୍ତ ମହିଳାଙ୍କ ଘରେ ଚୋରି ହେଇଥିଲା । ଏବଂ ବାପା କେବଳ କଟକ ପର୍ଯ୍ୟନ୍ତ ବସ୍‌ଭଡ଼ା ପକେଟ୍‌ରେ ରଖି, ନିଜପାଖରେ ଥିବା ସମସ୍ତ ମୁଦ୍ରା ତାଙ୍କୁ ଦେଇ ଆସିଥିଲେ । ଘରେ ପହଞ୍ଚିଲା ପରେ ତାଙ୍କଠୁ ଏ କଥା ଶୁଣି ବୋଉ ତାଙ୍କୁ ବିଲ୍‌କୁଲ୍ ବୋକାଲୋକଟିଏ ବୋଲି ବର୍ଣ୍ଣନା କରିଥିଲା ଏବଂ କହିଥିଲା "କିଏ ଶୁଖିଲା କାଠଖଣ୍ଡେ ଧରି ଭରା ନଈ ପାର ହୁଏ । ମୁଁ ବେକରେ ପଥରଟିଏ ବାନ୍ଧି ଏ ଭବସାଗର ପାର କରିବାକୁ ଚେଷ୍ଟା କରୁଛି ।" ବୋଉ ବାପାଙ୍କ ଉପରେ ରାଗିଥିଲେ ସୁଦ୍ଧା ଅବଶ୍ୟ ଠିକ୍ ବୁଝିଥିଲା ଯେ ସିଏ ବେକରେ ବାନ୍ଧିଥିବା ପଥରଟି କିଛି ସାଧାରଣ ପଥର ନ ଥିଲା, ଥିଲା ହୀରାମୁଣ୍ଡାଟିଏ ।

ଅଧ୍ୟାପନାରେ ବାପା ଥିଲେ ସଚ୍ଚୋଟ୍ । ସାରାଜୀବନ ଛାତ୍ରମାନଙ୍କୁ ପଢ଼ାଇ ଆସିଛନ୍ତି ନିଷ୍ଠାର ସହିତ । ଥରଟିଏ ବି ଅନୁପସ୍ଥିତ ରହିନାହାନ୍ତି ଶ୍ରେଣୀରେ । ପଚାଶ

ମିନିଟ୍ ପିରିୟଡ୍‌ରୁ ମିନିଟିଏ ବି ଅପବ୍ୟୟ କରିନାହାନ୍ତି ଥରଟିଏ ହେଲେ । ବାପା ଅବସର ଗ୍ରହଣ କରିସାରିଲା ପରେ ଶ୍ରୀଯୁକ୍ତ ରାଧାନାଥ ରଥଙ୍କ ଅନୁରୋଧରେ କଟକର ଏକ ମହିଳା କଲେଜରେ କିଛି ଦିନ ପାଇଁ ପ୍ରିନ୍‌ସିପାଲ୍ ଥିଲେ । ଯେଉଁଦିନ ଯେଉଁ ଅଧ୍ୟାପିକା ଅନୁପସ୍ଥିତ ରହୁଥିଲେ, ସେଦିନର ସେଇ କ୍ଲାସ୍‌ଟି – ଇତିହାସର ହେଉ ବା ଇଂରାଜୀ କବିତାର, ବହିଟି ପଢ଼ି ଦେଇ ବାପା ହିଁ ନେଉଥିଲେ । ଉଦ୍ଦେଶ୍ୟ – ପିଲାମାନଙ୍କର ପାଠପଢ଼ା ଯେମିତି ବ୍ୟାଘାତ ନ ହୁଏ ।

ତାଙ୍କ ଲେଖା ଅଜସ୍ର ସାରଗର୍ଭକ ଇଂରାଜୀ ପ୍ରବନ୍ଧ – ଭାଷାତତ୍ତ୍ୱ ତଥା ଶିଳାଲେଖ ଉପରେ – ଭାରତବର୍ଷରେ ତଥା ଭାରତ ବାହାରେ, ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ତାଙ୍କର ଜୀବନଶୈଳୀ ପରି, ତାଙ୍କ ଇଂରାଜୀ ଲେଖା ଥିଲା ନିର୍ଭୁଲ୍ ଓ ଅସ୍ପଷ୍ଟତାବର୍ଜିତ । ତାଙ୍କ ଦ୍ୱାରା ଇଂରାଜୀରେ ଲିଖିତ ତାଙ୍କର ପ୍ରମାଣିକ ଗ୍ରନ୍ଥ – An evolution of Oriya language and script - ତାଙ୍କ ଜ୍ଞାନର ଗଭୀରତାର ଏକ ଜ୍ୱଳନ୍ତ ନିଦର୍ଶନ ।

ମୁଁ ଯେତେବେଳେ ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ତୁଳନାତ୍ମକ ସାହିତ୍ୟରେ ଏମ୍.ଲିଟ୍. କରୁଥିଲି, ଆମର ଗୋଟିଏ ପ୍ରଶ୍ନପତ୍ର ଥିଲା 'ସଂସ୍କୃତ ପୋଏଟିକ୍‌ସ' ଉପରେ । ଏବଂ ସେ ବିଷୟବସ୍ତୁଟି ମୁଁ ଆଦୌ ବୁଝିପାରୁନଥିଲି । ପରୀକ୍ଷାପାଇଁ ବେଶ୍ ବିବ୍ରତ ହେଇପଡ଼ିଥିଲି ମଧ୍ୟ । ଥରେ ଘରକୁ ଆସିଲାବେଳେ ବାପାଙ୍କୁ ଏକଥା କହିବାରୁ ବାପା ମୋତେ ତାଙ୍କ ଆଲ୍‌ମାରୀ ଖୋଲି ଗୋଟିଏ ବେଶ୍ ମୋଟା ବାଇଣ୍ଡିଙ୍ଗ୍ ଖାତାଟିଏ କାଢ଼ି ଦେଇଥିଲେ । ଖାତାଟିର ପ୍ରଥମ ପୃଷ୍ଠାରେ ଇଂରାଜୀରେ ଲେଖା – ଶ୍ରୀ କୁଞ୍ଜବିହାରୀ ତ୍ରିପାଠୀ, ପଞ୍ଚମ ବାର୍ଷିକ ଶ୍ରେଣୀ, ପାଟ୍‌ନା ବିଶ୍ୱବିଦ୍ୟାଳୟ । ଭିତରେ ରସ, ଧ୍ୱନି, ରୀତି, ଅଳଙ୍କାର, ନାଟ୍ୟଶାସ୍ତ୍ର, ଅଭିଧା, ଲକ୍ଷଣା ଓ ବ୍ୟଞ୍ଜନା ଇତ୍ୟାଦି ବିଷୟମାନଙ୍କରେ ଇଂରାଜୀଭାଷାରେ ଲେଖା ନିବନ୍ଧଟି ମାନ । ବିଭିନ୍ନ ବହିପଢ଼ି, ସେ ସବୁର ନିର୍ଯ୍ୟାସକୁ ଏକତ୍ରିତ କରି ବାପା ଗୋଟିଏ ଗୋଟିଏ ପ୍ରବନ୍ଧ ଲେଖି ଦେଇଥିଲେ – ପ୍ରାଞ୍ଜଳ ଓ ସରଳଭାବରେ । ସେ ଖାତାଟି ଆମୂଳଚୂଳ ପାଠ କରିସାରିଲା ପରେ, ବିଷୟତକ ମୋତେ ଅତ୍ୟନ୍ତ ସହଜ ମନେ ହୋଇଥିଲା ଏବଂ କେବଳ ସେଇ ଖାତାଟି ପଢ଼ି ବିଶ୍ୱବିଦ୍ୟାଳୟରେ ସେଇ ପେପରରେ ମୁଁ ସର୍ବୋଚ୍ଚ ନମ୍ବର ରଖିଥିଲି । ସେ ଗୌରବ ମୋର ନ ଥିଲା । ଥିଲା ସେ ଖାତାଟିର । ଆଶ୍ଚର୍ଯ୍ୟ ହୋଇଥିଲି – ପଞ୍ଚମବାର୍ଷିକ ଶ୍ରେଣୀରେ ପାଠପଢୁଥିବା ଗୋଟିଏ ଛାତ୍ରର ଏଭଳି ଅନୁଶୀଳନ । ଏଭଳି ବୁଦ୍ଧିମତ୍ତା । ସ୍ୱାଭାବିକ୍ ଯେ ଉଭୟ ବି.ଏ ଓ ଏମ୍.ଏରେ ପ୍ରଥମସ୍ଥାନ ଅଧିକାର କରି ସ୍ୱର୍ଣ୍ଣପଦକ ହାସଲ କରିଥିଲେ । ସ୍ୱାଭାବିକ ଯେ ତାଙ୍କର ଲଣ୍ଡନ୍‌ରେ ଲେଖିଥିବା ପି.ଏଚ୍.ଡ଼ି. ଥିସିସ୍‌ଟି ଏକ ଉଚ୍ଚମାନର ଗବେଷଣା ପୁସ୍ତକ ହିସାବରେ ମାନ୍ୟତାପ୍ରାପ୍ତ ଲାଭ କରିଛି ।

ପାଠ ପଢ଼ିବା ଏବଂ ପଢ଼ାଇବା କଥା ବାଦ୍ ଦେଲେ, ଦ୍ୱିତୀୟ ଯେଉଁ ଗୁଣଟି ସଚରାଚର ଏ ପୃଥିବୀରେ ପରିଦୃଷ୍ଟ ହୁଏନି, ତାହା ହେଉଛି ବାପାର କର୍ତ୍ତବ୍ୟନିଷ୍ଠା । ତାଙ୍କୁ ସମର୍ପଣ କରାଯାଇଥିବା ଦାୟିତ୍ୱଟି ତୁଲାଉଥିଲେ ସୁଚାରୁ ଓ ସଚ୍ଚୋଟ ଭାବରେ । 'ଠକିବା' ଶବ୍ଦଟି ବାପାଙ୍କ ଅଭିଧାନରେ ନ ଥିଲା ।

ଥରଟିଏ ଅଧ୍ୟାପକ ନିର୍ବାଚନ କମିଟିର ମୁଖ୍ୟ ହୋଇ ବାପା ଯାଇଥିଲେ ଓଡ଼ିଶା ବାହାରକୁ । ବାପାଙ୍କ ସାଥିରେ ତାଙ୍କଠାରୁ କନିଷ୍ଠ ଆଉ ଦୁଇଜଣ ଅଧ୍ୟାପକ - ସର୍ବମୋଟ ତିନିଜଣିଆ ଦଳଟିଏ । ଟ୍ରେନ୍‌ରେ ସାରାସମୟ, ଚାକିରିପାଇଁ ଆସିଥିବା ଦରଖାସ୍ତତକ ବାପା ପୁଙ୍ଖାନୁପୁଙ୍ଖ ଭାବରେ ପଢ଼ି ଲାଗିଥିଲେ । ଟିକିନିଖି ଭାବରେ ଯାଞ୍ଚ୍ କରିଲାଗିଥିଲେ ପ୍ରତ୍ୟେକଟି ଆବେଦନପତ୍ର । ଇଣ୍ଟରଭିଉ ଦିନ ଭୋରୁରୁ ନିତ୍ୟକର୍ମ ସାରି ଗେଷ୍ଟହାଉସ୍‌ରେ ଥିବା ଅନ୍ୟ ଦୁଇଜଣ ଅଧ୍ୟାପକଙ୍କୁ ଡ଼ାକରା ପକାଇଥିଲେ - କାଗଜପତ୍ର ଆଉଥରେ ଦେଖିନେବା ପାଇଁ । ଭୟ ଥିଲା - କାଳେ ଯୋଗ୍ୟ ପଦପ୍ରାର୍ଥୀଟି ଚାକିରି ନ ପାଇ ଭ୍ରାନ୍ତିବଶତଃ ଅନ୍ୟଜଣେ କିଏ ନିର୍ବାଚିତ ହେଇଯିବ । ଭୟ ଥିଲା - କାଳେ ଈଶ୍ୱରଙ୍କ ସାମ୍ନାରେ ସିଏ ଅସତ୍ ବୋଲି ପ୍ରମାଣିତ ହେଇଯିବେ । ବାପାଙ୍କର ଏତାଦୃଶ ଉଚ୍ଛନ୍ନ ମନୋଭାବ ଦେଖି ଅନ୍ୟ ଅଧ୍ୟାପକଦ୍ୱୟ ମୃଦୁ ହସି ମନ୍ତବ୍ୟ ଦେଇଥିଲେ "ସାର୍, କାହିଁକି ଅଯଥାରେ ଏମିତି ବ୍ୟସ୍ତ ହେଉଛନ୍ତି ? ଆମର ଟି.ଏ., ଡ଼ି.ଏ. ନେଇ ଯିବା କଥା । କିଏ ପାଇଲା କଅଣ ମିଳିବ ସେଥିରୁ ? ଆମକୁ କଣ କିଏ ଦି ପଇସା ଦବ ?" ବାପାଙ୍କ ସାଥିରେ ବୁଲିବାକୁ ଯାଇଥିବା ମୋ ସାନଭଉଣୀ ବୁଲୁ ଉପରୋକ୍ତ ଘଟଣାର ଥିଲା ପ୍ରତ୍ୟକ୍ଷଦର୍ଶୀ ଓ ଫେରିଆସି ଆମ ଆଗରେ ବିଷୟବସ୍ତୁଟିର ଅବତାରଣା କରିଥିଲା ।

ବାପାଙ୍କ ପରି ସତ୍ୟନିଷ୍ଠ ମଣିଷଟିଏ ମୁଁ ମୋ ଜୀବନରେ ଏ ପର୍ଯ୍ୟନ୍ତ ଦେଖିନି । ଅନେକବର୍ଷ ପୂର୍ବେ ଥରେ କୌଣସି ଏକ ମିଟିଙ୍ଗ ପାଇଁ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଯାଇଥିଲେ । ଯିବା ଆସିବାପାଇଁ ପ୍ରଥମଶ୍ରେଣୀର ଭଡ଼ା ମିଳୁଥିଲା । ବାପା କିନ୍ତୁ ବସ୍‌ରେ ଯାଇଥିଲେ ବୋଲି ଦେୟ ପରିମାଣ ନ ଆଣି ବସ୍‌ଭଡ଼ାର ମାତ୍ର ସାମାନ୍ୟ କେତୋଟି ଟଙ୍କା ଗ୍ରହଣ କରିଥିଲେ । ଥରଟେ ଉତ୍କଳ ବିଶ୍ୱବିଦ୍ୟାଳୟ ସିଣ୍ଡିକେଟ୍ ମିଟିଙ୍ଗ୍‌ରେ ଯୋଗଦେବାପାଇଁ ଆସିଥିଲେ ଭୁବନେଶ୍ୱର । ସେଇଦିନ ବି.ଏ. ପରୀକ୍ଷା ଦେଇଥିବା ମୋ ସାନଭଉଣୀ କୁନିର ପରୀକ୍ଷାଫଳ ବାଣୀବିହାରରେ ବାହାରିଥାଏ । ଘରେ ସନ୍ଧ୍ୟାବେଳେ ପହଞ୍ଚିଲାପରେ ମୁଁ ପଚାରିଲି, "ବାପା, କୁନିର ରେଜଲ୍‌ଟ ବାହାରିଯାଇଛି, କଅଣ ହେଲା ?" ବାପାଙ୍କର ଉତ୍ତରଟି ଅବିଶ୍ୱସନୀୟ । ସେଦିନ କୁନିର ପରୀକ୍ଷାଫଳ ବାହାରୁଛି ବୋଲି ସିଏ ଜାଣି ବି ନଥିଲେ । ପରେ ପରୀକ୍ଷାଫଳ ଆମେ ଜାଣିଲୁ ଖବରକାଗଜ ପଢ଼ି ।

ବାପା ଥିଲେ ଏକାନ୍ତ ଭାବରେ ପୋଥିପୁସ୍ତକର ପୂଜାରୀ । ବହିକୁ ମଣୁଥିଲେ ଈଶ୍ୱରସମାନ । ସାରାଜୀବନ ଧରି, ସ୍ୱଳ୍ପ ଦରମା ସତ୍ତ୍ୱେ, ଗଦା ଗଦା ବହି କିଣିଛନ୍ତି ଓ ପଢ଼ିଛନ୍ତି । ବସ୍ତୁତଃ ଜୀବନରେ କେବଳ ପଢ଼ିବା ବ୍ୟତୀତ ଅନ୍ୟ କୌଣସି କାମ ସିଏ କରିଇ ନାହାନ୍ତି । ଆମେ ଥିଲାବେଳେ ଥରଟେ ଦିଲ୍ଲୀ ଯାଇଥିଲେ । ପାଇଥିବା ସମସ୍ତ ଗସ୍ତଖର୍ଚ୍ଚ ବ୍ୟୟ କରି ବହି କିଣି ଆଣିଥିଲେ । ଖୋଜି ଖୋଜି ନେପାଳୀ ଅଭିଧାନଟିଏ ପାଇଲେନି ବୋଲି ମନଦୁଃଖ କରିଥିଲେ ମଧ୍ୟ । ବାପାଙ୍କ ପଢ଼ାଘରଟିର, କେବଳ ତାଙ୍କର ବସିବା ସ୍ଥାନଟି ଛାଡ଼ିଦେଇ, ପ୍ରତ୍ୟେକଟି ଇଞ୍ଚଥିଲା ସ୍ତୂପୀକୃତ ପୁସ୍ତକରେ ଭରା ।

ଏଇ କେଇବର୍ଷ ତଳର କଥା । ଭୁବନେଶ୍ୱର ଅବସ୍ଥାପିତ ବାପାଙ୍କର ଜଣେ ପରିଚିତ ଅଧ୍ୟାପକଙ୍କ ପାଖରେ ଶିଳାଲେଖ ସଂପର୍କୀୟ ଦୁଷ୍ପ୍ରାପ୍ୟ ବହିଟିଏ ଥିଲା ଏବଂ ଥରେ କଟକରେ ଆମଘରକୁ ସିଏ ଯିବା ସମୟରେ ସେ ବହିଟି କିଛିଦିନ ପାଇଁ ମାଗି ପଢ଼ିବାପାଇଁ ବାପା ତାଙ୍କ ଅନୁରୋଧ କରିଥିବାରୁ ସିଏ ସମ୍ମତି ପ୍ରଦାନ କରିଥିଲେ । କିନ୍ତୁ ବହିଟି ପାଇଁ ବୃଦ୍ଧାବସ୍ଥାରେ ବସ୍‌ଚଢ଼ି ଓ ହଇରାଣ ହେଇ ବାପା ବାରମ୍ବାର ଭୁବନେଶ୍ୱର ଆସୁଥିଲେ ସୁଦ୍ଧା ସିଏ ବହିଟି ଦେଉନଥିଲେ । କେଉଁଦିନ କାରଣ ଦର୍ଶାଉଥିଲେ ଯେ ସିଏ ଉପରମହଲାକୁ ଯାଇପାରିବେନି, କେଉଁଦିନ କହୁଥିଲେ ତାଙ୍କର ଏବେ ବହିଘାଣ୍ଟିବାପାଇଁ ସମୟର ଅଭାବ, ଏବଂ ଆଉ କେବେ କହୁଥିଲେ ସିଏ ବର୍ତ୍ତମାନ ଭୀଷଣ ଭାବରେ ଅସୁସ୍ଥ । ତାଙ୍କର ବ୍ୟବହାର ନିଶ୍ଚିତରୂପେ ସମୁଚିତ ଓ ସୁଭଦ୍ର ନ ଥିଲା । ତଥାପି ବୈରାଗୀ ବାପା ମୋର ପୁଣି କେଇଦିନ ପରେ ବହିପାଇଁ ପୁନର୍ବାର ଭୁବନେଶ୍ୱର ଆସୁଥିଲେ ଓ ପୁନର୍ବାର ଖାଲି ହାତରେ ଫେରୁଥିଲେ । ଶେଷ ପର୍ଯ୍ୟନ୍ତ ଅଧ୍ୟାପକଜଣଙ୍କର ଅଶାଳୀନ ବ୍ୟବହାରରେ ରାଗିଯାଇ ବିନୟ ଦିଲ୍ଲୀର ପ୍ରକାଶକଙ୍କୁ ଚିଠିଲେଖି ସେ ଦୁର୍ମୂଲ୍ୟ ବହିଟି ବାପାଙ୍କପାଇଁ ଆଣି ଦେଇଥିଲେ । ସେ ବହିଟି ପାଇ କି ଆନନ୍ଦ ବାପାଙ୍କର । ସତେ ଅବା ତାହା ସ୍ୱର୍ଗର ଅମୃତକଳସ । କାଟାରାକ୍ଟ ଯୋଗୁଁ ଦୃଷ୍ଟିଶକ୍ତି ନିଷ୍ପ୍ରଭ ହୋଇ ଆସିଥିଲା । ତେବେ ବି ଗୋଟିଏ ହାଣ୍ଡଲବାଲା ମୋଟା ଲେନ୍‌ସରେ ଦେଖି ବହିଟି ଆମୂଳଚୂଳ ପାଠ କରିଥିଲେ, ବାରମ୍ବାର । ସେଇ ହେଲା ତାଙ୍କ ଜୀବନର ସର୍ବଶେଷ ବହି ।

ପିଲାଦିନେ ଦେଖିଛି ବାପାଥିଲେ ପୂରାପୂରି ସାହେବ । ସର୍ବଦା ସୁଟ ଟାଇରେ ସଜ୍ଜିତ । ପାଦରେ ସୁଦୃଶ୍ୟ ମୋଜା ଓ ଫୁଲ ସୁ । ବାପା କଲେଜ ଯିବା ଆଗରୁ ମୁଁ ବାପାଙ୍କୁ ଜୋତା ପିନ୍ଧେଇ ଦେଇ ଲେସ୍‌ରେ ଫାଶ ପକେଇ ଦେଉଥିଲି । ଆଜିଠାରୁ ପଚାଶବର୍ଷ ତଳର ବାପାଙ୍କର ଗୋଟିଏ ଚିଠି- ଉଣିଶଶହ ଏକାବନ ମସିହା ଅକ୍ଟୋବର ମାସ ଚବିଶତାରିଖ ଦିନ ଲଣ୍ଡନ୍‌ରୁ ବୋଉକୁ ଲେଖା - ମୋ ପାଖରେ ଅଛି । ଠିକ୍ ଲଣ୍ଡନରୁ ଫେରି ଆସିବା ଆଗରୁ ବାପା ଲେଖିଛନ୍ତି । ସାଥିରେ ନେଇଯିବା ସାର୍ଟଗୁଡ଼ିକର

କଲାର ସାନ ହୋଇଯାଇଥିବା ହେତୁ ଟାଇ ବାନ୍ଧିବାରେ ଅସୁବିଧା ହୋଇଛି । ତେଣୁ ଘରେ ଥିବା ପୁରୁଣା ସାର୍ଟର କଲାର ଠାରୁ ସାମାନ୍ୟ ବଡ଼ କରି ପାରିବାରିକ ଦରଜୀ 'ରାମ' ହାତରେ ଚାରୋଟି ସାର୍ଟ ସିଲେଇ କରି ରଖିବାପାଇଁ ଜଣାଇଛନ୍ତି । ଜଣାଇଛନ୍ତି ଆଠଗଜ୍ ଭଲପ୍ୟାଣ୍ଟ କନା କିଣି ରଖିବାପାଇଁ । ସିଏ ଆସି ପହଞ୍ଚିଲେ ମାପ ନେଇ ପ୍ୟାଣ୍ଟ ସିଲାଇ କରିବେ । କାଳକ୍ରମେ ବାପାଙ୍କର ପୋଷାକ କିନ୍ତୁ ବଦଳି ଗଲା । ପିନ୍ଧିଲେ ଖଦଡ଼ ଧୋତି ଓ ପଞ୍ଜାବୀ । କେଶତକ ହୋଇଗଲା କାଶଶୁଭ୍ର । ସେ ଗୌରୋଜ୍ଜ୍ୱଳ ମୁହଁରୁ ନିର୍ଗତ ହେଲା ଏକ ସନ୍ନ୍ୟାସୀ ସୁଲଭ ଶାନ୍ତଶ୍ରୀ । ସେ ଧୀର ସମାହିତ ଚେହେରା ଏ ପର୍ଯ୍ୟନ୍ତ ଆଉ କେଉଁଠି ଦେଖିନି ।

ସନ୍ତାନମାନଙ୍କ ପ୍ରତି ଥିଲେ ଅତ୍ୟନ୍ତ ଧୈର୍ଯ୍ୟବାନ୍ ତଥା ସ୍ନେହଶୀଳ । ଜୀବନରେ ଥରଟିଏ ବି ବାପା ଆମ୍ଭମାନଙ୍କୁ ଜୋର୍‌ଗଳାରେ କଥା କହିନାହାନ୍ତି - ଆମର ଅଜସ୍ର ଅପରାଧ ମାଫ୍ କରିଦେଇଛନ୍ତି କ୍ଷମାର ମୂର୍ତ୍ତିମନ୍ତ ଅବତାର ହୋଇ । ଅଧ୍ୟାପକର ଦରମା । ପିଲାମାନେ କିଏ ଏମ୍.ଏ ପଢୁଥିଲା ତ କିଏ ଡ଼ାକ୍ତରୀ, ଆଉ କିଏ ଅବା ଇଞ୍ଜିନିୟରିଂ । କେବେ ଆମେ ବାପାଙ୍କୁ ବହିଟିଏ କିଣେଇ ଦେବାକୁ କହିଛୁ ଆଉ ବାପା ମନାକରିଛନ୍ତି ମନେ ପଡ଼େନି । ପ୍ରତ୍ୟେକଟି ବହି, ପାଠ୍ୟ ହେଉ ବା ରେଫରେନ୍‌ସ, ଆମର ଥିଲା । ସିଏ ଯେତେ ଦାମୀ ହେଉନା କାହିଁକି । ବୁଲୁ ମେଡ଼ିକାଲ ଏଣ୍ଟ୍ରାନ୍‌ସ ପରୀକ୍ଷାରେ ପାଶ୍ କଲା ଦିନ ଘରକୁ ଫେରିଥିଲେ ମେଡ଼ିକାଲ ଶବ୍ଦର ଅଭିଧାନଟିଏ ନେଇ । ଇଞ୍ଜିନିୟର ପୁତ୍ର ବଦଳିର ଚକ୍ରରେ କେଇମାସ ଦରମା ପାଇନଥିଲା ବୋଲି ପେନ୍‌ସନ୍ ଭୋଗୀ ବାପା ମୋର ତାକୁ ପଇସା ଯାଚିଥିଲେ - କାଳେ ପୁତ୍ର ହଇରାଣ ହେଉଥିବ ଭାବି । ସବା ସାନଭାଇ ପିଯୁ ଯେଉଁଦିନ ପି.ଏଚ୍.ଡ଼ି. କରିବା ପାଇଁ କାନାଡ଼ା ଗଲା, କଟକ ଷ୍ଟେସନ୍‌ରେ ଦିଲ୍ଲୀଗାମୀ ଟ୍ରେନ୍‌ରେ ତାକୁ ଚଢ଼େଇ ଛଳଛଳ ଆଖିରେ ଥରଥର ହାତରେ ତାକୁ ଆଉଁଷି ଲାଗିଥିଲେ ବାରମ୍ବାର । ଇଂରାଜୀ ଏମ୍.ଏ. ପରୀକ୍ଷା ପୂର୍ବରୁ ଏତେ ମୋଟା ମୋଟା ବହି ପଢ଼ିପାରିବନି କହି ବେବୀ କାନ୍ଦିବାରୁ ତାର ପାଠ୍ୟଇଂରାଜୀ ଉପନ୍ୟାସଟି ପଢ଼ି ତାର ସଂକ୍ଷିପ୍ତ ସଂସ୍କରଣ ବହିଟିଏ ନିଜେ ହାତରେ ଲେଖିଦେଇଥିଲେ । ଆଉ ମୋର ଜନ୍ମ ଅଧୈର୍ଯ୍ୟ ନ ହେଉଥିବା ବାପା, ଚାଉଳଆଞ୍ଜୁଳି ଧରି ମୁଁ ଦୁଆରବନ୍ଧ ଡ଼େଇଁଲାବେଳକୁ ମତେ ଛାତିକୁ ଆଉଜେଇ ନେଇ କାନ୍ଦିଥିଲେ ଅଧୀର ହୋଇ । ସଦାସର୍ବଦା ଅଭିଜ୍ଞାନଶକୁନ୍ତଳମ୍ ନାଟକର ଗୋଟିଏ ନିର୍ଦ୍ଦିଷ୍ଟ ଶ୍ଳୋକଃ ଗାଉଥିଲେ - ଯେଉଁ ଶ୍ଳୋକଃଟି ଯେଉଁଠି କଣ୍ୱମୁନି କହିଛନ୍ତି ଯେ ମୁଁ ବନବାସୀ ହୋଇ ସୁଦ୍ଧା ଶକୁନ୍ତଳାକୁ ଶାଶୁଘରକୁ ପଠାଇଦେଲାବେଳକୁ ମୋର ନୟନ ବାଷ୍ପାକୁଳ ହୋଇଉଠୁଛି । ଗୃହୀମଣିଷଟିଏ ତାର କନ୍ୟାସନ୍ତାନଟିକୁ ସ୍ୱାମୀଗୃହକୁ ପଠାଇଲାବେଳେ ତାର କେତେ କଷ୍ଟ ନ ହେଉଥିବ ସତେ !

ମୋ ପୁଅଟି ଯେତେବେଳେ ବର୍ଷକର, ମୁଁ ଏମ୍.ଏ. ପରୀକ୍ଷା ଦେବାପାଇଁ ଘରକୁ ଆସିଥିଲି । ସେତେବେଳେ ପ୍ରତ୍ୟହ ବାପା କଲେଜରୁ ଫେରିଲାବେଳକୁ ବବିପାଇଁ ଗୋଟିଏ ବ୍ରିଟାନିଆ ବିସ୍କୁଟ୍‌ର ସାନ ପ୍ୟାକେଟ୍ କିଣି ଆଣୁଥିଲେ । ସେତେବେଳେ ତାହାର ଦାମ୍ ଥିଲା ନବେ ପଇସା । ଦିନେ ମୋ ସାନଭଉଣୀ ଲୁସି ବିସ୍କୁଟତକ ଖାଇଦେଇଥିଲା । ବବି କାନ୍ଦୁଥିବାର ଦେଖି ବାପା କହିଲେ, "ମା, ତାକୁ ବିସ୍କୁଟ ଦେଉନୁ !" ମୁଁ ରାଗ ତମ୍ ତମ୍ ହେଇ କହିଲି "ବିସ୍କୁଟତକ ତ ସବୁ ଲୁସି ଖାଇଦେଇଛି । ଆଉ କେଉଁଠୁ ଆଣିବି ?" କିନ୍ତୁ ବାପାଙ୍କର ଉତ୍ତରଟି ଶୁଣି ଚମକି ପଡ଼ିଥିଲି । ବାପା କହିଲେ "ହଉ, ହଉ ପୁଅ ପାଇଁ ଆଉ ଆଣିଦେବି । ଲୁସି ବି ତ ସାନପିଲା ।" ତାଙ୍କର କିଶୋରୀ କନ୍ୟାଟି ତାଙ୍କୁ ଦିଶୁଥିଲା ମୋ ପୁତ୍ରର ସମବୟସୀ । ମୁଁ ରାଗିଗଲେ ମୋତେ କହୁଥିଲେ "ତୁ ପିଲାଦିନେ ରୁଷିକି ତଳେ ଗଡ଼ିଲା ବେଳେ ତୋ ମୁହଁଟି ଯେମିତି ଦିଶୁଥିଲା, ଏବେ ଠିକ୍ ସେମିତି ଦିଶୁଛି ।" ସବୁଠାରୁ ବଡ଼କଥା, ପ୍ରତ୍ୟେକ ମଣିଷ କେବେ ନା କେବେ ସ୍ୱସନ୍ତାନଠାରୁ କିଛି ନା କିଛି ପ୍ରତିଦାନ ଆଶା କରେ । ବାପା କିନ୍ତୁ ଦିନେ ହେଲେ ବି ତାହା ଆଶା କରିନାହାନ୍ତି । କେବଳ ସାରାଜୀବନ ଧରି ଦେଇଯାଇଛନ୍ତି ଆମକୁ । ନେଇ ନାହାନ୍ତି କିଛି ।

ସ୍ୱ ପରିବାରର ସଦସ୍ୟମାନଙ୍କର ଚର୍ଚ୍ଚା - ସିଏ ସନ୍ତାନସନ୍ତତି ହୁଅନ୍ତୁ ବା ପତ୍ନୀ - ବାପା କେବେ କାହା ଆଗରେ କରନ୍ତିନି । କିନ୍ତୁ ଥରଟିଏ କୌଣସି ଗୋଟିଏ ସଭାରେ ବୋଉର ପ୍ରଶଂସା କରିଥିଲେ । ସଭାଟି ଡ଼କା ହୋଇଥିଲା ବାପାଙ୍କ ସମ୍ମାନାର୍ଥେ । ବକ୍ତାମାନେ ବାପାଙ୍କୁ ଦେବୋପମ ମଣିଷଟିଏ ରୂପେ ବର୍ଣ୍ଣନା କରିଥିଲେ । ସଭା ଶେଷରେ ବାପା ତାଙ୍କ ବକ୍ତବ୍ୟରେ କହିଥିଲେ "ଆପଣମାନେ ମୋର ଏତାଦୃଶ ପ୍ରଶଂସା କରିଥିବା ହେତୁ ଆପଣମାନଙ୍କ ପ୍ରତି ମୁଁ କୃତଜ୍ଞ । କିନ୍ତୁ ବୋଧହୁଏ ମୁଁ ଏହାର ଯୋଗ୍ୟ ନୁହେଁ । ମୁଁ ଦୋଷ, ଦୁର୍ବଳତା ମିଶ୍ରିତ ସାଧାରଣ ମଣିଷଟିଏ ମାତ୍ର । ମୁଁ ଯେ କେତେମାତ୍ରାରେ ଅପାରଗ, ତାହା କେବଳ ମତେ ନେଇ ସଂସାର କରୁଥିବା ମିସେସ୍ ତ୍ରିପାଠୀ ହିଁ କହିପାରିବେ ।"

ସେଠାରେ ଉପସ୍ଥିତ ଥିବା ଜଣେ ଅଧ୍ୟାପକ ଅବଶ୍ୟ ବାପାଙ୍କ କଥାଟିର ମର୍ମାର୍ଥ ବୁଝିପାରିନଥିଲେ ଓ ପରଦିନ ଆସି ବୋଉକୁ କହିଥିଲେ । ମାଡ଼ାମ୍, ସାର୍ କାଲି ସଭାରେ ଆପଣଙ୍କୁ ଭାରି ନିନ୍ଦା କଲେ । ଆପଣ ଖାଲି ତାଙ୍କ ଦୋଷ ବାଛନ୍ତି ଓ ତାଙ୍କୁ ଅପାରଗ ବୋଲି କହନ୍ତି ବୋଲି କହିଲେ ।" ବୋଉ ପଚାରିଲା "ତମ ସାର୍ କଅଣ କହିଲେ ଠିକ୍ ଠିକ୍ ମତେ କହିଲ !" ଏବଂ ଅଧ୍ୟାପକ ମହାଶୟ ବାପାଙ୍କର ବାକ୍ୟ ଗୁଡ଼ିକ ଦୋହରାଇଥିଲେ । ଏବଂ ତାହା ଶୁଣି ଦରପାଚୋଇ ବୋଉ ମୋର ଟିକିଏ ମୁରୁକିହସା ମାରିଥିଲା । ବସ୍ତୁତଃ ବୋଉପ୍ରତି ବାପାଙ୍କର ବ୍ୟବହାର ଥିଲା ଅତ୍ୟନ୍ତ

ସୌଜନ୍ୟମୟ । ଦିନେ କେବେ ବୋଉକୁ ପଦେଟାଣ କଥା ବାପା କହିଛନ୍ତି ବୋଲି ମନେପଡ଼େନି, କଳିକଜିଆ ତ ବହୁ ଦୂରର କଥା । ଘରସଂସାର କଥା ବାପା କିଛି ବୁଝୁନଥିଲେ । ସମସ୍ତ ଦାୟିତ୍ୱ ଥିଲା ବୋଉଉପରେ । ସଂସାରର ଦାଉରେ ବ୍ୟତିବ୍ୟସ୍ତ ହୋଇ ବାପାଙ୍କର ବୈରାଗ୍ୟପୂର୍ଣ୍ଣ ଜୀବନଦର୍ଶନପ୍ରତି ବୋଉ ଅନେକ ସମୟରେ ବିରକ୍ତି ପ୍ରକାଶ କରୁଥିଲା । ବାପା କିନ୍ତୁ ଥିଲେ ପାଷାଣ ପରି ନିଶ୍ଚଳ । ବୋଉପ୍ରତି ତାଙ୍କ ହୃଦୟଟି ଥିଲା ଏକନିଷ୍ଠ ଓ କ୍ଷମାଶୀଳ । ରୋଜଗାରର ସମସ୍ତ ଟଙ୍କା ବଢ଼େଇଦେଉଥିଲେ ବୋଉ ହାତକୁ । ଜୀବନରେ ଦିନେ ହିସାବ ମାଗିନାହାନ୍ତି ବା କଅଣ ଖର୍ଚ୍ଚ କଲ ବୋଲି ପଚାରିନାହାନ୍ତି । ମାମୁଁ ଓ ଅଜାଙ୍କର ମୃତ୍ୟୁପରେ, ଶେଷସମୟକୁ ଆଈ ଆସି ରହିଥିଲେ ଆମଘରେ । ତାଙ୍କର ଆପ୍ରାଣ ସେବା କରିଥିଲେ ବାପା । ବୋଉର ମା' ତାଙ୍କପାଇଁ ଥିଲେ ମାତୃବତ୍ । କେତେଜଣ ସ୍ୱାମୀ ଏଭଳି ମର୍ଯ୍ୟାଦା ଦେଇପାରନ୍ତି ସ୍ୱ ପତ୍ନୀକୁ ?

ବାପାଙ୍କ ଦୈନନ୍ଦିନ ଜୀବନର ବହୁତ ସାନ ସାନ ଘଟଣାରୁ ତାଙ୍କର ବିରଳ ବ୍ୟକ୍ତିତ୍ୱର ପରିଚୟ ମିଳୁଥିଲା । ଯେପରିକି ବେଦ, ଉପନିଷଦ, ବାଇବଲ୍‌ର ପଦାବଳୀ, ରବୀନ୍ଦ୍ରନାଥଙ୍କ ଦେଶାତ୍ମବୋଧକ ଗୀତ, ମଧୁସୂଦନ ରାଓଙ୍କ ରଚିତ ଭକ୍ତିରସର ସଂଗୀତ - ସବୁକିଛି ସାମିଲ୍ ଥିଲା ତାଙ୍କ ପ୍ରାର୍ଥନାରେ । ପ୍ରତ୍ୟେହ ସନ୍ଧ୍ୟାରେ ପ୍ରାର୍ଥନା କରୁଥିଲେ ଆଖିବୁଜି । 'ତୁ' ବୋଲି କାହାକୁ ସମ୍ବୋଧନ କରୁନଥିଲେ, ଯେତେ କନିଷ୍ଠ ହେଲେ ସୁଦ୍ଧା । ବନ୍ଧୁକୁଟୁମ୍ବଙ୍କ ଘରକୁ ଖାଲି ହାତରେ ଯାଉନଥିଲେ । ସ୍ୱ ଆର୍ଥିକକ୍ଷମତାକୁ ଚାହିଁ ବିସ୍କୁଟ ପ୍ୟାକେଟଟିଏ ହେଉ, କିମ୍ବା କଦଳୀ ଫେଣାଟିଏ ହେଉ, ନିଶ୍ଚିତରୂପେ ଧରି ନେଇଯାଉଥିଲେ । କଲେଜର କରିଡ଼ର୍‌ରେ ଚାଲିକି ଯାଉ ଯାଉ କୌଣସି ଖାଲି ପଡ଼ିଥିବା ରୁମ୍‌ରେ ପଙ୍ଖା ଚାଲୁଥିଲେ ତାକୁ ଯାଇ ତତ୍‌କ୍ଷଣାତ୍ ସୁଇଚ୍ ଟିପି ବନ୍ଦ କରୁଥିଲେ - ଦେଶରେ ବିଜୁଳିର ଅପଚୟ ନ ହେଉ ବୋଲି । ଏଭଳି ଗୋଟିଏ ମଣିଷର ମୂଲ୍ୟାୟନ କରିବା ସହଜସାଧ ନୁହେଁ । ମୋର ସୀମିତ ଜ୍ଞାନ ଏବଂ ଚର୍ମଚକ୍ଷୁ ଏଭଳି ଗୋଟିଏ ମଣିଷକୁ ଠିକ୍‌ରୂପେ ବର୍ଣ୍ଣନା କରିବାପାଇଁ ଅକ୍ଷମ ନିଶ୍ଚୟ ।

## (୨)

ବାପାଙ୍କ ପଢ଼ାଘରଟି ଥିଲା ଉପର ମହଲାରେ । ବୋଉ ଏମିତିରେ ସେ ଘରକୁ କେବେ ଯାଉ ନଥିଲା । କିନ୍ତୁ ଥରଟେ କୌଣସି ପାରିବାରିକ ସମସ୍ୟା ଉପୁଜିବାରୁ, ବାପାଙ୍କ ସହିତ ତାହା ଆଲୋଚନା କରିବା ପାଇଁ ବୋଉ ଯାଇଥିଲା ତାଙ୍କ ପ୍ରକୋଷ୍ଠକୁ । ବାପାଙ୍କ ସାମ୍ନାରେ ଠିଆହୋଇ, ବିବ୍ରତ ଚିତ୍ତରେ, ବୋଉ ତାର ଘରକରଣାର ଝଂଝାଳ ବଖାଣିଲାଗିଲା । ବାପା ଚୌକୀରେ ନିର୍ବେଦଭଙ୍ଗୀରେ ବସି ବୋଉ କଥା ଚୁପ୍‌ଚାପ୍ ଶୁଣିବାକୁ ଲାଗିଲେ । କଥା ଶେଷ କରି ବୋଉ ପଚାରିଲା, "କଅଣ ଆଉ

ଭାବୁଛ ?" ବାପା ଉତ୍ତର ଦେଲେ, "ନାଇଁ, ଏଇ ପରୀକ୍ଷାଖାତାତକ ଦୁଇଦିନ ଭିତରେ ଦେଖିକି ନ ପଠେଇଲେ ପରୀକ୍ଷାଫଳ ବାହାରିବାରେ ଡ଼େରି ହେଇଯିବ । କେମିତି ତାକୁ ଶୀଘ୍ର ଦେଖିକରି ପଠେଇବି ସେଇ କଥା ଭାବୁଛି । କହିବା ବାହୁଲ୍ୟ, ବୋଉର ଟକ୍‌ଟକ୍ ଗୋରାମୁହଁ ରାଗରେ ଲାଲ୍ ପଡ଼ିଯାଇଥିଲା ।

ଏଇଥିଲେ ମୋ' ବାପା, ମୋର ଶାନ୍ତ, ସଂଯତ, ବିଦ୍ୱାନ୍ ଓ କର୍ତ୍ତବ୍ୟନିଷ୍ଠ ବାପା । ସ୍ୱଭାବ ଥିଲା ସରଳ, କିନ୍ତୁ ନିୟମକାନୁନ୍‌ରେ ଥିଲେ ଦୃଢ଼ ଓ ନିର୍ଭୀକ । ମନେଅଛି - ଥରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଥିବା ସମୟରେ ଛୁଟିରେ ଆସିଥିଲେ କଟକ । ବୋଉ ଓ ଆମେ ସବୁ ରହୁଥିଲୁ କଟକରେ । ତା ପରଦିନ ବିଶ୍ୱବିଦ୍ୟାଳୟ ଖୋଲିବ । ବାପା ଠିକ୍ ଘରୁ ବାହାରିଲାବେଳକୁ ଅଜାଡ଼ିଲା ବର୍ଷା, ମୂଷଳଧାରରେ । ରାସ୍ତାରେ ଆଣ୍ଠିଏ ପାଣିର ସ୍ରୋତ । ରହିଯିବାପାଇଁ ଯେତେ କହିଲେ ବି ମାନିଲେନି । ଗୋଟିଏ ହାତରେ ଛତା ଓ ଅନ୍ୟ ହାତରେ ସୁଟକେଶ୍‌ଟିଏ ଧରି ବାହାରିଲେ ଷ୍ଟେସନ୍ । ଶେଷପର୍ଯ୍ୟନ୍ତ ବୋଉ ରାଗିକି ତାଙ୍କପାଦରୁ ଜବରଦସ୍ତି ଜୋତା ଦୁଇଟି କାଢ଼ିନେଇ ଲୁଚେଇଦେଲା । ଖୋଜି ଖୋଜି ତଳିପାଘଷା ହାୱାଇଚପ୍‌ପଲ ଦୁଇଟି ପିନ୍ଧି ସେଇ ଖଣ୍ଡପ୍ରଳୟ ଭିତରେ ବାପା ବାହାରିଗଲେ ଘରୁ । ଷ୍ଟେସନ୍‌ରେ ପହଞ୍ଚି ଦେଖନ୍ତି ଅଳ୍ପସମୟ ପୂର୍ବରୁ ଟ୍ରେନଟି ଛାଡ଼ିଦେଇଛି । ପ୍ଲାଟ୍‌ଫର୍ମରେ ରାତି ନଅଟାରୁ ଦୁଇଟା ପର୍ଯ୍ୟନ୍ତ ବସିରହି ପରବର୍ତ୍ତୀ ଟ୍ରେନ୍‌ରେ ଗଲେ ବରହମ୍ପୁର । କିନ୍ତୁ ଘରକୁ ଆସିଲେନି । କାଳେ ବୋଉ ତାଙ୍କୁ ଜୋର୍ କରି ଅଟକାଇ ଦେବବୋଲି ।

ବାପାଙ୍କ ଆଚରଣ ବିଧି ଥିଲା କଠୋର ଅନୁଶାସନ ଦ୍ୱାରା ଶୃଙ୍ଖଳିତ । ପରୀକ୍ଷା ସଂପର୍କୀୟ ସମସ୍ତ ବ୍ୟାପାରରେ ଗୋପନୀୟତା ବଜାୟ ରଖୁଥିଲେ ଏବଂ କୌଣସି ପ୍ରକାରର ଅନ୍ୟାୟକୁ ପ୍ରଶ୍ରୟ ଦେଉନଥିଲେ । ଏଇ ପ୍ରସଙ୍ଗରେ ଗୋଟିଏ ଚମତ୍କାର ଘଟଣା ଏବେ ମନେପଡୁଛି । ପ୍ରତ୍ୟେକ ବର୍ଷ, ଏମ୍.ଏ.ରର ଭାଷାତତ୍ତ୍ୱ ପେପରଟିର ପରୀକ୍ଷକ ବାପାଇ ହେଉଥିଲେ । ଥରଟେ, ବୋଉର ଦୂର ସଂପର୍କୀୟ ଜଣେ ଭାଇ ଆମଘରକୁ ଆସି ଓ ବାପାଙ୍କୁ ଭେଟି, ତାଙ୍କର ଜାମାତାଙ୍କର ରୋଲ୍‌ନମ୍ବର ଲେଖାଥିବା କାଗଜଟି ବାପାଙ୍କ ଆଡ଼କୁ ଅତ୍ୟନ୍ତ ବିନୀତ ଭଙ୍ଗୀରେ ବଢ଼ାଇବାକୁ ଉଦ୍ୟତ ହେଲେ । ଏବଂ କାଗଜଟିକୁ ନ ଛୁଇଁ, ତଥା ମୁହଁଟିକୁ କାନ୍ଥଆଡ଼କୁ ଘୂରାଇ ଦେଇ ବାପା ତାଙ୍କୁ ବାରମ୍ବାର କହିଲାଗିଲେ, "ତୁମ ନାନୀଙ୍କ ହାତକୁ ଦିଅ, ତୁମ ନାନୀଙ୍କ ହାତକୁ ଦିଅ ।" ଚରମ ଉକ୍ରଣ୍ଠିତ ମୁହୂର୍ତ୍ତରେ ମଧ୍ୟ ବାପା ଉଚ୍ଚସ୍ୱରରେ କିମ୍ବା କଟୂ ଭାଷାରେ କଥା କହୁନଥିଲେ । ତେଣୁ ତାଙ୍କର ଗଳାର ସ୍ୱର ଥିଲା ସ୍ନିଗ୍ଧ ଓ ଅବିଚଳିତ । ଆଗନ୍ତୁକ ଭଦ୍ରଲୋକ ଶେଷପର୍ଯ୍ୟନ୍ତ କିଛି ନ ବୁଝିପାରି ବୋଉ ହାତରେ କାଗଜଟି ଧରାଇଦେଇ ବିଦାୟ ନେଇଥିଲେ ଓ ବୋଉ କାଗଜଟି ଚିରି ପିଣ୍ଡାତଳକୁ ଫିଙ୍ଗି ଦେଇଥିଲା । ଆମେ

ପଚାରିଲୁ "ବାପା, ତମେ ବି ତ କାଗଜଟିକୁ ରଖି ଚିରି ଦେଇପାରିଥାଆନ୍ତ । ବୋଉକୁ ଦବାପାଇଁ କାହିଁକି କହିଲ ?"

ବାପାଙ୍କ ଉତ୍ତରଟି ଥିଲା ଅନବଦ୍ୟ । କହିଲେ କାଳେ କାଗଜଟି ମୁଁ ହାତରେ ଧରିଥିବା ସମୟରେ ଭୁଲ୍‌ରେ ମୋ ଆଖି କାଗଜ ଉପରେ ପଡ଼ିଯାଇଥାଆନ୍ତା । କାଳେ ରୋଲ୍‌ନମ୍ବରଟି ମୋର ମନେ ରହିଯାଇଥାଆନ୍ତା । ଗୋଟିଏ ନିର୍ଦ୍ଦିଷ୍ଟ ରୋଲ୍‌ନମ୍ବର ଜାଣିଯିବା ବି ତ ଅନ୍ୟାୟ । ତେଣୁ ବୋଉଙ୍କ ହାତକୁ ଦେବା ପାଇଁ କହିଥିଲି ।

ଏତାଦୃଶ ନ୍ୟାୟବନ୍ତ, ମୋଧାବୀ ମଣିଷଟି କିନ୍ତୁ ସାଂସାରିକ ବୁଦ୍ଧିବୃତ୍ତିରେ ଥିଲେ ସଂପୂର୍ଣ୍ଣରୂପେ ଅନାଡ଼ି । ଥରଟେ ଘରେ କିଛି ପରିବାପତ୍ର ନ ଥାଏ । ବୋଉ କହିଲା ପାଖବଜାରରୁ ଅଳ୍ପ କିଛି ପନିପରିବା ନେଇ ଆସିବାପାଇଁ । ବାପା ନୀରବରେ ଥଳିଧରି ବାହାରିଗଲେ ଘରକୁ ଲାଗିକରି ଥିବା ଛତ୍ରବଜାରକୁ । ଫେରିଆସିଲେ ମଧ ଅଳ୍ପ ସମୟ ପରେ । ବୋଉ ପନିଖି ପକେଇ, ବାପାଙ୍କ ହାତରୁ ଥଳିଟି ନେଇ କୁଲାରେ ଅଜାଡ଼ି ଦେଲାବେଳକୁ ଥଳିରୁ ଗଲ୍ ଗଲ୍ ହୋଇ ଗଳିପଡ଼ିଲା କୋଡ଼ିଏଟି ଲେମ୍ବୁ, ଅଧକିଲୋ ଅଦା ଏବଂ କିଲୋ ଲେଖାଏଁ କାକୁଡ଼ି ଓ କରମଙ୍ଗା । ବୋଉ ତଥାକଥିତ ପରିବାର ରୂପ ଦେଖି ହସିବ କି କାନ୍ଦିବ ଜାଣିପାରିଲାନି । ତା ପରଠାରୁ ବାପାଙ୍କୁ ଆଉ କେବେ ବଜାରସଉଦା କରିବାପାଇଁ ବୋଉ କହିଥିବାର ମୋର ମନେପଡୁନି । ବାପା ମଣିଷଟିଇ ଯେ ଥିଲେ ନିଆରା । କିଏ ରସ ପାଏ ଫୁଲ ପାଖୁଡ଼ାରୁ । ସିଏ ରସ ପାଉଥିଲେ ପଥରରୁ - ଶିଉଳିଲଗା ଶିଳାଲେଖାରୁ ।

ବାପା ଯଦି ଜୀବନରେ ସବୁଠୁ କାହାକୁ ବେଶୀ ଭଲପାଉଛନ୍ତି ତାହା ହେଉଛି ବହି । ବାପାଙ୍କ ବହିପ୍ରୀତିର ଗୋଟିଏ ଚମତ୍କାର ଉଦାହରଣ ଏଇ ପରିପ୍ରେକ୍ଷୀରେ ମନେପଡ଼େ । ଜିଦ୍ଦି ଓ ଅମାନିଆ ସନ୍ତାନପ୍ରତି ବାପା ଯେ କେତେବେଶୀ କ୍ଷମାଶୀଳ ଓ ଧୈର୍ଯ୍ୟଶୀଳ ଥିଲେ ଘଟଣାଟି ତାହା ବି ପ୍ରମାଣ କରେ ।

ମୁଁ କଲେଜରେ ପଢ଼ିଲାବେଳର କଥା । ବାପା ଯାଉଥିଲେ ଓରିଏଣ୍ଟାଲ୍ କନ୍‌ଫରେନ୍‌ସରେ ଯୋଗ ଦେବାପାଇଁ ଦିଲ୍ଲୀ । ବୁଲିବାପାଇଁ ସାଥିରେ ଗଲି ମୁଁ । ଫେରନ୍ତାବାଟରେ ଦିନେ ରହିଲୁ କଲିକତାରେ । କଥା ଥିଲା ମୁଁ ପ୍ଲାନେଟୋରିୟମ୍ ଦେଖିବି । ଦିନ ଦଶଟାରେ ଟାକ୍ସି ଧରି ବାହାରିଲୁ । ବାପା ଆଗ ଗଲେ ଏସିଆଟିକ୍ ସୋସାଇଟିର ଲାଇବ୍ରେରୀ । ପ୍ଲାନେଟୋରିୟମ୍‌ର ଶୋ ଥିଲା ଦିନ ଦୁଇଟାରେ । କେତୋଟି ପୁରୁଣା ସୋଫା ପଡ଼ିଥିବା ଓ ଜରାଜୀର୍ଣ୍ଣ କାଗଜର ଗନ୍ଧ ଉତୁରି ଆସୁଥିବା ଏକ ପ୍ରାୟାନ୍ଧକାର ବିଶ୍ରାମକକ୍ଷରେ ମୋତେ ବସାଇଦେଇ, ବାପା ଗଲେ ଭିତରକୁ । ବାପା ସେ ଲାଇବ୍ରେରୀର ଆଜୀବନ ସଦସ୍ୟ ଥିଲେ । ମୁଁ ଚୁପ୍‌ଚାପ୍ ବସି ରହିଲି ।

ନୀରବ, ନିଃଶବ୍ଦ ପରିବେଶ । ମଝିରେ ମଝିରେ କିଛି ଲୋକମାନଙ୍କର ଆତଯାତ, ଘଣ୍ଟାକଣ୍ଟା ମିନିଟ୍ କଣ୍ଟା ଆଗେଇଚାଲିଲା । ଏବଂ ମୋ'ର ସଂପୂର୍ଣ୍ଣ ଧୈର୍ଯ୍ୟଚ୍ୟୁତି ଘଟିସାରିବା ପରେ ବାପା ଭିତରୁ ବାହାରିଲେ ଅପରାହ୍ନରେ । ପ୍ଲାନେଟରିୟମର ସୋ'ର ସମୟ ଅତିକ୍ରାନ୍ତ ହେବାର ଅନେକ ପରେ ।

ଏବଂ ମୁଁ ବାପାଙ୍କ ଉପରେ ରାଗି ଏବଂ ତାଙ୍କ ସହିତ କଥା ନକହି, ତାଙ୍କଠାରୁ ବେଶ୍ ଦୂରରେ କଲିକତାର ରାଜରାସ୍ତାର ଧାରେ ଧାରେ ତଗ୍‌ତଗ୍ କରି କ୍ଷିପ୍ରଗତିରେ ଚାଲିଲାଗିଲି । ଆଉ ବାପା ବଡ ବଡ ପାହୁଣ୍ଡ ପକାଇ ମୋତେ ଅନୁସରଣ କରୁ କରୁ ଅତ୍ୟନ୍ତ ସହିଷ୍ଣୁ ଓ ସ୍ନେହମୟ ଗଳାରେ ମୋତେ ବୁଝାଇ ଲାଗିଲେ - "ତୁ ରାଗନା ମା ! ଆଜି ଏତିକି ସମୟ ଭିତରେ ମୁଁ ଏଠି ଯେଉଁ ସବୁ ବହି ଦେଖିଲି ଓ ପଢିଲି ତାହାର ମୂଲ୍ୟ ଯେ ମୋ' ପାଇଁ କେତେବେଶୀ ତୁ ବୁଝିପାରିବୁନି । ତୁ ରାଗନା" । ଏହାର ଠିକ୍ ପନ୍ଦର ବର୍ଷପରେ ସଦ୍ୟ ଏମ୍.ବି.ବି.ଏସ୍. ପାଶ୍ କରିଥିବା ମୋ ସାନଭଉଣୀ ବୁଲୁ ଯେବେ ବାପାଙ୍କ ସହିତ କଲିକତା ଯାଇଥିଲା, ଲାଇବ୍ରେରୀ ତଥା ପ୍ଲାନେଟେରିୟମ୍ ସଂକ୍ରାନ୍ତୀୟ ଏଇସବୁ ଦୃଶ୍ୟାବଳୀର ପୁନରାବୃତ୍ତି ସେତେବେଳେ ମଧ୍ୟ ଠିକ୍ ଏଇଭଳି ଭାବରେ ଘଟିଥିଲା । ବହି ଗହଣରେ ପଶିଗଲେ, ବାପାଙ୍କ ପାଇଁ ସମୟ ହେଇ ଯାଉଥିଲା ପୂରାପୂରି ସ୍ଥିର । ବାପା ଯଦି ଜୀବନରେ ସବୁଠୁ କାହାକୁ ବେଶୀ ଭଲ ପାଉଥିଲେ, ତାହା ହେଉଛି ବହି । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ବହି ଚାରୋଟି ଧରି ଘରମୟ ଘୂରିବୁଲିଛନ୍ତି ଓ ତକିଆ ପାଖରେ ବହି କେତୋଟି ରଖି ନିଦ୍ରା ଯାଇଛନ୍ତି ।

ପିତା ହିସାବରେ ଥିଲେ ସଂପୂର୍ଣ୍ଣରୂପେ କ୍ରୋଧଶୂନ୍ୟ ଓ ସ୍ନେହଶୀଳ । ଥିଲୁ ତଳ ଉପର ଅନେକଗୁଡ଼ିଏ ଭାଇ ଭଉଣୀ । ସଭିଏଁ ପାଠ ପଢୁଥିଲୁ । ସ୍ୱାଭାବିକ ଭାବରେ, କେତେବେଳେ ପରୀକ୍ଷାଫଳ ଭଲ ହେଉଥିଲା, ଆଉ କେତେବେଳେ ବା ଖରାପ । ଆମେ କିନ୍ତୁ ପରୀକ୍ଷାରେ ଶହେରୁ ନବେ ରଖୁ ବା ପଚାଶ, ବାପା ପରୀକ୍ଷାଫଳ ବୁଝି ଘରକୁ ଫେରିଲା ବେଳକୁ ମିଠା ହାଣ୍ଡିଟିଏ ଧରି ଘରକୁ ଆସୁଥିଲେ । ଥରେ ବେବୀ କହିଲା "ବାପା, ମୋର ତ ଏଥରକ ପରୀକ୍ଷାରେ ସେତେ ଭଲ ହେଇନି । ତେବେ ବି ତମେ ମିଠା ନେଇକି ଆସିଚ ?" ବାପା କହିଲେ, "ନ ଆଣିଥିଲେ ଯେ ତୁ ମନଦୁଃଖ କରିଥାଆନ୍ତୁ ବେବୀବୁଢ଼ୀ । ଭାବିଥାଆନ୍ତୁ ବାପା ବୋଧହୁଏ ମୋ' ଉପରେ ଅସନ୍ତୁଷ୍ଟ ।" ମୋର ତ ରୀତିମତ ସନ୍ଦେହ ହୁଏ ପୃଥିବୀରେ ଏଭଳି ପିତାଟିଏ ଆଉ କାହାର ଅଛନ୍ତି ବୋଲି । ବାପାଙ୍କର ନୀତି ଥିଲା - କର୍ମଣ୍ୟେବାଧିକାରସ୍ତେ ମୋ ଫଳେଷୁ କଦାଚନ । ମନଦେଇ ପଢ଼ାପଢ଼ି କର । ଫଳାଫଳ ପାଇଁ ବିବ୍ରତ ହୁଅନା ।

ବାରମ୍ବାର ବାପାଙ୍କ ମୁହଁରୁ ଶୁଣିଛି, ତାଙ୍କ ଜୀବନରେ ଦୁଇଟି ବଡ଼ ଦୁଃଖ ରହିଗଲା । ତାଙ୍କର ପଇସା ଥିଲେ ସିଏ ଆମ୍ଭମାନଙ୍କୁ ପ୍ରତିବର୍ଷ ଖରାଛୁଟିରେ କେଉଁ ଏକ ଦର୍ଶନୀୟ ସ୍ଥାନକୁ ବୁଲେଇ ନେଇଥାଆନ୍ତେ ଏବଂ ପ୍ରତିଦିନ ଆମ୍ଭମାନଙ୍କୁ ରସଗୋଲା ଖାଇବାକୁ ଦେଇଥାଆନ୍ତେ । ଆମେ ଜଳଖିଆ କରୁଥିଲୁ ବରାପିଆଜି । ଆଉ ବାପାଙ୍କ ମୁଣ୍ଡରେ କେଜାଣି କାହିଁକି ଗୋଟିଏ ବଦ୍ଧମୂଳ ଧାରଣା ଥିଲା ଯେ ବିରି ବୁଦ୍ଧିନାଶ କରେ । ମଗଜକୁ ତୀକ୍ଷ୍ଣ କରାଏ ଛେନା । ଅବଶ୍ୟ ବାପା ତାଙ୍କର ପରିମିତ ଦରମାରେ ପିଲାମାନଙ୍କୁ ରସଗୋଲା ଖୁଆଇବାର ସ୍ୱପ୍ନ ଦେଖୁ ଦେଖୁ, କେବେ ଦିନେ ତାଙ୍କର ସନ୍ତାନମାନେ, ନିଜଖର୍ଚ୍ଚରେ ପ୍ରତିଦିନ ରସଗୋଲା ଖାଇପାରିଲା ଭଳିଆ ଯୋଗ୍ୟ ଓ ସମର୍ଥ ହୋଇଗଲେ । ପ୍ରଚୁର ରସଗୋଲା ଖୁଆଇ ଲାଗିଲେ ବାପାଙ୍କୁ ମଧ । ରସଗୋଲା ଯେ ଭାରି ପ୍ରିୟ ଥିଲା ବାପାଙ୍କର ।

ବାପାଙ୍କୁ କେବେ ଭୁଲ୍‌ରେ ବି ପରଚର୍ଚ୍ଚା ବା ପରନିନ୍ଦା କରିବାର ଦେଖିନି । ଥିଲେ ମିଷ୍ଟଭାଷୀ । କଥା କହୁଥିଲେ କମ୍ ଏବଂ ତାହା କହୁଥିଲେ ଧୀର ସ୍ୱରରେ । ବ୍ୟବହାର ଥିଲା ଶିଷ୍ଟ ଓ ମାର୍ଜିତ । କାହାରି ମନରେ କଷ୍ଟ ଦେବା କିମ୍ୱା କାହାରିକୁ ବିବ୍ରତ କରିବା ଥିଲା ତାଙ୍କ ସ୍ୱଭାବ ବିରୁଦ୍ଧ ।

ପୌତ୍ରପୌତ୍ରୀ ନ ହେବା ପର୍ଯ୍ୟନ୍ତ କନ୍ୟାମାନଙ୍କ ଘରେ ଜଳସ୍ପର୍ଶ କରୁନଥିଲେ । ମୋ ସାନଭଉଣୀର ପ୍ରଥମ ସନ୍ତାନ ଜନ୍ମହେବାପରେ, ନାତୁଣୀକୁ ଦେଖିବାପାଇଁ ଯାଇଥିଲେ ତା ଶାଶୁଘରକୁ । ଏବଂ ତାଙ୍କଘରେ ସେଦିନ ଭୋଜନ କରିବାପାଇଁ ରାଜି ହୋଇଥିଲେ । ବୁଲୁ ଶାଶୁ ଅତ୍ୟନ୍ତ ଆଗ୍ରହରେ ଅନ୍ନବ୍ୟଞ୍ଜନ ରାନ୍ଧି ପରିବେଷଣ କଲେ ସମ୍ୱନ୍ଧୀଙ୍କୁ । ବାପା ଭୋଜନ କରି ଉଠିଯିବାପରେ ଯେତେବେଳେ ଘର ଲୋକେ ଖାଇବସନ୍ତି, ସେମାନେ ଆବିଷ୍କାର କଲେ ଯେ ଡାଲିଟି ଥିଲା ସଂପୂର୍ଣ୍ଣରୂପେ ଅଲଣା । ରାନ୍ଧୁଣୀ ଲୁଣ ପକାଇବାକୁ ଭୁଲିଯାଇଥିଲେ । କାଳେ ସମୁଦୁଣୀ ବିବ୍ରତ ହେବେ ବୋଲି, ସେ ସଂପର୍କରେ କୌଣସି ଉଚ୍ଚବାଚ୍ୟ ନ କରି, ବାପା ଗିନାକଯାକ ଅଲଣାଡାଲି ଚୁପଚାପ୍ ଖାଇଦେଇଥିଲ !

ବାପାଙ୍କ କଥା ଭାବିଲେ ବେଳେବେଳେ ବେଶ୍ ଅବାକ୍ ଲାଗେ । ପୃଥିବୀରେ ଏଭଳି ମଣିଷଟିଏ କଅଣ ସତରେ ସମ୍ଭବ ଯିଏକି ପୂର୍ଣ୍ଣମାତ୍ରାରେ କ୍ରୋଧଶୂନ୍ୟ, ନିରହଙ୍କାର ଓ ସତ୍ୟନିଷ୍ଠ ? ଏଭଳି ଲୋକଟିଏ କଅଣ ସତରେ ସୃଷ୍ଟି ହୋଇପାରନ୍ତି ଯିଏ କି ଜୀବନରେ ଥରଟିଏ ବି ଅନ୍ୟାୟ କରିନାହାନ୍ତି, ମିଛ କହିନାହାନ୍ତି କିମ୍ୱା କାହାପ୍ରତି ଅସଦାଚାରଣ କରିନାହାନ୍ତି ? ସତରେ କଅଣ ଏହା ସମ୍ଭବ ?

ପୂର୍ବଜନ୍ମରେ ଅନେକ ପୁଣ୍ୟ କରିଥିବି ନିଶ୍ଚୟ । ନ ହେଲେ ଏତାଦୃଶ ଦେବୋପମ ମଣିଷଟିର ସନ୍ତାନହେବାର ଏକକ ମର୍ଯ୍ୟାଦା ମତେ ମିଳିଥାଆନ୍ତା କାହିଁକି ?

## (୩)

କାହାଣୀଟି ଅଧ୍ୟାପକ ମହେଶ୍ୱର ମହାନ୍ତିଙ୍କଠାରୁ ଶୁଣା । ତାଙ୍କ ଛାତ୍ରଜୀବନର ଘଟଣା ।

ବାପା ଏମ୍.ଏ. ଶ୍ରେଣୀରେ ପଢ଼ାଉଥିଲେ ଭାଷାତତ୍ତ୍ୱ । ଘଣ୍ଟିବାଜିବା ସାଙ୍ଗେ ସାଙ୍ଗେ ଆସନ୍ତି କ୍ଲାସ୍‌କୁ । ପଚାଶ ମିନିଟ୍‌ର ପିରିୟଡ୍‌ରୁ ଗୋଟିଏ ମିନିଟ୍ ବି ନଷ୍ଟ କରିବାକୁ ନାରାଜ ।

ସେଦିନ କିନ୍ତୁ କେତୋଟି ମିନିଟ୍ ଅତିକ୍ରାନ୍ତ ହୋଇସାରିଥିଲେ ବି ବାପା କ୍ଲାସ୍‌ରେ ପହଞ୍ଚିନଥିଲେ । ଜୀବନର ପ୍ରଥମଥର ପାଇଁ, ଦେବୋପମ ଅଧ୍ୟାପକଜଣଙ୍କର ଏତାଦୃଶ ବେନିୟମରେ, ଛାତ୍ରଗଣ କିଞ୍ଚିତ୍ ଆଶ୍ଚର୍ଯ୍ୟ ହେବାକୁ ଆରମ୍ଭ କରିଥିଲାବେଳେ ବାପା ପହଞ୍ଚିଥିଲେ ତରତର ହୋଇ । ପାଠପଢ଼ା ଚାଲିଲା ଠିକ୍‌ଠାକ୍ । ପିରିୟଡ୍ ଶେଷ ହେବା ପରେ ଜଣେ ଛାତ୍ର ବାପାଙ୍କୁ ତାଙ୍କ ବିଳମ୍ବର କାରଣ ପଚାରିବାରୁ, ବାପା ଯେଉଁ ଉତ୍ତରଟି ଦେଇଥିଲେ ତାହା ଥିଲା ବେଶ୍ ଚମକପ୍ରଦ ।

ସେଦିନ ସକାଳେ ଅସୁସ୍ଥ ବୋଉକୁ ନେଇ ବାପା ଯାଇଥିଲେ ହସ୍‌ପିଟାଲ୍ । ଡ଼ାକ୍ତରଙ୍କର ପରାମର୍ଶ ଅନୁଯାୟୀ ବୋଉର କେତେଗୁଡ଼ିଏ ପାଥୋଲୋଜିକାଲ ପରୀକ୍ଷା ନିରୀକ୍ଷା କରିବାକୁ ପଡ଼ିଲା । ପରୀକ୍ଷା ପରେ ନିର୍ଦ୍ଧାରିତ ପଇସା ପଇଠ କରିବାକୁ ଗଲାବେଳେ ବାପା ଆବିଷ୍କାର କଲେ ଯେ ତାଙ୍କ ପକେଟରୁ ଶହେଟଙ୍କିଆ ନୋଟ୍‌ଟି ହୋଇଯାଇଛି ଗାୟବ । ଘରକୁ ଯାଇ ଟଙ୍କା ଆଣିବାରେ ଆହୁରି ସମୟ ବର୍‌ବାଦ ହେବ । କ୍ଲାସ ନେଇପାରିବେନି । ତେଣୁ ବୋଉକୁ ହସ୍‌ପିଟାଲରେ ବସାଇଦେଇ ବାପା ଆସିଛନ୍ତି କଲେଜ । କଲେଜରୁ ଘରକୁ ଯାଇ ଓ ସେଠାରୁ ଟଙ୍କା ନେଇ ହସ୍‌ପିଟାଲ ଯିବେ ବୋଉକୁ ଆଣିବାକୁ ।

ଅନେକ ବର୍ଷ ଆଗର କଥା । ଜଣେ ସ୍ୱଳ୍ପବେତନଭୋଗୀ ଅଧ୍ୟାପକଙ୍କ ପାଇଁ ଶହେଟଙ୍କାର ମୂଲ୍ୟ ଏମିତି କିଛି କମ୍ ନ ଥିଲା ସେତେବେଳେ । ଜଣେ ଛାତ୍ର କହିଲେ "କୁଆଡ଼େ ଆଉ ଯିବ ସାର୍ ? ସେଇଠି କେଉଁଠି ହୁଏତ ଖସିପଡ଼ିଥିବ । ଟିକିଏ ଆଖପାଖ ଖୋଜିଲେନି ?"

"ନୋଟ୍‌ଟି ଖୋଜିଥିଲେ ଇଆଡ଼େ କ୍ଲାସ୍‌ରେ ପହଞ୍ଚିବାରେ ଢ଼େରି ହେଇଥାଆନ୍ତା ଯେ !" ବାପା ଉତ୍ତର ଦେଇଥିଲେ । ଅଧ୍ୟାପକ ହିସାବ୍‌ରେ କେତେ ବେଶୀ ନିଷ୍ଠାବାନ ଓ ସଚ୍ଚୋଟ ଥିଲେ, ତାହାର ଜ୍ୱଳନ୍ତ ଉଦାହରଣ ଏଇ ଉପାଖ୍ୟାନଟି ।

କର୍ତ୍ତବ୍ୟନିଷ୍ଠା ଥିଲା ଅପ୍ରମିତ ।

ଦେଖିଛି - ପରୀକ୍ଷା ଖାତା ମୂଲ୍ୟାଙ୍କନ କଲାବେଳେ ଖାତାର ପ୍ରତିଟି ବାକ୍ୟ, ପ୍ରତିଟି ଶବ୍ଦ ପୁନଃପୁନଃ ପଢୁଥିଲେ ବାପା । ଭୟ, କାଳେ ପିଲାଟିର ବିଦ୍ୟାବୁଦ୍ଧିର ମାନନିର୍ଦ୍ଧାରଣରେ କିଛି ଗଫିଲତି ରହିଯିବ । କାଳେ କେଉଁଠି ପିଲାଟି ପ୍ରତି ଅନ୍ୟାୟ ହୋଇଯିବ । ମାର୍କିନ କନାବନ୍ଧା, ଜଉମୁଦ୍ରମରା ଖାତା ବଣ୍ଡିଲଟି ଘରେ ପହଞ୍ଚିଲାପରେ, ବାପା ଏକରକମ୍ ଖିଆପିଆ ପାଶୋରି ଯାଉଥିଲେ । ମନଧ୍ୟାନ ରହୁଥିଲା ଖାତା ଉପରେ ।

ବାପାଙ୍କର ବ୍ୟକ୍ତିତ୍ୱଥିଲା ଶାନ୍ତ, ସମାହିତ; କିନ୍ତୁ ମଣିଷଟି ଥିଲେ ଅତିମାତ୍ରାରେ ସତ୍ୟନିଷ୍ଠ । ଅନ୍ୟାୟ ସହିତ ସାଲିସ୍ କରିବା ତାଙ୍କ ପକ୍ଷରେ ଥିଲା ଅସମ୍ଭବ ।

ବାପା ଥିଲେ ଶାକାହାରୀ ଏବଂ ଲଙ୍କାମରିଚକୁ ଭୟକରୁଥିଲେ ବ୍ୟାଘ୍ର ସଦୃଶ । ବଜାର କିଣା ଜଳଖିଆ କେବେ ବି ତାଙ୍କୁ ଖାଇବାର ଦେଖିନି; କିନ୍ତୁ ବାପା ପରିଣତ ବୟସରେ ପହଞ୍ଚିବା ପରେ ଥରଟେ ସାନଭଉଣୀ ଲୁସି ତାଙ୍କୁ ଦକ୍ଷିଣୀ ହୋଟେଲରୁ କିଣା ହୋଇ ଆସିଥିବା ଉପମା ଓ ସମ୍ବର ଜୋର ଜବରଦସ୍ତ କରି ଖୁଆଇଥିଲା ଏବଂ ବାପାଙ୍କୁ ତାହା ସ୍ୱାଦିଷ୍ଟ ଲାଗିଥିଲା ମଧ । କିନ୍ତୁ 'ଉପମା' ଶବ୍ଦଟି ସିଏ ଯେତେ ଚେଷ୍ଟା କଲେ ବି ମନେରଖିପାରିଲେନି । ବି.ଏ. ପଢୁଥିବା ନାତୁଣୀ ବୁଦ୍ଧି ବତେଇଦେଲା । କହିଲା, "ବାପା, ତମେ ଅଳଙ୍କାର ପରିଚୟ ବୋଲି ବହିଟିଏ ଲେଖିଚ ନା । ସେଥିରେ ଉପମା ଅଳଙ୍କାର କଥା ବି ଲେଖିଚ । ତାକୁ ଇ ମନେରଖିଦିଅ ।" ଠିକ୍ ଠିକ୍ କହି ବାପା ମୁଣ୍ଡ ଟୁଙ୍ଗାରିଲେ । କେଇଦିନ ପର ବଜାର ଯାଉଥିବା ସମୟରେ କଲେଜ ଛକର ସାଉଥ୍ ଇଣ୍ଡିଆନ୍ ହୋଟେଲ ସାମ୍ନାରେ ଠିଆହୋଇ ଦୋକାନଦାରଙ୍କୁ କହିଥିଲେ "ଦୟାକରି କିଛି ଉପମା ଅଳଙ୍କାର ଦିଅନ୍ତୁ ।" କାହାଣୀଟି ଆମକୁ କହି ମୋ ସାନଭଉଣୀ ହସି ହସି ନୟାନ୍ତ । ମୁଁ କିନ୍ତୁ ଠିକ୍ ବୁଝିଥିଲି, ନରସିଂହ ଦେବ ବା ବୀରଭଦ୍ର ଦେବଙ୍କ ଅଜସ୍ର ଶିଳାଲେଖର ଟିକିନିଖି ଖବର ବହନ କରୁଥିବା ସେ ଉନ୍ନତ ମସ୍ତିଷ୍କ ଓ ମେଧା, ସାଧାରଣ ମଣିଷଙ୍କ ପରି ଦୋଷା, ଇଡ୍ଲିର ଚକ୍ରରେ ନ ପଡ଼ିବା ଟା ଇ ତ ଥିଲା ସ୍ୱାଭାବିକ ।

ବାପାଙ୍କ ବିଷୟରେ ଯେତେବେଳେ ବି ଲେଖିବାକୁ ଚେଷ୍ଟା କରିଛି, ସାରା ଅଭିଧାନ ପୃଷ୍ଠା ଓଲଟାଇ ତାଙ୍କୁ ବର୍ଣ୍ଣନା କଲାପରି ଶବ୍ଦଟିଏ ଖୋଜି ପାଇନି । କ'ଣ କହିବି ବାପାଙ୍କୁ ? ନିଷ୍କଳଙ୍କ, ସଦାଚରଣ, କ୍ରୋଧଶୂନ୍ୟ, ମଣିଷଟିଏ ? କିମ୍ବା ବିଦ୍ୱାନ, ଧୈର୍ଯ୍ୟବାନ୍, ଦେବୋପମ ମଣିଷଟିଏ ? ଅଥବା ଶାନ୍ତ, ସୁଶୃଙ୍ଖଳ, ଋଷିପ୍ରତିମ

ମଣିଷଟିଏ ? କଅଣ କହିବି ବାପାଙ୍କୁ ? କିନ୍ତୁ ବାପା କଅଣ ଖାଲି ଏଇଆ ? ବାପା ଯେ ଏହାଠାରୁ ଆହୁରି ଅଧିକ କିଛି । ବାପା ଯେ ଏହାଠାରୁ ଆହୁରି ମହତ୍ତର । ଯିଏ ବି ବାପାଙ୍କ ସଂସ୍ପର୍ଶରେ ଆସିଛନ୍ତି, ସିଏ ନିଶ୍ଚୟ ବୁଝିପାରିବେ ମୋ କଥାର ସତ୍ୟାସତ୍ୟ ।

ମନେପଡୁଛି - କେଇବର୍ଷ ତଳେ ଗୋଟିଏ କାର୍ଟୁନ ଦେଖିଥିଲି । ଆଜିଠୁ ହଜାର ବର୍ଷ ପରେ - ଚିଡ଼ିଆଖାନାରେ ଯନ୍ତାଭିତରେ ସୁରକ୍ଷିତ ମଣିଷଟିଏ । କୁନି ଛୁଆଟି ଜେବ୍ରା, ପ୍ଲାଟିପସ୍ ଓ ପେଙ୍ଗୁଇନ୍ ଦେଖିସାରିଲାପରେ ମା'ଙ୍କୁ ପଚାରୁଛି । 'ଇଏ କିଏ ?' ମା ଉତ୍ତର ଦେଉଛନ୍ତି, "ଯାକୁ ଭଲମଣିଷ କହନ୍ତି । ଏବେ ଇଏ ପୃଥିବୀରେ ବିରଳ ।" କେଜାଣି କାହିଁକି ସେ କାର୍ଟୁନଟି ଦେଖିଲାବେଳେ ମନେପଡ଼ିଥିଲା ମୋ ବାପାଙ୍କ କଥା । ମନେ ହେଉଥିଲା ହଜାର ବର୍ଷ ପରେ ନୁହେଁ, ଏବେ ବି ପୃଥିବୀରେ ତାଙ୍କପରି ଭଲମଣିଷଟିଏ ବିରଳ । ଅବଶୋଷ, ତାଙ୍କର ଜ୍ୟେଷ୍ଠା କନ୍ୟା ହୋଇ ସୁଦ୍ଧା, ତାଙ୍କର ସେଇ ବିରଳ ଭଲପଣିଆରୁ ମୁଁ କାଣିଚାଏ ବି ପାଇପାରିଲିନି । ଶେଷପର୍ଯ୍ୟନ୍ତ ରହିଗଲି ତାଙ୍କର ଅଯୋଗ୍ୟ ସନ୍ତାନଟିଏ ହୋଇ ।





## ସଂକ୍ଷେପରେ କାନନ ମିଶ୍ର

ପିତା : ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ
ମାତା : ଶ୍ରୀମତୀ ସୁରେଖା ତ୍ରିପାଠୀ
ଜନ୍ମସ୍ଥାନ : କଟକ
ଶିକ୍ଷା : ଏମ୍.ଏ.(ଇଂରାଜୀ), ଏମ୍.ଏ.(ଓଡ଼ିଆ), ଏମ୍.ଲିଟ୍.(ତୁଳନାତ୍ମକ ସାହିତ୍ୟ) କୋବିଦ(ହିନ୍ଦୀ)
ପୁରସ୍କାର : ପ୍ରଜାତନ୍ତ୍ର ପ୍ରଚାର ସମିତି, ଫକୀର ମୋହନ ସାହିତ୍ୟ ପରିଷଦ, ଆଗାମୀ ଶତାବ୍ଦୀ, ସୁଧନ୍ୟା ତଥା ପ୍ରତିଭାସିକ୍ତ ଦ୍ୱାରା ସମ୍ମାନିତା ଓ ପୁରସ୍କୃତା ।

## ପୁସ୍ତକାବଳୀ - ଓଡ଼ିଆ

୧. କ୍ଷୁଦ୍ରଗଳ୍ପ ସଂକଳନ : ବହିମେଳାରୁ ବୟଫ୍ରେଣ୍ଡ୍ ପର୍ଯ୍ୟନ୍ତ, ଅଧାଲେଖା ଦସ୍ତାବିଜ୍, ମିଶ୍ରସ୍ୱାଦ ।
୨. କବିତା ସଂକଳନ : ତୀର୍ଥ
୩. ଫିଚର ସଂକଳନ : ଗପସପ
୪. ଶିଶୁ କବିତା ସଂକଳନ : କାଗଜ ଡଙ୍ଗା, ଟୁପୁରୁ ଟୁପୁରୁ ବରଷେ ପାଣି, କାଇଁଚମାଳି, ହୀରା ମୋତି ମାଣିକ ।
୫. ସମାଲୋଚନା : ଓଡ଼ିଆ ପଦ୍ୟମହାକାବ୍ୟର କ୍ରମବିକାଶ ।
୬. ଅନୁବାଦ : ସୂର୍ଯ୍ୟମୁଖୀର ସ୍ୱପ୍ନ (ମୂଳ ଆସାମୀ ଉପନ୍ୟାସର ରଚୟିତା ସୟଦ ଅବଦୁଲ୍ ମାଲିକ)
୭. ନବସାକ୍ଷରଙ୍କ ପାଇଁ କବିତା ।

## ଇଂରାଜୀ

1. A Tryst with Life (A collection of memoirs)